## ହେମେନ୍ଦ୍ର ମହାପାତ୍ରଙ୍କ କେତୋଟି

# ନିର୍ବାଚିତ ନାଟକ



ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ବାଲେଶ୍ୱର

ଓଡ଼ିଆଭାଷାର ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା 'ଝଙ୍କାର'ରେ ପ୍ରକାଶିତ

# ହେମେନ୍ଦ୍ର ମହାପାତ୍ରଙ୍କ କେତୋଟି ନିର୍ବାଚିତ ନାଟକ

*ପ୍ରକାଶକ:* କାଳୀପଦ ପଣ୍ଡା, ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ନେଳିଆବାଗ୍, ଶ୍ରୀକଣ୍ଠପୁର, ବାଲେଶ୍ୱର
ଫୋନ : ୯୪୩୭୦୮୯୨୪୧

*ପ୍ରଚ୍ଛଦ :* ବିଜୟ କୁମାର ପ୍ରଧାନ

*ପ୍ରଥମ ସଂସ୍କରଣ* : ୧୭ ଜୁଲାଇ - ୨୦୧୫

*ମୂଲ୍ୟ :* ଟ.୧୮୦/-

---

# HEMENDRA MOHAPATRANKA KETOTI NIRBACHITA NATAKA

**Publisher:** Kalipada Panda, **SUBARNASHREE PRAKASHINI**
Neliabag, Shreekanthapur, Balasore, Mob - 9437089241

**Cover :** Bijay Kumar Pradhan

**First Edition :** 17th July - 2015

**Price :** Rs.180/-

ଚଳିତବର୍ଷ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନବକଳେବର ଅବସରରେ ମୋ ରଚିତ 'କୋଡୋଟି ନିର୍ବାଚିତ ନାଟକ'ର ଏହି ସଂକଳନକୁ ସେହି ସର୍ବମୟ ବିଶ୍ୱନିୟନ୍ତା ଜଗତର ନାଥ ଜଗନ୍ନାଥଙ୍କ ଚରଣାରବିନ୍ଦରେ ଅର୍ପଣ କଲି ।

*- ନାଟ୍ୟକାର*

# ମୁଖବନ୍ଧ

ସୁପରିଚିତ ନାଟ୍ୟକାର ହେମେନ୍ଦ୍ର ମହାପାତ୍ରଙ୍କର କେତୋଟି ନିର୍ବାଚିତ ନାଟକ ଏକ ଉଲ୍ଲେଖଯୋଗ୍ୟ କୃତି । ସାଂପ୍ରତିକ କାଳରେ ଓଡ଼ିଆ ନାଟ୍ୟସାହିତ୍ୟ ଜଗତରେ ନାଟକ ରଚନାରେ ଭଟ୍ଟା ପଡ଼ିଥିବା ବେଳେ ହେମେନ୍ଦ୍ର ମହାପାତ୍ରଙ୍କର ଏ ଉଦ୍ୟମ ଅଭିନନ୍ଦନୀୟ ।

ଏହି ସଂକଳନରେ ସ୍ଥାନିତ ଆଠଟି ଛୋଟନାଟକ ଆକାର ଓ ବ୍ୟାପ୍ତିରେ କ୍ଷୁଦ୍ର ହେଲେ ମଧ୍ୟ ଏଥିରେ ପୂର୍ଣ୍ଣାଙ୍ଗ ନାଟକର ନିର୍ଯାସ ରହିଛି, ରହିଛି ରସ ଓ ମାଧୁର୍ଯ୍ୟ । ପ୍ରାୟ ଚାରିଦଶନ୍ଧି ଧରି ନାଟକ ରଚନାରେ ନିଜକୁ ଉତ୍ସର୍ଗ କରିଦେଇଥିବା ହେମେନ୍ଦ୍ର ନିଜ ଶ୍ରମ, ସାଧନା, ନିଷ୍ଠା ଓ ଅଙ୍ଗୀକାରର ସଦ୍‌ବ୍ୟବହାର କରି ଯେଉଁ କୃତି ଓ କୃତିତ୍ୱର ଅଧିକାରୀ, ତା'ର ଚିତ୍ର ଏହି ସଂକଳନରେ ପ୍ରତିଫଳିତ ।

ଏହି ସଂକଳନରେ ସ୍ଥାନିତ 'ପୁଷ୍ପର ନାମ ପାରିଜାତ'ରେ ଦୁଇଟି କାହାଣୀର ସମାହାର ହୋଇଛି । ଏ ଦୃଷ୍ଟିରୁ ଦେଖିଲେ ଏହି ଦୁଇ କାହାଣୀକୁ ଏକତ୍ର ସନ୍ନିବେଶିତ କରିବାର ପୃଷ୍ଠଭୂମିରେ ରହିଛି ଲାଳସା ଓ ଲୋଭର ଚିତ୍ର । ଏଥିମଧ୍ୟରେ ଗୋଟିଏ ଚିତ୍ର ହେଉଛି ପୌରାଣିକ କାହାଣୀକୁ ନେଇ ଏବଂ ଅନ୍ୟଟି ହେଉଛି ସାଂପ୍ରତିକ କାଳଶକ୍ତିରେ ବଞ୍ଚୁଥିବା ମଣିଷର ଲାଳସା ଓ ଲୋଭର ରୂପାୟଣ । ଦ୍ୱାପରଯୁଗରେ ନାରଦଙ୍କ ଦ୍ୱାରା କୃଷ୍ଣଙ୍କୁ ପ୍ରଦତ୍ତ ସ୍ୱର୍ଗଲୋକର ପାରିଜାତ ପୁଷ୍ପ ରୁକ୍ମିଣୀଙ୍କ ଗଭାମଣ୍ଡନ କଲାପରି କୃଷ୍ଣପତ୍ନୀ ସତ୍ୟଭାମାଙ୍କର ରୁକ୍ମିଣୀଙ୍କ ପ୍ରତି ଈର୍ଷା ଓ ନିଜସ୍ୱ ଲାଳସାର ଚିତ୍ର ସାଙ୍ଗକୁ ରହିଛି, ସତ୍ୟଭାମାଙ୍କୁ ଅଧିକ ଗୁରୁତ୍ୱ ଦେବାପାଇଁ କୃଷ୍ଣଙ୍କର ପ୍ରୟାସ – କେବଳମାତ୍ର ପାରିଜାତ ଫୁଲଟିଏ ନୁହେଁ, ସବୁଦିନ ତାଙ୍କର ଗଭାମଣ୍ଡନ

ପାଇଁ ସ୍ୱର୍ଗଲୋକରୁ ପାରିଜାତ ବୃକ୍ଷ ଆଣିଦେବା ପ୍ରତିଶ୍ରୁତି ଏବଂ ସେହି ପ୍ରତିଶ୍ରୁତି ରକ୍ଷାପାଇଁ କୃଷ୍ଣଙ୍କର ଚୌର୍ଯ୍ୟବୃତ୍ତି । ଠିକ୍ ସେମିତି ଏକ ଘରୋଇ କଲେଜରେ ଇଂରାଜୀ ଅଧ୍ୟାପକ ଚନ୍ଦ୍ର ନିଜ ସ୍ତ୍ରୀ ଜିତାକୁ ଅଯସରେ ରଖିବାର ମାନସିକତା ନେଇ ପରୀକ୍ଷାଖାତା ମୂଲ୍ୟାୟନରେ ଦୁର୍ନୀତିର ଆଶ୍ରୟ ନେଇ ଗିରଫ ହୁଏ - ତାଙ୍କୁ ଏଥିରେ ପ୍ରୋତ୍ସାହନ ଦେଇଥିବା ତାଙ୍କର ପୁଲିସ୍ ଅଧିକାରୀ ବନ୍ଧୁ ସିଦ୍ଧିକ ମଧ୍ୟ ନିଜର ଅନ୍ୟାନ୍ୟ ଦୁର୍ନୀତି ପାଇଁ ଭିଜିଲାନ୍ସ ପୁଲିସ୍‌ର ନଜରରୁ ରକ୍ଷାପାଇବାକୁ ଉଦ୍ୟମରତ । ଏହି କାହାଣୀକୁ ନେଇ ନାଟକଟି ଗତିଶୀଳ । ରୋଲନମ୍ବର ଲେଖା ହୋଇଥିବା କାଗଜଟିକୁ ଚିରିଦେଇ ଚନ୍ଦ୍ରର ସ୍ତ୍ରୀ ଘୋଷଣା କରୁଛି, ସେ ଜିତା ନୁହେଁ, ଅପରାଜିତା । ଜୀବନ ଓ ଜୀବନସଂଗ୍ରାମର ପ୍ରତିକୂଳତା ତାକୁ ପରାଜିତ କରିପାରିବନି - ସେ ଅପରାଜିତା ।

ଅନ୍ୟଏକ ଛୋଟ ନାଟକ 'ବିଭୂତି'ର ନାୟକର ନାମାନୁସାରେ ଏହାର ନାମକରଣ । ବିଭୂତି ମହାଧର୍ମୀ ନାଟକ ଲେଖୁଥିବା ବେଳେ ତାଙ୍କର ସଢୁ ସନ୍ତୋଷ ଲେଖନ୍ତି ଯାତ୍ରାନାଟକ । ଯାତ୍ରାନାଟକ ଲେଖି ସନ୍ତୋଷ ଅଜସ୍ର ଅର୍ଥର ଉପାର୍ଜନ କଲାବେଳେ ବିଭୂତି ସଂସ୍କୃତି ସଚେତନ ଏବଂ ତାଙ୍କର ନାଟ୍ୟକୃତି ସ୍ୱଚ୍ଛ ହେଲେ ମଧ୍ୟ ସେଥିରେ କଳାତ୍ମକ ଚିତ୍ର ଥାଏ । ଯାତ୍ରାନାଟକ ଅପସଂସ୍କୃତିଠାରୁ ତାଙ୍କର ନାଟ୍ୟସାହିତ୍ୟ ମୁକ୍ତ, ଯାହାକୁ ପ୍ରଶଂସା କରନ୍ତି ତାଙ୍କର ଶଶୁର ଯୁଗଳ ।

ଏହି ନାଟକରେ ସଂକ୍ଷେପିତ ହୋଇଛି ଦୂରଦର୍ଶନରେ ସଂପ୍ରସମିତ ଏକ ଗୀତିନାଟ୍ୟ, ଯାହାର ସ୍ରଷ୍ଟା ହେଉଛନ୍ତି ବିଭୂତି । ନାଟକର ମୁଖ୍ୟ ଅଂଶ ସହିତ ଏହି ଗୀତିନାଟ୍ୟର ଭାବଗତ ସାମଞ୍ଜସ୍ୟ ପ୍ରଦର୍ଶନ କରିବାକୁ ହେମେନ୍ଦ୍ରବାବୁଙ୍କ ପ୍ରୟାସ ସଫଳ ହୋଇଛି । ଶିବ ଜାୟା ପାର୍ବତୀ ଓ ବିଷ୍ଣୁଜାୟା ଲକ୍ଷ୍ମୀଙ୍କ ସଂଳାପରେ ନାରୀର ଭୂଷଣ ରୂପେ ପତି ଓ ଅଳଙ୍କାର ମଧ୍ୟରେ କେଉଁଟି ଶ୍ରେୟ, ତାହା ହିଁ ରୂପାୟଣ କରାଯାଇଛି । ପାର୍ବତୀ ଆପଣାର ଭୂଷଣ ରୂପେ ଶିବଙ୍କୁ ଚିହ୍ନିତ କରିଥିବା

ବେଳେ ଲକ୍ଷ୍ମୀ ଅଳଙ୍କାରକୁ ନିଜର ଅଳଙ୍କାର ରୂପେ ଚିହ୍ନିତ କରିଛନ୍ତି । ଶେଷରେ କେବଳ ...ରରେ ଶିବଙ୍କ ବିଭୂତିତୁଲ୍ୟ ଅଳଙ୍କାର ଅକୁଳାନ ହେବା ଜାଣି ଲକ୍ଷ୍ମୀ ନିଜ ଅଳଙ୍କାରର ଅହଂ ତୁଛ ଏବଂ ଭୋଗଠାରୁ ଯୋଗ ମହତ୍ତ୍ୱର ବୋଲି ଉପଲବ୍ଧି କରିଛନ୍ତି ।

ଏହି ସଂକଳନରେ ସ୍ଥାନିତ 'ବିବେକ ଡଟ୍‌କମ୍' ଛୋଟନାଟକଟି ଜଣେ ଉଚ୍ଚକୋଟୀର କ୍ରିକେଟ୍ ଖେଳାଳୀର ଜୀବନକାହାଣୀକୁ ଆଧାରକରି ଲିଖିତ । ଜଣେ ସାଧାରଣ ଘରୋଇ ଘରର ଗୌରମୋହନଙ୍କ ପୁଅ ବିବେକ କ୍ରିକେଟ୍ ଖେଳରେ ସୁନାମ ଅର୍ଜନ କଲାପରେ ତା' ବାପାଙ୍କର ଏକଦା ମାଲିକ ଚନ୍ଦ୍ରମୋହନ ନିଜ ଝିଅ ରୋଜା ପାଇଁ ବିବେକକୁ ଜ୍ୱାଇଁ କରିନେଇଛନ୍ତି । ଆଧୁନିକା ରୋଜା, ବିବେକର ବାଲ୍ୟବନ୍ଧୁ ମନୋରଂଜନ ଓ ଶଶୁରଙ୍କ ଲୋଭର ଶିକାର ହୋଇ ଭାରତୀୟ କ୍ରିକେଟ୍ ଟିମ୍‌ର କ୍ୟାପ୍ଟେନ୍ ବିବେକ ମ୍ୟାଚ୍‌ଫିକ୍ସିଙ୍ଗ କରି ଅଜସ୍ର କ୍ରିକେଟ୍‌ପ୍ରେମୀଙ୍କ ରୋଷର ସମ୍ମୁଖୀନ ହୁଏ । କିନ୍ତୁ ଚନ୍ଦ୍ରମୋହନ ବିବେକର ଆୟରୁ ଜୁଆ ଓ ମଦରେ ଅପବ୍ୟୟ କରି ଶେଷରେ ମ୍ୟାଚ୍ ଫିକ୍ସିଙ୍ଗ ଅପରାଧଜନିତ କାରଣରୁ ପୁଲିସ୍ ଭୟରେ ଲୁଚି ବୁଲୁଥିବାର ହାହତାସ୍ଥିର ସାମ୍ନା କରିଛନ୍ତି । ରୋଜା ବିବେକକୁ ଡିଭୋର୍ସକରି ମନୋରଂଜନକୁ ବିବାହ କରିଛି । ସେ ବିବାହ ମଧ୍ୟ ସ୍ଥାୟୀ ହୋଇପାରିନି । ବିବେକ ଅନ୍ତର୍ଦ୍ଧାନ ହୋଇଯାଇଛି ଓ ମନୋରଂଜନର ଚକ୍ରାନ୍ତରେ ସେ କେବଳ ୱେବ୍‌ସାଇଟ୍‌ରେ ହିଁ ଉପଲବ୍ଧ – ଏହିଭଳି ଏକ ଐନ୍ଦ୍ରଜାଲିକ ରହସ୍ୟ ଭିତରେ ରୋଜା ଓ ଗୌରମୋହନ ବିବେକକୁ ଖୋଜି ହେଉଥିବାର କୁହେଳିକା ଭିତରେ ନାଟକର ପରିସମାପ୍ତି ।

'ଚୁପ୍' ନାଟକରେ ଯଥେଚ୍ଛାଚାରୀ କାଣ୍ଡଜ୍ଞାନହୀନ ଶାସନ ଓ ଗଣତନ୍ତ୍ରର ଅପବ୍ୟବହାରକୁ ଶାଣିତ ସମାଲୋଚନା କରାଯାଇଛି । ଏ ନାଟକରେ ଶ୍ଳେଷର ପ୍ରୟୋଗ ଖୁବ୍ ରୋଚକ ଓ ଉପଭୋଗ୍ୟ ହୋଇଛି । ଅଦୂରଦର୍ଶୀ ଶାସନବ୍ୟବସ୍ଥା ଓ ଭୋଗବିଳାସରେ ମଗ୍ନ

ଥିବା ରାଜା କିପରି ଦେଶର ଅର୍ଥନୀତିକୁ ବିପର୍ଯ୍ୟସ୍ତ କରିଦିଅନ୍ତି । ତା'ର ଚିତ୍ର ଖୁବ୍ ବାସ୍ତବଧର୍ମୀ ଢଙ୍ଗରେ ଉପସ୍ଥାପନ କରାଯାଇଛି । ଏଥିରେ ଚିତ୍ରିତ ଚରିତ୍ରମାନଙ୍କର ନାମକରଣରେ ପ୍ରତିଫଳିତ ବିରୋଧାଭାସରେ ବ୍ୟଙ୍ଗ ସାଙ୍ଗକୁ ରହିଛି ଶାଣିତ କଟାକ୍ଷ । ଦେଶର ରାଜାଙ୍କ ନାମ କାଙ୍ଗାଳି ଦାସ, ମନ୍ତ୍ରୀଙ୍କ ନାମ ଦରିଦ୍ରବର୍ଦ୍ଧନ, ଫାଇନାନ୍ସିଆଲ ଆଡ୍‌ଭାଇଜରଙ୍କ ନାମ ଦେବାଳିଆ, ବିରୋଧୀଦଳ ନେତାଙ୍କ ନାମ ଭିକାରି ଦାସ । ଦେଶର ରାଜସ୍ୱ ବୃଦ୍ଧି ପାଇଁ କଥାକହିବା ଉପରେ କରଧାର୍ଯ୍ୟ ଏବଂ ପରବର୍ତ୍ତୀ ସମୟରେ ବିରୋଧୀଦଳ ନେତାଙ୍କ ଦାବି ଫଳରେ ପଲିଟିକ୍ସ ବା ରାଜନୈତିକ ନେତାଙ୍କୁ, ପରେପରେ ପରଚର୍ଚ୍ଚା ପ୍ରିୟ ନାରୀମାନଙ୍କର କଥାକହିବା ଉପରୁ ଟିକସ ଛାଡ୍ କରାଯିବା ପ୍ରସଙ୍ଗରେ ଯେଉଁଳି କଟାକ୍ଷ କରାଯାଇଛି, ତାହା ଯେତିକି ରୋଚକ, ସେତିକି ହାସ୍ୟୋଦ୍ଦୀପକ ଏବଂ ତେଣୁ ଖୁବ୍ ଉପଭୋଗ୍ୟ ହୋଇପାରିଛି ।

ଏଥିରେ ସନ୍ନିବେଶିତ ପ୍ରାୟ ଅଧିକାଂଶ ଛୋଟନାଟକର କାହାଣୀ, ଚରିତ୍ର ଚିତ୍ରଣ ପରିବେଷଣ ଶୈଳୀ, ପାତ୍ରମୁଖୀ ସଂଳାପ ସାଙ୍ଗକୁ ସମାଜରୁ ଲୋକସମାଜର ସ୍ୱାର୍ଥପ୍ରବଣ ମାନସିକତାର ଚିତ୍ର ବାସ୍ତବ ହୋଇଛି । ସାଂପ୍ରତିକ କାଳରେ ଏହା ଏକ ସଫଳ ସୃଷ୍ଟିସ୍ୱାକ୍ଷର ଏବଂ ଏହା ଆମ କାଳଖଣ୍ଡର ନାଟ୍ୟସାହିତ୍ୟକୁ ଋଦ୍ଧିମନ୍ତ କରିବ ବୋଲି ଆଶା କରୁଛି ।

ତା.୨୪.୦୨.୨୦୧୫
'ପ୍ରଜାତନ୍ତ୍ର ପ୍ରଚାର ସମିତି'
କଟକ

ମହେନ୍ଦ୍ର ଚନ୍ଦ୍ର ମହାନ୍ତି

# ଲେଖକୀୟ ଅଭିବ୍ୟକ୍ତି

ସ୍ୱଭାବତଃ ନାଟକଟେ ମଂଚରେ ପ୍ରଦର୍ଶନ ନିମନ୍ତେ ସୃଷ୍ଟିହୁଏ । ମଂଚରେ ବାରମ୍ୱାର ମଂଚସ୍ଥ ହୋଇ ଦର୍ଶକ, ସମାଲୋଚକଙ୍କୁ ଆକର୍ଷିତ କରିପାରିଲେ ତାହା ଏକ ସଫଳ ନାଟକର ମାନ୍ୟତା ପାଇଥାଏ, କିନ୍ତୁ ନାଟକ ଯେ ଏକ ସାହିତ୍ୟ ତାହା ପ୍ରତିପାଦିତ ହୁଏ ତା'ର ମୁଦ୍ରିତ ରୂପ ପ୍ରକାଶରେ । ନାଟକ ମୁଦ୍ରିତ ହୋଇ ପାଠକର ଦୃଷ୍ଟିଆକର୍ଷଣ କରେ ଏବଂ ପାଠକୀୟ ଆଦୃତି ପାଇପାରିଲେ ତାହା ସାହିତ୍ୟ ପରିସରଭୁକ୍ତ ହୋଇପାରେ ।

ସୃଜନଶିଳ୍ପରେ ମଗ୍ନହୋଇ ପାରଂପରିକ ରୀତିରେ କିଛି ଗଳ୍ପ ଓ କବିତା ଲେଖିଲା ପରେ କେମିତି ହଠାତ୍ ନାଟକ ପ୍ରତି ଆକୃଷ୍ଟ ହେଲି ଏବଂ ଲେଖିଲି ଓ ମଂଚସ୍ଥ କଲି, ପ୍ରଥମ ମଂଚନରେ ଦର୍ଶକର ଉତ୍ସାହ ମୋତେ ଆତ୍ମହରା କରିଦେଲା ତା'ପରେ କେବଳ ନାଟକ, ଅନେକ ଲେଖିଲି, ମଂଚସ୍ଥ କଲି । ପ୍ରତିଯୋଗିତାରେ ଯୋଗଦେଇ ପୁରସ୍କୃତ ବି ହେଲି । ବହି ଆକାରରେ ପ୍ରକାଶକରି ବିଭିନ୍ନ ଅଂଚଳରେ ପ୍ରଦର୍ଶନ ବି କଲି । ମଂଚ ଜଗତରେ ବେଶ୍ ସ୍ଥାନଟିଏ ତିଆରି ସିନା କରିଦେଲି, ସାରସ୍ୱତ ଜଗତରେ ? ହଠାତ୍ କେମିତି ଚମକଟେ ଲାଗିଗଲା । ସାରସ୍ୱତ ଜଗତକୁ ପ୍ରବେଶ କେମିତି ହେବ ?

ଇତିମଧ୍ୟରେ ଓଡ଼ିଆଭାଷାର ଅନ୍ୟତମ ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା 'ଝଂକାର'ର ମୁଁ ନିୟମିତ ପାଠକ ବନିଯାଇଥାଏ । ଏହି ପତ୍ରିକାର ମୁଖ୍ୟ ଆକର୍ଷଣ ମୋପାଇଁ ଥିଲା ମୋର ପୂଜ୍ୟଗୁରୁ ତଥା ଓଡ଼ିଆ ସମାଲୋଚନା ସାହିତ୍ୟର ଅତ୍ୟତମ ଧୂରୀଣ ବ୍ୟକ୍ତିତ୍ୱ ଡକ୍ଟର ହେମନ୍ତ କୁମାର ଦାସ । ନାଟ୍ୟସାହିତ୍ୟ ଉପରେ ତାଙ୍କର ସାରଗର୍ଭକ

ପ୍ରବଂଧ ଯାହାକି ଝଂକାରରେ ପ୍ରକାଶିତ ହୋଇଥାଏ । ତାଙ୍କ ସହିତ ଡକ୍ଟର ନିଳାଦ୍ରୀ ଭୂଷଣ ହରିଚନ୍ଦନ, ଡକ୍ଟର ସଂଘମିତ୍ରା ମିଶ୍ର ଆଦି ଅନେକ ନାଟ୍ୟତତ୍ତ୍ୱବିତ୍‌ମାନଙ୍କର ନାଟ୍ୟସାହିତ୍ୟ ଉପରେ ଆଲୋଚନା ମଧ୍ୟ ପ୍ରକାଶିତ ହେଉଥାଏ । ଏଥିସହିତ ଓଡ଼ିଶାର ସୁନାମଧନ୍ୟ ନାଟ୍ୟକାରମାନଙ୍କ ଛୋଟଛୋଟ ନାଟକ ମଧ୍ୟ ମୋତେ ବେଶ୍ ଆକୃଷ୍ଟ କରୁଥାଏ । ମୁଁ ସେହି ପତ୍ରିକାରେ ନାଟକଟେ ପ୍ରକାଶ କରିବାର ସ୍ୱପ୍ନ ଦେଖିଲି । ୧୯୮୬ ମସିହା କଥା । ଏହି ବର୍ଷ ମୋର ଏକ ନାଟକ 'ଦେଖଇ ନେତ୍ର ଯାହା' ମଂଚସ୍ଥ ହୋଇ ଖୁବ୍ ଚର୍ଚ୍ଚିତ ହୋଇଥାଏ । ତା' ପୂର୍ବରୁ 'ଅଥଚ ଅଥର୍ବ' ନାମକ ଏକ ଅତି ବୌଦ୍ଧିକ ନାଟକ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀର ପଞ୍ଚଦଶ ନାଟକ ପ୍ରତିଯୋଗିତାରେ ଅଂଶଗ୍ରହଣ କରି ବେଶ୍ ପ୍ରଭାବ ପକାଇଥିଲା । ମୁଁ ଝଂକାର ପାଇଁ ଲେଖିଲି ନାଟକ ସଂପର୍କ । ଉଦ୍ଭଟତା ଓ ଅତି ବୌଦ୍ଧିକତାର ଫେଣ୍ଟାଫେଣ୍ଟି ଶୈଳୀରେ ଜୀବନର ଅତି ନିଷ୍ଠୁର ସତ୍ୟତାକୁ ପ୍ରକାଶ କରିବାକୁ ଯାଇ ଲେଖିଲି ସଂପର୍କ । ମୋର ସେତେବେଳର ଜ୍ଞାନ, ବୁଦ୍ଧି ଓ ନାଟକୀୟ କୌଶଳ ପ୍ରୟୋଗକରି ଲେଖିଲି ଏହି ଅତି ବୌଦ୍ଧିକ ନାଟକ । ଏ ସଂପର୍କ ସେହି ଚିରାଚରିତ ରୀତିରେ ନାରୀ ପୁରୁଷ ଭିତରେ ରହିଥିବା ଆଦି ମାନବୀୟ ସଂପର୍କର ଉତ୍ତର ଆଧୁନିକ ରୂପକଳ୍ପନା ମାତ୍ର, ନାରୀ ଯଦି ନାଗୁଣୀ ହୁଏ ପୁରୁଷ ଜଣେ କେଳା ଯିଏକି ଏକ ପେଡ଼ି ଭିତରେ ନାଗୁଣୀକୁ ରଖି ସଂସାର ପଥରେ ଯାତ୍ରା କରୁଛି । ଏଠି ଡଂବରୁ କିନ୍ତୁ କେଳା ହାତରେ ନଥାଇ ନାଗୁଣୀ ହାତରେ ଅଛି, ଯାହାର ତାଳରେ ବିଚରା ପୁରୁଷ ନାଚିନାଚି ନୟାନ୍ତ ହେଉଛି ଶେଷରେ ନାଗୁଣୀର ବିଷ ଚୋଟରେ ପୁରୁଷ ପ୍ରାଣ ଦେଉଛି ଏବଂ ତାହାରି ରକ୍ତରେ ଜନ୍ମନେଇଛି ଆଉଜଣେ ପୁରୁଷ କେଳା-ନାଗୁଣୀର ପୁତ୍ର ଭାବରେ 'ପୁରୁଷ ପୁତ୍ର' ନାଗୁଣୀକୁ ଅର୍ଥାତ୍ ତା'ର ଜନ୍ମଦାତ୍ରୀକୁ ଖଣ୍ଡଖଣ୍ଡ କରି ଖାଉଛି ଏବଂ ଆତ୍ମତୃପ୍ତି ପରେ ଅପେକ୍ଷା କରୁଛି ଅନ୍ୟଏକ ନାଗୁଣୀକୁ । ଏମିତି ଚିରାଚରିତ ରୀତିରେ ଏ ନାରୀ, ପୁରୁଷର ସଂପର୍କର ସବାରି ଏ ରାଜରାସ୍ତାରେ ଚାଲୁଛି

ଚାଲୁଥିବ ମଧ୍ୟ । ଏମିତି ଏକ ଉଦ୍ଭଟ ଶୈଳୀର ବୌଦ୍ଧିକ ନାଟକଟି ଲେଖିସାରି 'ଝଂକାର' ଠିକଣାରେ ପଠେଇଦେଲି । ଉତ୍କଣ୍ଠାର ସହିତ ଅପେକ୍ଷା କଲି । ଅପେକ୍ଷାରେ ପ୍ରାୟ ଦୁଇବର୍ଷ ବିତିଗଲା । ବିଫଳ ହେଲି ବୋଲି ଧରିନେଇ ମଂଚରେ ମନୋନିବେଶ କଲି । ସେଦିନ ଥାଏ ରଥଯାତ୍ରା, ୧୯୮୮ ମସିହା । ରେଡ଼ିଓରେ ରଥଯାତ୍ରାର ଧାରା ବିବରଣୀ ଶୁଣୁଥାଏ ମୋର ଜଣେ ବଂଧୁ ହଠାତ୍ ପହଞ୍ଚିଲେ ହସିହସି କହିଲେ ହେମେନ୍ଦ୍ରବାବୁ ନାଟକଟା ପଢ଼ିଲି ଚମତ୍କାର ହେଇଛି । ମୁଁ ଦ୍ୱନ୍ଦ୍ୱରେ ପଡ଼ିଲି । କୋଉ ନାଟକ ? କୋଉଠି ଦେଖିଲେ, ସମସ୍ତ ସଂଶୟ ଦୂରକରି କହିଲେ ଏ ମାସ ଝଂକାର ପଢ଼ିନ କି ? ବୁଝିଗଲି ଏବଂ ଖୁସିରେ ଆତ୍ମହରା ହୋଇଗଲି । ଏଜେଣ୍ଟଙ୍କୁ ଅପେକ୍ଷା ନ କରି ବୁକ୍‌ଷ୍ଟଲ୍‌କୁ ଦୌଡ଼ିଲି । ତା'ପରେ ଯେତେବେଳେ ଦେଖିଲି 'ଝଂକାର' ସୂଚୀରେ ମୋ ନାଁରେ 'ସଂପର୍କ' ମୋ ପାଦ ତଳେ ଲାଗିଲାନି । ବାସ୍ତବରେ ସେଦିନ ମୋ ନାଟ୍ୟଜୀବନ ସତରେ ଯେମିତି ସାର୍ଥକ ହୋଇଗଲା । ଦୁର୍ଭାଗ୍ୟର ବିଷୟ ସେତେବେଳକୁ ମୁଁ ମଂଚନାଟକ ପ୍ରତିଯୋଗିତା ଓ ପୁରସ୍କାର ମାୟାରେ ମଜଗୁଲ ହୋଇଯାଇଥାଏ । ତେଣୁ 'ଝଂକାର' ପାଇଁ ସମୟ ବାହାର କରିପାରିଲିନି । କିଛିବର୍ଷର ବ୍ୟବଧାନ ପରେ ପୁଣି ଝଂକାର ପ୍ରତି ଆସକ୍ତି ଆସିଲା । ତା' ପରର ନାଟକ w.w.w. ବିବେକ ଡଟ୍‌କମ୍ । ପ୍ରଥମେ ଯେତେବେଳେ Internet ସାଧାରଣ ସ୍ତରକୁ ଆସିଗଲା । ସେତେବେଳେ ଟି.ଭି., ସମ୍ବାଦପତ୍ର ତଥା ବିଭିନ୍ନ ବିଜ୍ଞାପନମାନଙ୍କରେ 'w.w.w. ଡଟ୍‌କମ୍' ନାମର ବହୁଳ ବ୍ୟବହାର ଦୃଷ୍ଟିକୁ ଆସିଲା । ଏଇ ନାଁଟି ମୋତେ ଭିନ୍ନଭଂଗୀରେ ଆକୃଷ୍ଟ କଲା । ଭାବାନ୍ତର ଆସିବା ସ୍ୱାଭାବିକ ଏମିତି ନାଁରେ ନାଟକଟେ ଲେଖି ହୁଅନ୍ତାନି । ଏମିତି ଭାବୁଭାବୁ ମନେପଡ଼ିଲା କିଏଜଣେ କହିଥିବା ପରିହାସମୂଳକ ଉକ୍ତିଟିଏ । ମଣିଷ ଯଦି 'w' କବଳରେ ପଡ଼ିଯାଏ ତାହେଲେ ବିଚରାଟା ସରିଗଲା ବୋଲି ଜାଣ । ତିନୋଟି w. ଅର୍ଥ Wine Woman & Wealth. ବାସ୍ ଏଇଠି ଖିଅଟେ ମିଳିଗଲା । ଏମାନଙ୍କ ଘେରରେ ଯଦି ବିବେକ

ନିଜର ଠିକଣା ହଜେଇ ଦିଏ ? ମନମୟ ତଥା ଏ ଭୋଗବାଦୀ ଦୁନିଆରେ ବିବେକର ଠିକଣା ବି ଏଇଠି ମିଳିବା କଥା । ବାସ୍ ନାଟକର ନାମ ଓ ବାର୍ତ୍ତା ମିଳିଗଲା ବାକି ରହିଲା କାହାଣୀ । ଠିକ୍ ସେମିତି ଏକ ସମୟରେ ବିଶ୍ୱକ୍ରିକେଟ୍ ଜଗତରେ ମ୍ୟାଚ୍‌ଫିକ୍ସିଂ ଜନିତ ବାଦବିସଂବାଦ ବେଶ୍ ହଟଚମଟ ସୃଷ୍ଟି କରିଥାଏ । ବାସ୍ ତାହାର ଆଧାରରେ ନାଟକ ହେଲା w.w.w. ବିବେକ ଡଟ୍‌କମ୍ ।

'ପୁଷ୍ପର ନାମ ପାରିଜାତ', ପାରିଜାତ ଏକ କାଳ୍ପନିକ ପୁଷ୍ପ ଯାହାକି ସ୍ୱର୍ଗର ନନ୍ଦନବନରେ ଫୁଟୁଥିବାର ପୁରାଣ କହେ, ତେଣୁ ମର୍ତ୍ତ୍ୟରେ ଏ ପୁଷ୍ପପତି ଆକର୍ଷଣ ବହୁତ ଅଧିକ । ବିଶେଷତଃ ନାରୀମାନେ ପାରିଜାତଟେ ପାଇବା ପାଇଁ ପାଗଳ । କେବଳ ଏଇଥିପାଇଁ ଏଠାରେ ପାରିଜାତକୁ ଏକ ପ୍ରତୀକ ଭାବରେ ଉପସ୍ଥାପନ କରାଯାଇଛି । ଏକଦା କଥାପ୍ରସଂଗରେ ଜଣେ କହିଲେ ନାରୀ ଅର୍ଥାତ୍ ପତ୍ନୀମାନେ ଚାହିଁଲେ ଦୁର୍ନୀତିକୁ ରୋକି ପାରନ୍ତେ । ଏହି ଉକ୍ତିରୁ ମନେପଡ଼ିଲା ପାରିଜାତ । ପୁରାଣରେ ଶ୍ରୀକୃଷ୍ଣ ପତ୍ନୀ ସତ୍ୟଭାମାଙ୍କୁ ମୁଗ୍ଧ କରିବା ପାଇଁ ପାରିଜାତ ପାଇଁ ବାହାରିଲେ ଶେଷରେ ତାଙ୍କୁ ନନ୍ଦନବନରୁ ଚୋରି କରିବାକୁ ପଡ଼ନ୍ତେ ଧରାପଡ଼ିଲେ ଓ ଅପମାନିତ ହେଲେ । ପତ୍ନୀ ପାଇଁ ପତିଙ୍କ ଦୁର୍ଦ୍ଦଶା ପୁରାଣରୁ ଏ ଯାବତ୍ ଚଳିଆସୁଛି । ଏହି ପ୍ରସଙ୍ଗକୁ ଅଧିକ ପ୍ରଭାବଶାଳୀ କରି ଉପସ୍ଥାପନ କରିବାପାଇଁ ଏ ନାଟକ ପୁଷ୍ପର ନାମ ପାରିଜାତ ।

'କସ୍‌ରତ୍ କୁର୍ସିପାଇଁ' ଯୁଗଯୁଗ ଧରି ଚୌକିଟେ ପାଇଁ ମଣିଷସମାଜରେ ସଂଘର୍ଷ ଚାଲି ଆସିଛି । ସାମ୍ପ୍ରତିକ ସମୟରେ ଭାରତବର୍ଷର ରାଜନୀତି ବିଶେଷକରି ନିର୍ବାଚନ ରାଜନୀତି ଏତେ ନିମ୍ନଗାମୀ ଓ ବିଭ୍ରାନ୍ତିକର ହୋଇପଡ଼ିଛି ଯେ ବିଶ୍ୱ ଦରବାରରେ ଏହା ଆଲୋଚିତ ଓ ସମାଲୋଚିତ ହେବାରେ ଲାଗିଛି । କୌଣସି ଉପାୟରେ ନିର୍ବାଚନରେ ଜିତି କୁର୍ସି ହାସଲ ପାଇଁ ତଥାକଥିତ ରାଜନେତାଙ୍କ ଦେଶପ୍ରେମ ପ୍ରତି ପ୍ରଶ୍ନବାଚୀ ସୃଷ୍ଟିକରିଛି । ତା'ର ଏକ ପ୍ରତୀକାତ୍ମକ ଚିତ୍ର କସରତ୍ କୁର୍ସି ପାଇଁରେ ପ୍ରଦାନ କରାଯାଇଛି ।

'ସାଥୀ', ମଣିଷ ଏକ ସାମାଜିକ ପ୍ରାଣୀ । ସେ ସର୍ବଦା ଅନ୍ୟଜଣେ ସାଥୀର ସାହାରାରେ ଜୀବନଯାପନର ସ୍ୱପ୍ନ ଦେଖେ । ବିଶେଷକରି ପୁରୁଷଟେ ଖୋଜେ ନାରୀକୁ ଓ ନାରୀଟେ ଖୋଜେ ପୁରୁଷକୁ । ଉଭୟଙ୍କ ଭିତରେ ବନ୍ଧୁତା ସଂପୂର୍ଣ୍ଣ ନୈସର୍ଗିକ : ଛଳନାହୀନ ଓ ଅକପଟ କିନ୍ତୁ ଏ ବସ୍ତୁବାଦୀ ସମୟର ଘକଚକ୍ୟ ଭିତରେ ସେ ବନ୍ଧୁତାର ରଂଗ ଫିକା ପଡ଼ିଯାଏ । ନୀତିହୀନ ମାନବୀୟ ଚରିତ୍ରର ଆକର୍ଷଣରେ ସଂପର୍କର ସୂତାଖିଅଟେ ହୁଗୁଳି ଯାଏ । ଯବନିକାରେ ମରୀଚିକାର ଦର୍ଶନ ମିଳେ । ଏଇ ତ ସାଥୀ ।

'ବିଭୂତି', ବସ୍ତୁବାଦୀ ସମାଜରେ ନାରୀମାନଙ୍କର ବସ୍ତୁଲବ୍ଧ ଆକାଂକ୍ଷା ଓ ସହଜ ଜୀବନର ସ୍ୱପ୍ନକୁ ସାକାର କରିବାରେ ପୁରୁଷମାନେ ଅନେକ ସମୟରେ ଅସହାୟ ହୋଇପଡ଼ନ୍ତି । ସତ ଓ ସ୍ୱପ୍ନର ପାର୍ଥକ୍ୟ ଉପଲବ୍ଧି କରିବାରେ ଅସମର୍ଥ ନାରୀକୁ ଉଚିତ ମାର୍ଗ ପ୍ରଦର୍ଶନ ପାଇଁ ଆମ ପୁରାଣରେ ଅନେକ ଉଦାହରଣ ଅଛି । ତା'ର ସମୟୋପଯୋଗୀ ଉପସ୍ଥାପନାର ଆବଶ୍ୟକତା ରହିଛି । ଏମିତି ଏକ ମୂଲ୍ୟବୋଧ ଭିତ୍ତିକ ନାଟକ 'ବିଭୂତି' ।

'ମାଂକଡ଼' ମଧ୍ୟ ସେମିତି ଏକ ବୈପ୍ଳବିକ ନାଟକ । ସାଂପ୍ରତିକ ଶିକ୍ଷା ଓ ବାସ୍ତବ ଜୀବନ ଭିତରେ ବିରାଟ ପାର୍ଥକ୍ୟ ଜର୍ଜରିତ ଯୁବସମାଜର ଏକ ଭୟାନକ ଚିତ୍ର ଏଠାରେ ପରିବେଷିତ । କେତେଜଣ ଅର୍ଦ୍ଧଶିକ୍ଷିତ ରାଜନୈତିକ ବ୍ୟକ୍ତିତ୍ୱର ହାତରେ ଉଚ୍ଚଶିକ୍ଷାଗତ ଯୋଗ୍ୟତାସଂପନ୍ନ ଯୁବଗୋଷ୍ଠୀ ମାଂକଡ଼ ହୋଇ ନାଚୁଛନ୍ତି ତା'ର ଏକ ନିଛକ ଚିତ୍ର ଏଥିରେ ଉପସ୍ଥାପିତ । କିନ୍ତୁ ପରିଣତିରେ ମନେପଡ଼ିଛି ଏଇ ମାଂକଡ଼ ଲାଂଜରେ ଅଗ୍ନିସଂଯୋଗ କରି ସ୍ୱର୍ଣ୍ଣଲଂକା ଭସ୍ମୀଭୂତ ହୋଇଥିଲା । ଶେଷ ମୁହୂର୍ତ୍ତରେ ସେମାନେ ମାଙ୍କଡ଼ ଲାଂଜରେ ନିଆଁ ଲଗେଇବାର ଭୁଲ୍ କରୁନାହାନ୍ତି । ମାଂକଡ଼ର କିନ୍ତୁ ଚେତା ଆସିଛି ସେ ଆହ୍ୱାନ କରିଛି ତା' ଲାଂଜରେ ଅଗ୍ନିସଂଯୋଗ କରିବାକୁ ଏମିତି ଏକ ସଂଘର୍ଷମୟ ଚିତ୍ରରେ ସମୃଦ୍ଧ ମାଂକଡ଼ ନାଟକ ।

ଉପରୋକ୍ତ ନାଟକଗୁଡ଼ିକ ୧୯୮୮ରୁ ମସିହାରୁ ଏଯାବତ୍ ଭିନ୍ନଭିନ୍ନ ସମୟରେ ଝଂକାରରେ ପ୍ରକାଶିତ ହୋଇ ପାଠକୀୟ ଆଦୃତିଲାଭ କରିବା ସଂଗେସଂଗେ ସାରସ୍ୱତ ଜଗତରେ ବେଶ୍ ଚର୍ଚ୍ଚିତ ହୋଇପାରିଛି । ଏଥିମଧ୍ୟରୁ କେତୋଟି ନାଟକ ଓଡ଼ିଶାର ଭିନ୍ନଭିନ୍ନ ମଂଚରେ ମଂଚସ୍ଥ ହୋଇ ଦୂରଦର୍ଶନରେ ପ୍ରସାରିତ ହୋଇ ମଂଚ ସଫଳତା ମଧ୍ୟ ପାଇଛି । ଓଡ଼ିଆ ନାଟ୍ୟସାହିତ୍ୟକୁ ଅଧିକ ସମୃଦ୍ଧ କରିବା ଆଶାରେ ଏଗୁଡ଼ିକୁ ଏକାଠିକରି ଏକ ପୁସ୍ତକ ଆକାରରେ ପ୍ରକାଶ କରିବାର ଦୁଃସାହସ କରିଛନ୍ତି ଓଡ଼ିଶାର ଅନ୍ୟତମ ଅଗ୍ରଣୀ ଅନୁଷ୍ଠାନ 'ସୁବର୍ଣ୍ଣଶ୍ରୀ ପ୍ରକାଶିନୀ' । ପ୍ରଥମେ ତାଙ୍କ ପରିଚାଳକ ବଂଧୁ କାଳୀପଦ ପଣ୍ଡାଙ୍କୁ କୃତଜ୍ଞତା ଜଣାଉଛି । ବିଶେଷକରି ଝଂକାରର ସଂପାଦକ ଓଡ଼ିଆ ସାହିତ୍ୟର ପ୍ରଥିତଯଶା କବି ଶ୍ରୀଯୁକ୍ତ ସରୋଜ ରଂଜନ ମହାନ୍ତିଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ତାଙ୍କର ପ୍ରେରଣା ମୋତେ ଉତ୍ସାହିତ କରିଛି । ଏହାର ପ୍ରକାଶକାଳରେ ସେ ମୁଖବଂଧ ଲେଖିଥିବାରୁ ମୁଁ ସେହି ପୂଜ୍ୟ ସାରସ୍ୱତ ବ୍ୟକ୍ତିତ୍ୱ ନିକଟରେ କୃତଜ୍ଞତା ସ୍ୱୀକାର କରୁଛି । ସର୍ବୋପରି ଏଥିରେ ସ୍ଥାନିତ ନାଟକଗୁଡ଼ିକ ମଂଚନ କରାଇବାରେ ଓଡ଼ିଶାର ଅନ୍ୟତମ ସମ୍ଭ୍ରାନ୍ତ ନାଟ୍ୟସଂସ୍ଥା 'ସ୍ରଷ୍ଟା'ର ନିର୍ଦ୍ଦେଶକ, କଳାକାର ଓ ସଂଗୀତଶିଳ୍ପୀ, ମଂଚଶିଳ୍ପୀମାନଙ୍କର ନିଷ୍ଠା ନିକଟରେ ମୁଁ ନତମସ୍ତକ, ସେମାନଙ୍କ ଅବଦାନ ମୋପାଇଁ ଅବିସ୍ମରଣୀୟ । ଆଜି ଏ ପୁସ୍ତକ ପ୍ରକାଶନ କାଳରେ ମୁଁ ଏ ନାଟକଗୁଡ଼ିକ ସହିତ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଜଡ଼ିତ ସମସ୍ତ ଗୁଣୀଜ୍ଞାନୀଜନଙ୍କ ନିକଟରେ କୃତଜ୍ଞତା ଜଣାଉଛି । ଏ ନାଟକଗୁଡ଼ିକ ଓଡ଼ିଆ ନାଟ୍ୟପ୍ରେମୀଙ୍କ ନିକଟରେ ଆଦୃତ ହେଉ ଏହାହିଁ କାମନା ।

ଜ୍ଞାନେନ୍ଦ୍ର ମହାନ୍ତି

# ଏଥିରେ ଥିବା ନାଟକ





## ୨୦୧୪ ଜାନୁଆରୀ 'ଝଙ୍କାର'ରେ ପ୍ରକାଶିତ 'ପୁଷ୍ପର ନାମ ପାରିଜାତ'ର ଚରିତ୍ରମାନେ

- ଚନ୍ଦ୍ର
- ଅପରାଜିତା
- ସିଦ୍ଧିକ୍
- ମେଘା
- ଗିରିଜା
- ପର୍ଶୁ
- ଶ୍ରୀକୃଷ୍ଣ
- ନରିଆ
- ପରିଆ
- ନାରଦ
- ଇନ୍ଦ୍ର
- ସତ୍ୟଭାମା

# ପୁଷ୍ପର ନାମ ପାରିଜାତ

## ପ୍ରଥମ ଦୃଶ୍ୟ

ସମଗ୍ର ମଂଚଟି ଆଗ ପଛକରି ଦୁଇ ଭାଗରେ ବିଭକ୍ତ, ସମ୍ମୁଖ ଅଞ୍ଚଳଟି ଏକ ପ୍ରାଇଭେଟ୍ କଲେଜ ଅଧ୍ୟାପକଙ୍କ ଡ୍ରଇଙ୍ଗରୁମ୍ ଓ ପଛ ଅଞ୍ଚଳଟି ତାଙ୍କ ଟି.ଭି.ବକ୍ସ ଭାବରେ ବ୍ୟବହୃତ ହୁଏ । ଉକ୍ତ ଅଞ୍ଚଳଟି ପ୍ରଥମରୁ ଏକ ପରଦା ଦ୍ୱାରା ଆବୃତ । କାନ୍ଥରେ କେତେକ ଆଦର୍ଶ ବ୍ୟକ୍ତିତ୍ୱର ଫଟୋଚିତ୍ର ଅତି ସାଧାରଣ ଆସବାବପତ୍ରରେ ଘରଟି ଅର୍ଦ୍ଧସଜ୍ଜିତ ଆଲୋକ ମଧ୍ୟ ଅତି ସାଧାରଣ ।

କୌଣସି ଏକ ସନ୍ଧ୍ୟାରେ ପରଦା ଉଠେ । ଦେଖାଯାଏ ଅପରାଜିତା, ଅଧ୍ୟାପକଙ୍କ ପଚିଶ ବର୍ଷିୟା ସ୍ତ୍ରୀ ଘରଟିକୁ ସଜାଡୁଥାନ୍ତି । ତଳେ ତାଙ୍କ ଚାରି ବର୍ଷିୟା କନ୍ୟା ବସି ବହି ଖଣ୍ଡିକୁ ଓଲଟାଉଥାଏ । ମଝିରେମଝିରେ ଏଣୁତେଣୁ ପ୍ରଶ୍ନ ପଚାରି ମାଆଙ୍କୁ ବିରକ୍ତ କରୁଥାଏ । ଅପରାଜିତା ମଧ୍ୟ ଅନ୍ୟମନସ୍କ, ସେ ଯେମିତି କାହାର ଆସିବାକୁ ଅପେକ୍ଷା କରିଥାନ୍ତି ।

ମେଘା : ମାମି ! ମାମି ! ଦେଖିଲ, ଏଇଟା କାହା ଛବି ?

ଜିତା : ତୁ ୟା'ଙ୍କୁ ଚିହ୍ନିନୁ ? ଇଏ ପରା ଗାନ୍ଧିଜୀ ।

ମେଘା : ଓ ଇଏ ଗାନ୍ଧିଜୀ ନୁହେଁ ? ୟା'ଙ୍କରି କଥା ବାପି କହନ୍ତି ନା ? ଇଏ ପରା ଆମ ଦେଶକୁ ସ୍ୱାଧୀନ କରିଥିଲେ ।

ଜିତା : ହଁ ।

ମେଘା : ତାଙ୍କ ମୁଣ୍ଡରେ କ'ଣ ଚୂଳ ନାହିଁ ?

ଜିତା : ନା ।

ମେଘା : ମାମି, ସେ ଏବେ କେଉଁଠି ଅଛନ୍ତି ?

ଜିତା : ସ୍ୱର୍ଗରେ ।

| | |
|---|---|
| ମେଘା | ସ୍ୱର୍ଗ କେଉଁଠି ? |
| ଜିତା | ମୁଁ କହିପାରିବିନି |
| | (ମେଘାର ମନ ଯେମିତି ମରିଯାଏ, ସେ ବସିପଡ଼େ, ଜିତା ବାହାରକୁ ଲକ୍ଷ୍ୟକରେ, ପୁଣି ନିରାଶ ହୋଇ ଫେରିଆସେ ।) |
| ମେଘା | ମାମି ! ଗାନ୍ଧିଜୀ କ'ଣ ଜଣେ ଭିକାରି ଥିଲେ ? |
| ଜିତା | ଚୁପ୍ ! ସେମିତି କହନ୍ତିନି । |
| ମେଘା | କାହିଁକି ? |
| ଜିତା | ଗାନ୍ଧିଜୀ କ'ଣ ତୁମକୁ ଭିକାରି ଭଳି ଦିଶୁଛନ୍ତି ? |
| ମେଘା | ଦେଖୁନ, ଜାମା ଖଣ୍ଡେ ପିନ୍ଧିନାହାନ୍ତି । ପେଣ୍ଟ୍ ବି ପିନ୍ଧିନାହାନ୍ତି । ଛିଣ୍ଡା ଆଉ ଛୋଟ ଲୁଗା ଖଣ୍ଡେ ପିନ୍ଧି ବାଡ଼ିଖଣ୍ଡେ ଧରି ଯାଉଛନ୍ତି । |
| ଜିତା | ନାଇଁ, ସେ ଥିଲେ ଖାଣ୍ଟି ଭାରତୀୟ, ତେଣୁ ସେ ଜଣେ ଭାରତୀୟର ପୋଷାକ ପିନ୍ଧିଛନ୍ତି । |
| ମେଘା | ଆମେ କ'ଣ ଖାଣ୍ଟି ଭାରତୀୟ ନୋହୁଁ ? ଆମେ ତ କେହି ସେମିତି ଡ୍ରେସ୍ ପିନ୍ଧୁନୁ, ଯାହା ଭିକାରିମାନେ ପିନ୍ଧୁଛନ୍ତି । |
| ଜିତା | ମୁଁ ବାବା ଏତେ କଥା ଜାଣେନି । ତମ ବାପି ଆସନ୍ତୁ, ତମେ ପଚାରିବ ସେ କହିବେ । |
| ମେଘା | ମାମି, ବାପି କାହାନ୍ତି କି ? (ଦୁଆର ଠକ୍‌ଠକ୍ ହୁଏ) |
| ଜିତା | ଏଇ ବୋଧେ ବାପି ଆସିଲେଣି । |
| | (ଉଠିଯାଆନ୍ତି ଓ ଦୁଆର ଖୋଲନ୍ତି । ଜଣେ ୩୦ବର୍ଷର ଯୁବକ ଚନ୍ଦ୍ର ଆସନ୍ତି । ମୁହଁରେ ଅବସାଦ ଓ ହତାଶାର ଚିହ୍ନ । ଆସି ବସି ଯାଆନ୍ତି ।) |
| ମେଘା | ବାପି ! ଗାନ୍ଧିଜୀ କ'ଣ ଭିକାରି ଥିଲେ ? |
| ଚନ୍ଦ୍ର | ହଁ । |
| ମେଘା | ଦେଖିଲ ମାମି ? ମୁଁ କ'ଣ କହୁଥିଲି, ଗାନ୍ଧିଜୀ ଜଣେ ଭିକାରି ଥିଲେ । ମୋ' କଥା ଠିକ୍ । |
| ଜିତା | ଓ ଚୁପ୍‌କର । ସବୁବେଳେ ଫାଜିଲାମି । |

ଚନ୍ଦ୍ର ଓ ତାକୁ କହିବାକୁ ଦିଅ । ଗାନ୍ଧିଜୀ ଜଣେ ଭିକାରି ଥିଲେ । ଅନ୍ୟର ଦୟା ଉପରେ ବଂଚୁଥିଲେ ଆଉ ତାଙ୍କରି ଉତ୍ତରପୁରୁଷ ଆମେ ମଧ୍ୟ ସେମିତି ଏକ ଅନୁଗୃହୀତ ଜୀବନର ଉପଭୋକ୍ତା ଭାବରେ ବଂଚିବାର ଛଳନା କରୁଛୁ । (ସମସ୍ତେ ଯେମିତି ସ୍ତବ୍ଧ)

ଜିତା କ'ଣ ହେଲା କି, ଏତେ ଡେରି ହେଲା ଯେ !

ଚନ୍ଦ୍ର (ଚାହିଁଲେ, ଦୀର୍ଘଶ୍ୱାସ ପକେଇ) ଗିଲାସେ ପାଣି ଦିଅ ।

ଜିତା ଆଣୁଚି (ଯାଉଥିଲେ, ପୁଣି କ'ଣ ଭାବି) ମେଘା ! ବାପିଙ୍କୁ ବିରକ୍ତ କରିବନି ।

ମେଘା ନାଇଁ ।

ଜିତା ଏଇ ନିଅ ରଂଗବାକ୍ସ । ସେ ଛବିରେ ବସି ରଂଗ ମଡ଼ାଅ ।

ମେଘା ଦିଅ – (ଜିତା ରଂଗ ଦେଇଗଲେ । ଚନ୍ଦ୍ର କ'ଣ ଭାବିଲେ, ଫାଇଲ ଖୋଲିବାକୁ ଯିବା ସମୟରେ ଜିତା ଗୋଟେ ପ୍ଲେଟ୍‌ରେ ମିଠା ଓ ଗ୍ଲାସ୍‌ରେ ପାଣି ନେଇ ପହଞ୍ଚିଲେ ।)

ଜିତା ନିଅ, ପ୍ରଥମେ ଏ ମିଠାଟାକୁ ପାଟିରେ ପକେଇଦିଅ । ତା'ପରେ ପାଣି ।

ଚନ୍ଦ୍ର ମିଠା !

ଜିତା ବୋଉ ଆସିଥିଲା ତ !

ଚନ୍ଦ୍ର ବୋଉ ?

ଜିତା ସେକଥା ତମେ ଭାବନି । ଯାହା କହିବାର ମୁଁ କହିଦେଇଛି ।

ଚନ୍ଦ୍ର (ମିଠାଟା ପାଟିରେ ଥୋଇ) ସେହି ପୁରୁଣା କଥା ତ ! ମୋ ଇଚ୍ଛାରେ ମୁଁ ବାହାହୋଇଛି, ମୋ ଦୁଃଖସୁଖ ନେଇ ମୁଁ ଅଛି । ତମର କାହାରି ମୋ କଥାରେ ମୁଣ୍ଡ ବଥେଇବା ଦରକାର ନାହିଁ ।

ଜିତା କ'ଣ ଆଉ କହିଥାନ୍ତି ? ମୁଁ ତ ତମମାନଙ୍କୁ ହାତ ପାବୁନି । ତମେ କାହିଁକି ମୋ ଉପରେ ଏମିତି ଦୟା ଦେଖେଇବା ପାଇଁ ବାରମ୍ବାର ଦୌଡ଼ିଆସୁଛ !

ଚନ୍ଦ୍ର ନାଇଁ ଜିତା, ସେମାନେ ତ ଆଉ ଆସିବେନି । ଏବେ ତମକୁ ସେମାନଙ୍କ ପାଖକୁ ଯିବାକୁ ପଡ଼ିବ ।

ଜିତା ନ ଗଲେ ?

ଚନ୍ଦ୍ର ହୁଏତ ତମ ହତଭାଗା ସ୍ୱାମୀର ଚାକିରି ଖଣ୍ଡକ !

ଜିତା କ'ଣ ହେଲା କି ?

ଚନ୍ଦ୍ର ସେକ୍ରେଟାରୀ କହିଲେ, ଲକ୍ଷେ ଟଂକା ଡୋନେସନ୍ ପଡ଼ିବ ।

ଜିତା ଲକ୍ଷେ ଟଂକା ?

ଚନ୍ଦ୍ର ଖାଲି ଇଂରାଜି ପାଇଁ, ନହେଲେ ଓଡ଼ିଆ ବାଲାଙ୍କଠୁଁ ଦୁଇଲକ୍ଷ ନଉଛନ୍ତି । ସେ ପୁଣି ଆଜି ରାତିକ ଭିତରେ ନହେଲେ କାଲି ସକାଳେ ମୋ ଲାଇନ୍ କଟିଯିବ । ତେଣୁ ତମେ ବରଂ...

ଜିତା ବାପାଙ୍କ ପାଖକୁ ଯିବି, ହାତ ପାତିବି ।

ଚନ୍ଦ୍ର ନହେଲେ...

ଜିତା ଚାକିରି ମିଳିବନି । କିନ୍ତୁ ଡୋନେସନ୍ ଦେଲେ କ'ଣ ଚାକିରି ମିଳିବା ନିଶ୍ଚିତ ?

ଚନ୍ଦ୍ର ହଁ, ଜବାବ ଦେଇ ଆସିଛି ।

ଜିତା ଠିକ୍ ଅଛି, ମୁଁ ଦେବି ।

ଚନ୍ଦ୍ର ତମେ.... !

ଜିତା ବିଶ୍ୱାସ ହେଉନି ତ ! ଅପେକ୍ଷା କର ।

(ଭିତରକୁ ଯାଏ । ଚନ୍ଦ୍ର ବିସ୍ମୟରେ ଚାହିଁଥାଏ । ଆସେ ଜିତା, ଏକ ରୁମାଲବଂଧା ପୁଡ଼ିଆ ନେଇ)

ଜିତା ନିଅ, କୌଣସି ବଣିଆ ଦୋକାନରେ ଦେଇଦେବ - ପ୍ରାୟ ଷାଠିଏ ଗ୍ରାମ୍ ଅଛି । ହେଇଯିବ ।

ଚନ୍ଦ୍ର ତା'ମାନେ ତମ ଗହଣାସବୁ....

ଜିତା ହଁ !

ଚନ୍ଦ୍ର ନା !

ଜିତା କାହିଁକି ?

ଚନ୍ଦ୍ର ମୋର ପଇସା ନାହିଁ ଜିତା, ହେଲେ....

| | |
|---|---|
| ଜିତା | ପୌରୁଷ ଅଛି, ଏଇଆ ତ ? ମୁଁ ତମ ପୌରୁଷକୁ ଆଘାତ କରୁନି । ମୋର ସ୍ୱାଭିମାନର୍ ସୁରକ୍ଷା ପାଇଁ କହୁଛି । ମୋ ବାପା ଭାଇଙ୍କ ଚାଲେଞ୍ଜ୍‌କୁ ମୁଁ ସାମ୍ନା କରୁଛି । ତମେ ଖାଲି ଗୋଟେ ଚାକିରି କରିଯାଅ ଚନ୍ଦ୍ର । ମୁଁ ମୋର ଜିଦ୍ ରଖିପାରେ, ମୋର 'ଅପରାଜିତା' ନାମର ସାର୍ଥକତା ରହୁ । |
| ଚନ୍ଦ୍ର | ନାଇଁ, ମୁଁ ପାରିବିନି । ତମ ହାତ ପାଇଁ ପଟେ ଚୁଡ଼ି ତ ଦେଇପାରିନି, ଆଉ ତମ ଗହଣାତକ ନଷ୍ଟ କରି.. ନା ନା । ମୁଁ ପାରିବିନି । |
| ଜିତା | ପ୍ଲିଜ୍, ପ୍ଲିଜ୍ ଚନ୍ଦ୍ର, ମୋ ରାଣ, ମୋ ମନରେ ତିଳେ ଦୁଃଖ ନାହିଁ । ମୁଁ ବରଂ ଗର୍ବ ଅନୁଭବ କରୁଛି, ନିଅ । ଯାଅ, ବିକିଦିଅ । (ମୋଟର ସାଇକେଲ୍ ସାଉଣ୍ଡ୍ ଶୁଭେ) |
| ଚନ୍ଦ୍ର | କିଏ ଆସିଲା ? |
| ଜିତା | ଭାଇ ବୋଧହୁଏ । |
| ଚନ୍ଦ୍ର | ଭାଇ ! |
| ଜିତା | ଦେଖୁଛି - (ଯାଏ, ହଠାତ୍ ଫେରିଆସେ)ପୁଲିସ୍ । |
| ଚନ୍ଦ୍ର | ଏଁ ! ପୁଲିସ୍ ? (ଆଗେଇଯାଆନ୍ତି, ଆସନ୍ତି ସିଦ୍ଧିକ୍, ପୁଲିସ୍, ଚନ୍ଦ୍ରର ବଂଧୁ) ଆବେ ସିଦ୍ଧିକ୍ । ତୁ ? |
| ସିଦ୍ଧିକ୍ | Hands up |
| ଚନ୍ଦ୍ର | ମାନେ ? (ଆଶ୍ଚର୍ଯ୍ୟରେ) |
| ସିଦ୍ଧିକ୍ | ହାତରେ କ'ଣ.... । |
| ଚନ୍ଦ୍ର | ନାଇଁ.. । |
| ଜିତା | ସେ ଗହଣାତକ ମୋର, ରସିଦ୍ ଅଛି । |
| ସିଦ୍ଧିକ୍ | ରସିଦ୍ ଥିଲେ କ'ଣ ଚୋରି ହୁଏନି ? |
| ଚନ୍ଦ୍ର | ଆରେ ସିଦ୍ଧିକ୍ । ତୁ ମାନେ.. ମୋତେ କ'ଣ । ମୁଁ, ମୁଁ ଚନ୍ଦ୍ର... । |
| ସିଦ୍ଧିକ୍ | (ହଠାତ୍ ହସିଉଠିଲେ) ଆବେ, ଏତେ ଡରିଲେ କ'ଣ ଚଳିବ ? ଆରେ ଭାଉଜ ? ରିଲାକ୍ସ ହୁଅ ମ । ଆବେ ଚନ୍ଦ୍ର, ଭାଉଜଙ୍କୁ ସାଂଗରେ ଇଣ୍ଟ୍ରୋଡିଉସ୍ କରି ଦେ । ନହେଲେ ତାଙ୍କ ହୋସ୍ ଉଡ଼ିଯିବ । |

ଚନ୍ଦ୍ର — ମୋ ହୋସ୍ ତ ଉଡ଼ିଯାଇଥିଲା...

ସିଦ୍ଧିକ୍ — ହଉ ଭାଉଜ, ମୁଁ ସିଦ୍ଧିକ ମହମ୍ମଦ ।

ଚନ୍ଦ୍ର — ମୋର ପିଲାଦିନର ସାଂଗ ।

ଛିତା — ମୁଁ ବୁଝିଗଲିଣି ।

ସିଦ୍ଧିକ୍ — ମୁଁ ଏଇ ଥାନାରେ ଗତକାଲି ଜଏନ୍ କଲି । ସେଇଠୁ ତୋ ପତ୍ତା ଖୋଜି ଖୋଜି ଆଜି ପାଇଗଲି ।

ଚନ୍ଦ୍ର — ନାଇଁ, ମୋତେ ଏଠି କେହି ଚିହ୍ନିନାହାନ୍ତି ତ !

ସିଦ୍ଧିକ୍ — ନାଇଁ, ଢ଼େର ଲୋକ ତ ତୋତେ ଜାଣିଛନ୍ତି । କହୁଛନ୍ତି, କୋଉ ଚନ୍ଦ୍ରବାବୁ ? ଏଇ ଯୋଉ ଖବରକାଗଜରେ ଲେଖନ୍ତି, ସେଇ ତ ! ମୁଁ କହିଲି, ହଁ । ନା, ହେଇ ସେ ଆଗ ବାଙ୍କରେ ଟାଇଲଘର - ବାସ୍ ପାଇଗଲି ।

ଚନ୍ଦ୍ର — ଟିକିଏ ଚା' କର ।

ଛିତା — ଆଣୁଛି । ମେଘା ! ଅଙ୍କଲଙ୍କୁ ନମସ୍କାର କର ?

ଚନ୍ଦ୍ର — ମେଘା !

[illegible] — ନମସ୍କାର, ଅଙ୍କଲ ।

ସିଦ୍ଧିକ୍ — ହଁ ନମସ୍କାର ।

ମେଘା — ଅଙ୍କଲ ! ମୁଁ ଏ ଛବିରେ ଟିକିଏ ରଂଗ ମାରିଦିଏ । ତା' ପରେ କଥା ହେବି ।

ସିଦ୍ଧିକ୍ — ଥାଙ୍କ୍ ୟୁ (ମେଘା ଯାଏ) ତୋ ଝିଅଟା ଖୁବ୍ ସ୍ପଷ୍ଟବାଦୀ ହବ ।

ଚନ୍ଦ୍ର — ବହୁତ ଫିକ୍‌ଲ ।

ସିଦ୍ଧିକ୍ — ମୋ ପୁଅଟା ବି ସେମିତି ।

ଚନ୍ଦ୍ର — ତୋର ପୁଅ...

ସିଦ୍ଧିକ୍ — ବାସ୍, ଛାଡ଼୍ । ହଁ ବେ, ହାତରେ ସେ ଗହଣାସବୁ ଧରି କୁଆଡ଼େ ବାହାରିଥିଲୁ ?

ଚନ୍ଦ୍ର — ଏଇ ମ୍ୟୁନିସିପାଲ୍ କଲେଜରେ ଗୋଟେ ପୋଷ୍ଟ ପାଇଁ..

ସିଦ୍ଧିକ୍ — କ'ଣ ଲାଞ୍ଚ ?

| | | |
|---|---|---|
| ଚନ୍ଦ୍ର | | ନାଇଁ, ଡୋନେସନ୍ । |
| ସିଦ୍ଦିକ୍ | : | କିଏ ନଉଛି ? |
| ଚନ୍ଦ୍ର | | ସେକ୍ରେଟାରୀ ଚିତ୍ତ ନାୟକ |
| ସିଦ୍ଦିକ୍ | | ଚିତ୍ତ ନାୟକ ସେକ୍ରେଟାରୀ ? କେବେ ନବ ? |
| ଚନ୍ଦ୍ର | | ଆଜି ରାତି ସୁଦ୍ଧା ନଦେଲେ କାଲିକି ଆଉ ଜଣେ.. |
| ସିଦ୍ଦିକ୍ | | ରହିଯିବ, ଆଉ ତୁ ସେଇଥିପାଇଁ ଭାଉଜଙ୍କ ଗହଣା ଧରି ବାହାରିଛୁ ? ଆ ମୋ ସାଂଗରେ । |
| ଚନ୍ଦ୍ର | | କୁଆଡ଼େ ? |
| ସିଦ୍ଦିକ୍ | | ତୁ ଆ' କହିଲି । ଚିତ୍ତ ନାୟକର ଗୋଟେ ବଡ଼ କାମ ମୋ ପାଖରେ ଅଛି । ମୁଁ କହିବି, ଯଦି ନ ମାନେ ମୁଁ ଡୋନେସନ୍‌ର ଆରେଞ୍ଜ୍ କରିବି । (ତା' ନେଇ ଆସନ୍ତି ଜିତା) |
| | | ଭାଉଜ ! ଏ ଗହଣାତକ ରଖନ୍ତୁ । ରସିଦ୍ ପାଖରେ ରଖି ଗହଣା ବାହାରେ ରଖିଲେ ପୁଲିସ୍ ଧରିବ । |
| ଜିତା | | ହେଲେ ... ? |
| ଚନ୍ଦ୍ର | | ସିଦ୍ଦିକ କହୁଛି, ଚିତ୍ତ ବାବୁ ତା'ର ଜଣାଶୁଣା । |
| ସିଦ୍ଦିକ୍ | | ଆରେ, ମୁଁ ତ ଜବାବ ଦେଲି । |
| ଚନ୍ଦ୍ର | | କିନ୍ତୁ ସେମାନେ କାଲେ ତାଙ୍କ କଲେଜ ଡେଭେଲପ୍‌ମେଣ୍ଟ ପାଇଁ ନେଉଛନ୍ତି । |
| ସିଦ୍ଦିକ୍ | | ସେଟା ଗୋଟେ ବାହାନା । ଆଉ ଯଦି ବା ନେଉଥାନ୍ତି, ମୁଁ ଦେବି । |
| ଜିତା | | ଆପଣ ! |
| ଚନ୍ଦ୍ର | | ନା । |
| ସିଦ୍ଦିକ୍ | | ଭାଉଜ ! ଆପଣ ଜାଣିନାହାନ୍ତି । ମୁଁ ଆଜି ଯଦି ବା କିଛି ହୋଇଥାଏ, ଏଇ ଚନ୍ଦ୍ର ପାଇଁ । ତା'ଠୁ ବହିନେଇ, ତା'ଠୁ ଖାତା ନେଇ, ତା'ଠୁ ଡ୍ରେସ୍ ନେଇ ମୁଁ କ୍ଲାସ୍ ଯାଏ । ସେ ଟ୍ୟୁସନ୍ ପଢ଼ି ମୋତେ ପଢ଼ାଏ । ମୋ ପାଇଁ ସେ କେତେ ଅପମାନ ସହିଛି । ଥରେ ଦଂଗା ବେଳେ ସେ ମୋ ପୋଷାକ ନିଜେ ପିନ୍ଧି ମୋତେ ତା' ପୋଷାକ ପିନ୍ଧାଇ |

|  |  |
|---|---|
|  | ମୋ ଘର୍‌ରେ ଛାଡ଼ିଥିଲା । ନହେଲେ ମୁଁ ଏବେ କୋଉଁଠି ରାସ୍ତାକଡ଼ରେ ଖାସି କାଟୁଥାନ୍ତି, କି ସାଇକେଲ ପେଚ୍ କରୁଥାନ୍ତି । |
| ଚନ୍ଦ୍ର | ଆରେ ତୁ ସେସବୁ କଥା ଏ ପର୍ଯ୍ୟନ୍ତ ମନେରଖିଛୁ ? |
| ସିଦ୍ଧିକ୍ | ଚନ୍ଦ୍ର, ସେଗୁଡ଼ା କ'ଣ ଭୁଲିହେବ ? (ଲୁହ ପୋଛି) ନେ, ଚା' ପିଇଦେ । |
| ଚନ୍ଦ୍ର | ଚା'ଟା ଥଣ୍ଡା ହୋଇଗଲାଣି । |
| ସିଦ୍ଧିକ୍ | ଭାଉଜ ! ବାକି ରହିଲା, ଆଉଦିନେ ଆସିଲେ ଗରମ ଚା' ପିଇବି । ଆ ଚନ୍ଦ୍ର । |
| ଜିତା | ଆଉଦିନେ ନୁହେଁ, ଆଜି ରାତିର ଡିନରଟା ଆମ ଘରେ । |
| ସିଦ୍ଧିକ୍ | ଓ ସିଓର୍ । |
| ଚନ୍ଦ୍ର | ମୁଁ ଆସୁଛି । (ଯାଆନ୍ତି ଅପରାଜିତା ଚାହିଁରହେ । |

(ଅନ୍ଧାର)



## ଦ୍ୱିତୀୟ ଦୃଶ୍ୟ

....ସେହି ଘର ସେଇମିତି, କେବଳ ସମୟ କିଛିଦିନ ଗଡ଼ିଯାଇଛି । ଏମିତି ଦିନେ ସକାଳେ ..

ଛିତା — ସ୍କୁଲ ବେଗ୍ ସଜାଡ଼ିସାରିଛୁ ?

ମେଘା — ହଁ ଯେ ଖାଲି କଲର ବକ୍ସଟା ବେଗ୍‌ରେ ପୂରାଇବି ।

ଛିତା — ୱାଟର ବଟଲ୍...

ମେଘା — ହଁ, ପାଣି ପୂରେଇଦେଇଛି । ମାମି ! ଆମର ଫ୍ରିଜ୍‌ଟେ ଆଣୁନ ଥଣ୍ଡାପାଣି ନେଇ ଯାଆନ୍ତି । ଆଲ୍‌ଫା ନା, ପୂରା ଥଣ୍ଡାପାଣି ନେଇକି ଆସୁଛି ।

ଛିତା — ବେଶ୍, ତମେ ବି ନବ । ଏତେ ବ୍ୟସ୍ତ କାହିଁକି ! ବେଶ୍, ହେଇଗଲା ଏବେ ମୋର ସୁନାଝିଅ ଆରାମରେ ସ୍କୁଲ ଚାଲିଯିବ ।

ମେଘା — ଏବେ ଚାଲିଯିବି ? କେମିତି ଯିବି, ରିକ୍ସା ଆସୁ ।

ଛିତା — ଓ ରିକ୍ସା ଆସିନି ପରା ?

ମେଘା — ମାମି ! ମୁଁ କ'ଣ ସବୁଦିନ ଏମିତି ରିକ୍ସାରେ ଯାଉଥିବି ?

ଛିତା — କାହିଁକି ?

ମେଘା — ଆଲ୍‌ଫାନା ସବୁଦିନ ସ୍କୁଟରରେ ଯାଉଛି । ପଛରେ ବାହାରିବ, ମୋତେ bye bye କରିଦେଇ ଆଗରେ ପହଞ୍ଚିଯିବ । ଆମ ବାପି ସିନା ଗୋଟେ ସ୍କୁଟର ଆଣନ୍ତେ ।

ଚିତା	ତୁମେ ବାପିଙ୍କୁ କହୁନ ?

ମେଘା	ବାପି କହିଲେ, ଆମର ପଇସା ନାହିଁ । ମାମି ! ମୋ ବାପି ସାହିତ୍ୟ କରନ୍ତି ନା ?

ଚିତା	ହଁ, କାହିଁକି ?

ମେଘା	ମୁଁ ଏକଥା କ୍ଲାସ୍‌ରେ କହିଲାରୁ ସମସ୍ତେ ହସିଲେ ।

ଚିତା	ତମେ ଏ କଥା କ୍ଲାସ୍‌ରେ କହୁଥିଲ କାହିଁକି ଯେ ?

ମେଘା	ଦିଦି ପଚାରିଲେ, ତମ ବାପା କ'ଣ କରନ୍ତି ? ମୁଁ କହିଲି, ସାହିତ୍ୟ କରନ୍ତି । ମୋ କଥା ଶୁଣି ସମସ୍ତେ ଖୁବ୍ ଜୋର୍‌ରେ ହସିଲେ । ଦିଦି ବି ହସିଲେ । ମୋତେ ଲାଜ ଲାଗିଲା ।

ଚିତା	ଖାଲି ତମ ବାପିଙ୍କୁ ଯାହା ଲାଜ ନାହିଁ ! (ଗାଡ଼ି ଶବ୍ଦ ଶୁଭେ)

ମେଘା	ଏଇ ପୁଲିସ୍ ଅଙ୍କଲ୍ ଆସିଗଲେ ।

ସିଦ୍ଧିକ୍	ଚନ୍ଦ୍ର ! ଚନ୍ଦ୍ର ! (ପ୍ରବେଶ କରି) ଆରେ ଭାଉଜ ! କ'ଣ ମେଘା ସ୍କୁଲ ବାହାରିଛି ?

ମେଘା	ହଁ, ରିକ୍ସା ଆସିଲେ ଯିବି ।

ସିଦ୍ଧିକ୍	କାହିଁକି, ଆସୁନ ମୋ ଗାଡ଼ିରେ ଛାଡ଼ିଦେଇଆସିବି ।

ଚିତା	ନାଇଁ, ସେ ରିକ୍ସାରେ ଚାଲିଯିବ । ଆପଣ ବସନ୍ତୁ ।

ସିଦ୍ଧିକ୍	ଚନ୍ଦ୍ର କାହିଁ ?

ଚିତା	ସେ ମାର୍କେଟ୍ ଯାଇଛନ୍ତି ।

ସିଦ୍ଧିକ୍	ତା' ହେଲେ ମୁଁ ଆସୁଛି ।

ଚିତା	ନାଇଁ ମ, ବସନ୍ତୁ । ସେ ଏଇନେ ଫେରୁଥିବେ ।

ସିଦ୍ଧିକ୍	ସେ ଫେରିଆସୁ । ମୁଁ ବି ଫେରିଆସେ । ଆସ ମେଘା । (ନେଇଯାଏ)

ଚିତା	ନିଜର କେହି ନହେଲେ ବି....

(ଦୀର୍ଘଶ୍ୱାସରେ ଫେରିଆସେ । କିଛି ସମୟ ପରେ 'ମେଘା ! ମେଘା' ଡାକି ବାହାରୁ ଆସନ୍ତି ଚନ୍ଦ୍ର)

ଚନ୍ଦ୍ର ମେଘା କାହିଁ କି ?

ଜିତା ସେ ସ୍କୁଲ ଚାଲିଗଲାଣି ।

ଚନ୍ଦ୍ର ସ୍କୁଲ ଚାଲିଗଲାଣି ! ରିକ୍ସା ତ ବାହାରେ ଅପେକ୍ଷା କରିଛି ।

ଜିତା ତାକୁ ମନା କରିଦିଅ। ସେ ଗାଡ଼ିରେ ଗଲା ।

ଚନ୍ଦ୍ର ଗାଡ଼ିରେ, କାହା ଗାଡ଼ିରେ ?

ଜିତା ସିଦ୍ଦିକ ବାବୁ ଆସିଥିଲେ ଯେ ଗାଡ଼ିରେ ନେଇଗଲେ ।

ଚନ୍ଦ୍ର ସିଦ୍ଦିକ ଆସିଥିଲା ? କେତେବେଳେ ?

ଜିତା ଏଇ ତ ଏବେ, ପୁଣି ଏବେ ଆସିବେ ।

ଚନ୍ଦ୍ର (ବାହାରକୁ ଯାଇ) ଆରେ ତୁ ଯା', ଝିଅ ବାହାରିଗଲାଣି । କ'ଣ କିଛି କାମ ଥିଲା କି ?

ଜିତା ନାଇଁ ଏମିତି ।

ଚନ୍ଦ୍ର ହଉ... ମୁଁ କଲେଜ ଯିବି ।

ଜିତା ରଂଧା ତ ସରିଛି ।

ଚନ୍ଦ୍ର ତା' ହେଲେ ଚାଳ ।

ଜିତା ସିଦ୍ଦିକ୍ ବାବୁଙ୍କୁ ଅପେକ୍ଷା କରିବନି ?

ଚନ୍ଦ୍ର ମୋର ସମୟ ହୋଇଯିବ ।

ଜିତା ତା' ହେଲେ ଚାଳ, ଖାଇଦବ ।

ଚନ୍ଦ୍ର ଓ ତମେ ବଢ଼ାବଢ଼ି କର, ମୁଁ ଟିକିଏ ପେପରଟା ଦେଖିଦଉଛି ।

ଜିତା ଚାଲିଆସିବ, ମୁଁ ଆଉ ଡାକିପାରିବିନି ।

ଚନ୍ଦ୍ର : (ପେପର ଓଲଟାଇଲେ)

(ହଠାତ୍ ଖୁସି ହେଲେ) ଆରେ ! ଏଇଟା ତ ବାହାରିଗଲା, ଜିତା ! ଜିତା !

ଜିତା (ଭିତରୁ) ମୁଁ ବାଢ଼ିସାରିଲିଣି, ଚାଲିଆସ ।

ଚନ୍ଦ୍ର ମୁଁ ଖାଇବି ପରେ । ତମେ ଆଗ ଆସିଲ, ଦେଖ କ'ଣ ବାହାରିଛି ।

ଜିତା (ଆସନ୍ତି, ହାତ ପୋଛିପୋଛି) ଏଇ ବାବା ଗଲି, କ'ଣ ?

ଚନ୍ଦ୍ର ଦେଖିଲ, ଦେଖ ଏ ପେପରରେ କ'ଣ ବାହାରିଛି ।

ଲିତା କ'ଣ ?

ଚନ୍ଦ୍ର ପଢ଼ ।

ଲିତା 'ଦୁର୍ନୀତି ମୂଳରୁ ଚୂଳଯାଏ'-ଅଧ୍ୟାପକ ଚନ୍ଦ୍ର କୁମାର ନାୟକ (ଚାହାନ୍ତି)

ଚନ୍ଦ୍ର ସେଇ ଯୋଉ ଆର୍ଟିକିଲଟାମ, ତମକୁ ପଢ଼ି ଶୁଣଉନଥିଲି, ଖାତା ଦେଖାଠୁ ଚାକିରି ଦେବା ପର୍ଯ୍ୟନ୍ତ, ସବୁଠି ଦୁର୍ନୀତି ।

ଲିତା ଓ, ମୁଁ ଭାବିଲି, ଆଉ କ'ଣ ହୋଇଗଲା !

ଚନ୍ଦ୍ର ତମେ କହୁଥିଲ ପରା, ଏଟା କାଗଜରେ ବାହାରିବନି !

ଲିତା ବାହାରିଲେ କ'ଣ ହେବ ? ଏମିତି ତ କେତେ ବାହାରୁଛି, କିଏ ପଢୁଛି ନା କିଏ ଚେତୁଛି ? ଯାହା ତମ ଭଳି ଲେଖକ କେତେ ଜଣ ଖୁସି ହଉଛ । ସେଥିରେ କ'ଣ ଆମ ପେଟ ପୂରିଯିବ ?

ଚନ୍ଦ୍ର (ମନର ସରସତା ମରିଆସେ)

ଲିତା ପେଟ ପୂରିବା ପାଇଁ ତ କିଛି କଲନି । ଆମେ ସିନା ଚଳିଗଲୁ, ମେଘା ? ମେଘାକୁ ପାଞ୍ଚ ପୂରିଗଲା । ତା' କଥା କେବେ ଭାବିଛ ? କୋଉଁଠି ହେଲେ ପାଞ୍ଚଟା ଟଂକା ରଖିହେଇନି । ସେତେବେଳେ କାହା ପାଖରେ ହାତ ପାତିବ, କିଏ ବା କାହିଁକି ଦବ ?

ଚନ୍ଦ୍ର (କାଗଜଟାକୁ ଚାରି ଭାଂଗ କରି ବସିପଡୁଥିଲେ) ମେଘା ପାଇଁ... ।

ଲିତା କାଲି ପୂର୍ଣ୍ଣବାବୁ ଆସିଥିଲେ, କ'ଣ କହୁଥିଲେ, ତାଙ୍କର ଦି'ଟା ଝିଅଙ୍କପାଇଁ ପଚାଶ ହଜାର କରି ଫିକ୍ସଡ କରିସାରିଲେଣି ।

ଚନ୍ଦ୍ର ପଚାଶ ହଜାର ?

ଲିତା ଦି' ଝିଅଙ୍କର ମିଶି ଲକ୍ଷେ ।

ଚନ୍ଦ୍ର ଲକ୍ଷେଟଙ୍କା.. ଏତେ ଗୁଡ଼ାଏ..

ଲିତା ସେ କେମିତି ରଖିପାରିଲେ, ଏକା ସାଂଗରେ ତ ଚାକିରି କରୁଛ ?

ଚନ୍ଦ୍ର ଚାକିରି, ଏଇ ପ୍ରାଇଭେଟ କଲେଜର ପାଞ୍ଚ ହଜାର ଟଂକା ଦରମାକୁ ତମେ ଚାକିରି ବୋଲି କହୁଛ ?

ଜିତା ପୂର୍ଣ୍ଣବାବୁଙ୍କ ଦରମା କ'ଣ ତମଠୁ ବେଶି ? ସେ କେମିତି କରି ପାରିଲେ ?

ଚନ୍ଦ୍ର ସେ କେମିତି କଲେ, ସତେ ତ ?

ଜିତା ତାଙ୍କଠୁ ବୁଝୁନ ? କହିବ, ସମୟ ନାହିଁ, ଆଗ୍ରହ ନାହିଁ । ଆଉ ଅଯଥାରେ ସାହିତ୍ୟ କରି ସମୟ ଯାହା ସାରୁଛ ।

ଚନ୍ଦ୍ର ସାହିତ୍ୟ ପୁଣି ଅଯଥାରେ ?

ଜିତା ଅଯଥା ନୁହେଁ ତ ଆଉ କ'ଣ । ତମ ଝିଅକୁ ପଚାର, ତାଙ୍କ କ୍ଲାସ୍‌ରେ କ'ଣ କହିଲେ ।

ଚନ୍ଦ୍ର କ'ଣ କହିଲେ ?

ଜିତା ଦିଦି ପଚାରିଲେ, ତମ ବାପା କ'ଣ କରନ୍ତି ? ବାପା ତ ଗୌରବର ସହିତ ଝିଅକୁ ଶିଖେଇଛନ୍ତି, ଝିଅ କହିଦେଲା, ମୋ ବାପା ସାହିତ୍ୟ କରନ୍ତି ।

ଚନ୍ଦ୍ର ହଁ, ଭୁଲ କ'ଣ କହିଲା !

ଜିତା ନାଇଁ, ଠିକ୍ କହିଲା, କିନ୍ତୁ ତା' ଉତ୍ତର ଶୁଣି ସାରା କ୍ଲାସର ପିଲାମାନେ ହସିଲେ, ଏମିତିକି ତାଙ୍କ ଦିଦି ମଧ୍ୟ । ସେ ତ ଠିକ୍ କହିଲା, ସେମାନେ ହସିଲେ କାହିଁକି ?

ଚନ୍ଦ୍ର କାହିଁକି ହସିଲେ ?

ଜିତା ଯେ ତମେ ଯାହା କରୁଛ, ଠିକ୍ କରୁନ । (ଗାଡ଼ି ଶବ୍ଦ ଶୁଭେ)

ଚନ୍ଦ୍ର ଏଇ, ସିଦ୍ଧିକ ବୋଧେ । (ସିଦ୍ଧିକ ଆସନ୍ତି)

ସିଦ୍ଧିକ୍ ଭାଉଜ ! ମେଘାକୁ ଏଇ ଓଡ଼ିଆ ମିଡିୟମ୍‌ରେ ପଢ଼ଉଛ ?

ଚନ୍ଦ୍ର କ'ଣ, ଗଂଧେଇଲା ?

ସିଦ୍ଧିକ୍ ମୁଁ ନୁହେଁ, ଭାଉଜ କହିବେ ।

ଜିତା ମୁଁ କହିକହି ଥକିଗଲିଣି ।

ସିଦ୍ଧିକ୍ ତା' ହେଲେ ନ କହିବା ଭଲ । ଛାଡ଼୍ । ଭାଉଜ କପେ କଫି ମିଳୁ ।

| | |
|---|---|
| ଚନ୍ଦ୍ର | କଫି ? |
| ଛିତା | ଚା' ହେଲେ.... |
| ସିଦ୍ଧିକ୍ | ଚଳିଯିବ । |
| ଛିତା | ଆଣୁଛି । |
| ସିଦ୍ଧିକ୍ | ତା'ପୂର୍ବରୁ ଗିଲାସେ ପାଣି । ହଁ ଭାଉଜ, ମୋ ଦେହରେ ଥଣ୍ଡା, ତେଣୁ ଫ୍ରିଜ୍‌ରୁ ନୁହେଁ, ଏମିତି.... |
| ଚନ୍ଦ୍ର | ଭୟ କରନା, ଏଠି ଫ୍ରିଜ୍ ନାହିଁ । |
| ସିଦ୍ଧିକ୍ | ବାସ୍, କ'ଣ ଆଉ ଖବର କହ । |
| ଚନ୍ଦ୍ର | ଖବରକାଗଜ ତ ହାତରେ ଧରିଛୁ । |
| ସିଦ୍ଧିକ୍ | ସେଇଥିପାଇଁ ତ ପଚାରୁଛି । |
| ଚନ୍ଦ୍ର | ମାନେ ? |
| ସିଦ୍ଧିକ୍ | ଆବେ ଏ ବୁଡ୍‌ବକ୍ ! ତୁ କାଗଜରେ ଏଇ ଆର୍ଟିକିଲ୍ ଲେଖୁଛୁ ? |
| ଚନ୍ଦ୍ର | କାହିଁକି ? |
| ସିଦ୍ଧିକ୍ | ବେ, ଏଇ ଆର୍ଟିକିଲ୍ ଲେଖି କେହି କ'ଣ ବଡ଼ ହୋଇପାରେ ? ଏହାଦ୍ୱାରା ଅନ୍ୟମାନେ ବଡ଼ରୁ ବଡ଼ ହେଉଥିବେ ଆଉ ତୁ ଛୋଟରୁ ଛୋଟ ହେଉଥିବୁ । |
| ଚନ୍ଦ୍ର | କେମିତି ? |
| ସିଦ୍ଧିକ୍ | ଦେଖ୍, ମୁଁ ତୋତେ ସହଜରେ ବୁଝେଇଦଉଛି । ଧର, ମୁଁ ଜଣେ ଲାଞ୍ଚଖିଆ ଅଫିସର । ତୁ ମୋ କଥା ଲେଖିଲୁ, ଲୋକମାନେ ଚଞ୍ଚଳ ଭାବରେ ମୋତେ ଜାଣିଲେ ଏବଂ ଭାବିଲେ, ପଇସା ଦେଲେ ଏ ଲୋକଠୁଁ କାମ ହାସଲ କରିହେବ ଆଉ ତୁ ଆର୍ଟିକିଲ୍ ଲେଖିଲୁ, ଲୋକେ ତୋତେ ବି ଜାଣିଲେ । ଭାବିଲେ, ଏଟା ସଚ୍ଚୋଟ ଲୋକ, ପଇସା ଦେଇ ଯା'ଠୁଁ କାମ କରି ହେବନି, ତେଣୁ ତୋ ପାଖ ମାଡ଼ିଲେନି । ଆଉ ଆଜିକାଲିର ଲୋକ କାମ ଚାହାନ୍ତି, କେବଳ କାମ । ସେମାନେ ନ୍ୟାୟଅନ୍ୟାୟ ବୁଝନ୍ତିନି, ସତମିଛ ଶୁଣନ୍ତିନି କି ନୀତିଦୁର୍ନୀତିର ହିସାବ ରଖନ୍ତିନି । ସେମାନେ ଖାଲି ପଇସା ଦିଅନ୍ତି, କାମ ନିଅନ୍ତି । |

ଚନ୍ଦ୍ର	କିନ୍ତୁ....

ସିଦ୍ଧିକ୍	ତୁ ଆଉ ମୋତେ ସେ କିନ୍ତୁଫିନ୍ତୁ କହନା, ତୁ ମୋ କଥା ମାନ୍ ପ୍ରାକ୍ଟିକାଲ ହଅ ।

ଜିତା	ସେକଥା ଆଜି ନୁହେଁ, ମୁଁ ପ୍ରଥମରୁ ବୁଝଉଛି ।

ସିଦ୍ଧିକ୍	ବେ ଏଇ ଆର୍ଟିକିଲ୍‌ଟା ଛାପିବା ପୂର୍ବରୁ ତୁ ଏ ଲୋକମାନଙ୍କୁ ବ୍ଲାକ୍‌ମେଲ୍ କରି ଅନ୍ତତଃ କିଛି..(କବାଟ ଠକ୍‌ଠକ୍ ହୁଏ)

ଚନ୍ଦ୍ର	କିଏ ?

ପରଶୁ	ସାର୍ ମୁଁ (ଆସେ) । ସାର୍ ନମସ୍କାର ।

ଚନ୍ଦ୍ର	ଆରେ ପର୍ଶୁ । ଆସ, କ'ଣ ହେଲା ?

ପରଶୁ	ପ୍ରିନ୍‌ସ୍‌ପାଲ ସାର୍ ପଠେଇଲେ । ସାର୍, ଆପଣଙ୍କର ଖାତାଦେଖା ଡ୍ୟୁଟି ପଡ଼ିଛି ।

ଚନ୍ଦ୍ର	ମୋର ଖାତା ଦେଖା ଡ୍ୟୁଟି ? ମୁଁ ମନା କରିଥିଲି ।

ପରଶୁ	ନାଇଁ, ସାର୍ କହିଲେ, ଆଉ ଇଂରାଜିରେ କେହି ନାହାନ୍ତି । ଆପଣ ଯିବେ ।

ସିଦ୍ଧିକ୍	ତା'ମାନେ ଇଂରାଜିରେ ଏକ୍‌ଜାମିନର : ବାସ୍, ତା'ହେଲେ ତ ହେଇଗଲା ।

ଚନ୍ଦ୍ର	କ'ଣ ହୋଇଗଲା ?

ସିଦ୍ଧିକ୍	କିଛି ପଇସା ଆସିବାର ରାସ୍ତା କ୍ଲିୟର ହୋଇଗଲା ।

ଚନ୍ଦ୍ର	ପଇସା ପୁଣି ଖାତାଦେଖାରେ କେତେ ମିଳିବ ? ଆଉ ଯାହା ମିଳନ୍ତା, ମୁଁ ତ ବେଶି ଖାତା ଦେଖିପାରିବିନି । ଯେତେ ଦେଖିବ ସେତେ ମିଳିବ ।

ସିଦ୍ଧିକ୍	ଏଇ ଦେଖନ୍ତୁ ଭାଉଜ, ୟା'ର ବଳଦିଆ ହିସାବ ଶୁଣନ୍ତୁ । ଆରେ ଇଏ ସିନା ସରକାରୀ ପଇସା । ୟା' ସାଂଗରେ ବେସରକାରୀ, ମାନେ ଦି' ନମ୍ବରି ନାହିଁନା ?

ଚନ୍ଦ୍ର	ଦି' ନମ୍ବରି ?

ସିଦ୍ଧିକ୍ ଆଉ ? ଇଂରାଜିରେ ଡିମାଣ୍ଡ ଅଛି । କେତେ ଗାର୍ଡ଼ିଏନ୍ ବେଗ ଧରି ପହଞ୍ଚିବେ - ବାସ୍, ତା'ପରେ ତୋର ହାତକାମ।

ଚନ୍ଦ୍ର ତା'ମାନେ ଦୁର୍ନୀତି ?

ସିଦ୍ଧିକ୍ ଆଜିକାଲି ଆଉ ନୀତି ଦୁର୍ନୀତିର ଡିଫରେନ୍ସ ବୋଲି କିଛି ନାହିଁ । ଖାଲି ତମେ କେତେଟା ସାହିତ୍ୟିକ କିଛି ପୁରସ୍କାର ପାଇବା ଆଶାରେ ଦୁର୍ନୀତି ଶବ୍ଦକୁ ନେଇ ଟଣାଓଟରା କରୁଛ ଓ ଟଣାଓଟରା ହଉଛ ବି ସାମ୍ବାଦିକମାନେ ମଧ୍ୟ ସେମିତି ତାଙ୍କ ଖବରକାଗଜକୁ ପପୁଲାର କରିବାପାଇଁ ସେହି ଦୁର୍ନୀତିର ଆଶ୍ରୟ ଖୋଜୁଛନ୍ତି । ନହେଲେ ଏଠି ସବୁ ନୀତି ।

ପର୍ଶୁ ହଁ ସାର୍ ! ଆମ ପୂର୍ଣ୍ଣସାର୍ ତ ସେମିତି କରନ୍ତି । ସେ ଏକ୍‌ଜାମିନର ହେବାପାଇଁ କେତେ ଧରାଧରି କରନ୍ତି ।

ଜିତା ଆଉ ତମ ସାର୍ ନହେବାପାଇଁ କେତେ ଧରାଧରି କରୁଛନ୍ତି !

ସିଦ୍ଧିକ୍ ଆବେ ଏ ଚନ୍ଦ୍ର ! ତୁ ସେ ମହାତ୍ମାଗାନ୍ଧି ଗୋପବଂଧୁଙ୍କ ଜୀବନକାହାଣୀ ସବୁ ପଢୁଛୁ କି ?

ଚନ୍ଦ୍ର କାହିଁକି ?

ସିଦ୍ଧିକ୍ ସେଗୁଡ଼ା ଜମା ପଢ଼ୁନା । ବରବାଦ୍ ହେଇଯିବୁ, ଭିକ ମାଗିବୁ । ତୁ ହର୍ଷଦ ମେହେଟା କଥା ପଢ଼୍, ଚାର୍ଲସ୍ ଶୋଭରାଜ୍ କଥା ପଢ଼୍ । ନହେଲେ ଏ ଯୋଉ ଷ୍କାମ୍‌ଯୁଗ ପହଞ୍ଚିଛି, ସେ ବିଷୟରେ କିଛି ନଲେଜ୍ କଲେକ୍ଟ କର୍, ମଣିଷ ହୋଇଯିବୁ । ... ବଂଚିଲା ଭଳିଆ ବଂଚିବୁ । ତୋର ଏ ଆଦର୍ଶବାଦିଆ ଜୀବନକୁ କେହି ପଚାରିବେନି । ଭାଉଜ, ତାକୁ ଟିକିଏ ଏ ଦୁନିଆ ବିଷୟରେ ବୁଝିବାରେ ହେଲ୍ପ କରନ୍ତୁ ।

ଜିତା ଆପଣ ଏମିତି ମଝିରେମଝିରେ ଆସି ଗୋଟେ ଗୋଟେ କ୍ଲାସ୍ ନିଅନ୍ତୁନା, ସେ ବୁଝିଯିବେ ।

ସିଦ୍ଧିକ୍ ମୁଁ ତ ଆସିବି; ହେଲେ, ଆପଣଙ୍କ ହାତରେ ଷ୍ଟିଅରିଂ ଭାଉଜ । ମୁଁ ବି ଦିନେ ଏମିତି ଥିଲି; ହେଲେ, ଖାଇବାକୁ ପାଇଲିନି । ଦରମା ଟଂକାରୁ ଚାନ୍ଦା ଦେଲି । ଶେଷରେ ମିସେସ୍‌ଙ୍କ ପ୍ରେସ୍‌କ୍ରିପ୍‌ସନ୍ ହାତରେ ଧରି ମାର୍କେଟ୍ ବାହାରିଲି । ତା'ପରେ, ବାସ୍ । (ଉଠିଲେ)

| | |
|---|---|
| ଚନ୍ଦ୍ର | କ'ଣ ଉଠିଲୁ ! |
| ସିଦ୍ଧିକ୍ | ହଁ, ଥାନା ସେମିତି ଫାଙ୍କା ପଡ଼ିଛି । ମୁଁ ଆସେ । ହେଲେ, ମୋ କଥା ମନେରଖିବୁ । |
| ଜିତା | ଆପଣ ଆସିବେ । |
| ଚନ୍ଦ୍ର | ତୁ ତ ଜମା ଆସୁନୁ । ସେଇ ଯେ ଯାଇଥିଲୁ, ଛ'ମାସ ପରେ ଦେଖା । |
| ସିଦ୍ଧିକ୍ | କ'ଣ କରିବି, ଭାଇ ! ମୋ ଚାକିରି ସେଇଆ । ହଉ, ଆସୁଛି । |
| ଜିତା | ଭାଉଜ, କେବେ ଆସିବେ ? |
| ସିଦ୍ଧିକ୍ | ଆପଣ ଯେବେ ଯିବେ । ହେଲା, ମୁଁ ଆସିଲି । (ଯାଏ) |
| ଚନ୍ଦ୍ର | ଏଟା ନିହାତି କରପଟେଡ୍ ହୋଇଗଲା । |
| ଜିତା | ସେଇଥିପଇଁ ସେ ଏ ଦୁନିଆ ସହିତ ତାଳ ମିଳାଇ ଚଳିପାରୁଛନ୍ତି । |
| ଚନ୍ଦ୍ର | ଆମ ଚଳିବାର ତାଳ କ'ଣ ମିଳୁନି ? |
| ଜିତା | ହଁ, ତାଳ ! |
| ଚନ୍ଦ୍ର | ଆରେ ପରଶୁ । ବସ, ମୁଁ ଆସୁଛି । (ଭିତରକୁ ଯାଏ) |
| ଜିତା | ବସ ପରଶୁ । |
| ପର୍ଶୁ | ମାଡାମ୍, ଆପଣ ଟିକିଏ ସାର୍‌ଙ୍କୁ କହନ୍ତୁନା । |
| ଜିତା | କ'ଣ ପାଇଁ ? ଏଇ ଖାତା ଦେଖା ପାଇଁ ତ ! |
| ପର୍ଶୁ | ହଁ, ସାର୍ ମନା କଲେ ସେ ଓମେନ୍‌ସ କଲେଜ ଇଂରାଜୀ ମାଡାମଙ୍କର ପଡ଼ିଯିବ । ସେ ମାଡାମଙ୍କୁ ତ ଜମା ସମ୍ଭାଳିହବନି । ଆଉ ତାଙ୍କ ପିଅନର ଲାଂଜରେ ହାତ ମାରିହବନି । |
| ଜିତା | ସତରେ କ'ଣ ଖାତାଦେଖାରେ ଟଂକା ମିଳେ ? |
| ପର୍ଶୁ | ଆପଣ ବିଶ୍ୱାସ କରିପାରିବେନି ମାଡାମ୍, ପୂର୍ଣ୍ଣସାର୍ ପରା ପ୍ରତିଦିନ ଅତି କମ୍‌ରେ ପାଞ୍ଚହଜାର ନେଇ ଘରକୁ ଫେରନ୍ତି । |
| ଜିତା | ପାଞ୍ଚ ହଜାର ? |
| ପର୍ଶୁ | ପାଞ୍ଚ ହଜାର କ'ଣ ଭାରି ବେଶି ହୋଇଗଲା ? ଏଇ ଦେଖୁନାହାନ୍ତି, ବାଟରେ ଆସୁ ଆସୁ ଚିହ୍ନା ଲୋକଟେ ଭେଟ ହୋଇଗଲା । |

|  |  |
|---|---|
|  | ସେ ଯେମିତି ଜାଣିଲା, ମୁଁ ଇଂରାଜି ସାର୍‌ଙ୍କ ପାଖକୁ ଯାଉଛି, ମୋ ହାତରେ ଦି'ଟା ରୁଲ୍‌ନମ୍ବର ଦେଇ ହଜାରେ ଟଂକା ଧରାଇଦେଲା, ଖାଲି ପାସ୍‌ନମ୍ବର ଦେବାପାଇଁ । |
| ଛିତା | ହଜାରେ ଟଂକା ମିଳିଯିବ । |
| ପର୍ଶୁ | ଏଇ ନିଅନ୍ତୁ, ରଖନ୍ତୁ । |
| ଛିତା | ତା'ମାନେ ଗୋଟେ ପିଲାକୁ ପାଞ୍ଚଶହ । |
| ପର୍ଶୁ | ସେମିତି ପିଲା ମିଳିଲେ ପାଞ୍ଚ ହଜାର ବି ମିଳିଯିବ । ଆପଣ ଯଦି ସାରଙ୍କୁ ରାଜି କରାଇଦେବନା, ମୁଁ ସବୁ କରିଦେବି । (ଚନ୍ଦ୍ର ଆସନ୍ତି) |
| ଚନ୍ଦ୍ର | କ'ଣ ହେଲା ? |
| ଛିତା | ନାଇଁ, ପର୍ଶୁ କହୁଛନ୍ତି, ତାଙ୍କର ଦି'ଟା ଭାଣିଜୀ ପରୀକ୍ଷା ଦେଇଛନ୍ତି- ତାଙ୍କ ଖାତା ଏଇ ସେଣ୍ଟରରେ ପଡ଼ିଛି । |
| ଚନ୍ଦ୍ର | ଏବଂ ଇଂରାଜିଟା ଟିକିଏ ଖରାପ ହେଇଛି, ଏଇଆ ତ ! |
| ପର୍ଶୁ | ହଁ ସାର୍ । |
| ଚନ୍ଦ୍ର | ଆଉ କେହି ହେଇଥିଲେ କିଛି ଟଂକା ମିଳିଥାଆନ୍ତା । ପର୍ଶୁ ପାଖରୁ କ'ଣ ଟଂକା ନେଇହବ ? |
| ଛିତା | ନାଇଁ, ସେମାନେ ତା'ର କ'ଣ ନିଜ ଭାଣିଜୀ ? |
| ପର୍ଶୁ | ନାଇଁ, ଏମିତି ଲେଖାଯୋଖାରେ... |
| ଚନ୍ଦ୍ର | ତା' ହେଲେ କିଛି ଟଂକା ମିଳିବ । |
| ଛିତା | ହଁ । |
| ଚନ୍ଦ୍ର | କେତେ ? |
| ପର୍ଶୁ | ସାର୍ । |
| ଚନ୍ଦ୍ର | ହଁ, ଚୋରିକରିବ । ପେଟ ଯଦି ନପୂରିବ, ତେବେ ଚୋରି କରିବ, କାହିଁକି ? |
| ଛିତା | ନାଇଁ, ସେ କହୁଛନ୍ତି କିଛି ଦେବେ । |
| ଚନ୍ଦ୍ର | କିଛି ମାନେ କେତେ ? |

**ଜିତା** ସେ କହୁଛନ୍ତି ଦି'ଟା ଖାତାକୁ ହଜାରେ ।

**ଚନ୍ଦ୍ର** (ହସି) ତା' ହେଲେ ମାର୍କେଟିଂ ସରିଯାଇଛି ? ପର୍ଶୁ ! ଏଇ ନିଅ ଏ ଚିଠି ଏବଂ ଏପ୍ଲିକେସନ୍, ପ୍ରିନ୍‌ସ୍‌ପାଲ୍ ସାର୍‌ଙ୍କୁ ଦେଇଦେବ ଏବଂ କହିବ, ସାର୍‌ଙ୍କ ଦେହ ଭଲ ନାହିଁ, ସାର୍‌ଙ୍କ ଆପଏଣ୍ଟମେଣ୍ଟ୍ କ୍ୟାନ୍‌ସେଲ୍ କରିଦେବେ ।

**ପର୍ଶୁ** ସାର୍ !

**ଜିତା** କାହିଁକି, ତମ ଦେହ ତ ଭଲ ଅଛି । ମିଛ କାହିଁକି କହିବ ? ସତ କହୁନ ?

**ଚନ୍ଦ୍ର** ସେଗୁଡ଼ା ଅଫିସିଆଲ ଟର୍ମ୍ ତମେ ଜାଣନା । ପର୍ଶୁ, ତମେ ଏବେ ଯାଇପାର ।

**ପର୍ଶୁ** ସାର୍ ନମସ୍କାର (ଯାଏ)

**ଜିତା** ମୋତେ ଏମିତି ସେ ପିଅନଟା ସାମ୍‌ନାରେ ଅପମାନ ଦେବାକୁ ଭଲ ଲାଗିଲା ?

**ଚନ୍ଦ୍ର** ସେ ପିଅନଟା ହାତରେ ମୋତେ ବିକିଦେବାକୁ ତମକୁ କେମିତି ଭଲ ଲାଗୁଥିଲା ?

**ଜିତା** ତମର ଏ ଫମ୍ପା ଆଦର୍ଶବାଦୀ ମଣିଷପଣିଆଟାକୁ କେହି ହେଲେ କିଣିବେନି ।

**ଚନ୍ଦ୍ର** କିଣିବେନି ନୁହଁ, କୁହ କିଣିପାରିବେନି ।

**ଜିତା** ଓଃ, ଖୁବ୍ ବାହାଦୂରି କଥାଟା କହି ଦଉଛ ! କିଏ ପଚାରେ ତମର ଏ ଆଦର୍ଶବାଦୀ ସଚ୍ଚୋଟପଣିଆକୁ । ଏଇ ଟିକକ ଆଗରୁ ତମ ବଂଧୁ ଆସିଥିଲେ, କ'ଣ କହିଗଲେ ? କି ଉପହାସ ! କି ତାଚ୍ଛଲ୍ୟ ! ତମେ ଏସବୁ ସହୁଛ କେମିତି ? ସାରା ସମାଜ ଯେତେବେଳେ ଦୁର୍ନୀତିଟାକୁ ନୀତି ଭାବରେ, ଆଦର୍ଶ ଭାବରେ, ଗ୍ରହଣକରି ନେଇ ସାରିଲାଣି ତମେ ଏକୁଟିଆ ତାକୁ ଦୁର୍ନୀତି ବୋଲି ଦୂରେଇଦେଲେ ପାଇବ କ'ଣ ? ତମ କଥା ଶୁଣିବ କିଏ ? ତମରି କଲେଜକୁ ସମସ୍ତେ ଗାଡ଼ିରେ ଯାଉଥିବା ବେଳେ ତମେ ଏକୁଟିଆ ଭଂଗା ସାଇକେଲ ଖଣ୍ଡେ ପେଲିପେଲି ଯାଉଛ । କିଏ ବୁଝୁଛି ତମ

ଆଦର୍ଶବାଦକୁ ? ତମେ ତମ ଆଦର୍ଶକୁ ନେଇ ଚଳିପାର । ମୋତେ ବାହାହୋଇ ମେଘାକୁ ଜନ୍ମଦେଇ ଆମକୁ ଜାଳିଦେବାର କି ଅଧିକାର ଅଛି ତମର ?

ଚନ୍ଦ୍ର ତମକୁ ବାହାହେଇ, ମେଘାକୁ ଜନ୍ମଦେଇ ମୁଁ କ'ଣ ଅପରାଧ କରିଛି ?

ଜିତା ଅପରାଧ ନୁହେଁ ତ ଆଉ କ'ଣ ? ଆମ ପାଇଁ ତମେ କରିଛ କ'ଣ ? ଏଇ କାଠଇଲା କିଚେନ୍‌ର ନିଆଁ ଧୂଆଁ ଭିତରେ ଯାହା ସନ୍ତୁଳି ସନ୍ତୁଳି ମରୁଛି ମୁଁ । ମୋ ସାଂଗ, ମୋ ଭଉଣୀ, ସେମାନେ କେମିତି ଅଛନ୍ତି ? ତମ ଭଉଣୀ କଥା ଦେଖ, ସେ କେମିତି ଅଛନ୍ତି ଆଉ ସେମାନଙ୍କୁ ଦେଖିଆସି ଥରେ ମୋତେ ଦେଖ, ମୁଁ କେମିତି ଅଛି ? ମୋ ଭାଗ୍ୟ ଯାହା (ଚାଲିଯାଏ)

ଚନ୍ଦ୍ର ଜିତା (ଯାଉଥିଲେ ଅଟକିଗଲେ । କ'ଣ ଭାବିଲେ, ଭାବୁ ଭାବୁ ଚେୟାରରେ ବସିଲେ । ଭାବନାର ଖିଅ ସବୁ ଖୋଲିଯାଏ । ହଠାତ୍ ଡାକନ୍ତି 'ପର୍ଶୁ ପର୍ଶୁ' ପର୍ଶୁ ଆସେ) ତୁମେ ଏପ୍ଲିକେସନ୍ ଦେଇଦେଲ ?

ପର୍ଶୁ ନାଇଁ ସାର୍, ସାର୍ ଆସିନାହାନ୍ତି ତ ।

ଚନ୍ଦ୍ର ଦେଇନା ତ ! ଦେଇ (ନେଇ ଚିରିଦେଲେ)

ପର୍ଶୁ ସାର୍ ।

ଚନ୍ଦ୍ର ମୁଁ ଖାତା ଦେଖିବି ।

ପର୍ଶୁ ତ'ହେଲେ ସାର୍

ଚନ୍ଦ୍ର ତମର ପରା କିଏ କ୍ୟାଣ୍ଡିଡେଟ୍ ଅଛି ?

ପର୍ଶୁ ହଁ ସାର୍, ଏଇ ରୋଲ୍‌ନମ୍ବର ।

ଚନ୍ଦ୍ର ଆ ସହିତ ଟଂକା ବି ? କେତେ ଅଛି ?

ପର୍ଶୁ ହଜାରେ ସାର୍ ।

ଚନ୍ଦ୍ର ବାସ୍ ! ଯିଏ ଯାହା ଦଉଛି, ଯେତେ ପାରୁଛ, ନେଇଆସ । ହଁ ମୋର ପର୍ ଖାତା ୫ଶହ ଆଉ ଯାହା ଅଧିକ ପାଇବ, ତମର । ହେଲା..

| | |
|---|---|
| ପର୍ଶୁ | ସାର୍, ଆପଣ ଆରମ୍ଭ କରନ୍ତୁ, ଦେଖିବେ ଗୋଟେ ସିଜିନ୍‌ରେ ଲାଲ ପଡ଼ିଯିବେ । |
| ଚନ୍ଦ୍ର | ଠିକ୍ ଅଛି । ଯାଅ, ଆଉ କାହାକୁ କହିବନି । |
| ପର୍ଶୁ | ନାଇଁ ସାର୍ । ଆଉ ଅଛି, ରଖିଥାନ୍ତୁ । |
| ଚନ୍ଦ୍ର | ରୋଲ୍‌ନମ୍ବର ? |
| ପର୍ଶୁ | ଆଡ୍‌ଭାନ୍‌ସ ସାର୍, ରୋଲ୍ ନମ୍ବର ଆଣୁଛି । |
| ଚନ୍ଦ୍ର | ହଉ ଯାଅ । (ପର୍ଶୁ ଯାଏ) |
| | (ଟଂକା ଗଣିଲେ, କ'ଣ ଭାବି ଭିତରକୁ ଗଲେ ଓ 'ଜିତା ଜିତା' ଡାକିଡାକି) |
| | (ଚନ୍ଦ୍ର ଯିବା ବେଳକୁ ଜିତା ବାହାରିଆସୁଥାଏ) |
| ଚନ୍ଦ୍ର | ଜିତା ! |
| ଜିତା | କ'ଣ କିଛି ଭାବିଲ କି ? ମୁଁ ଟିକିଏ ଏକ୍ସାଇଟେଡ ହେଇଗଲି, ବାଲାନ୍ସ ହରେଇଦେଲି । ଏଣୁତେଣୁ କହିଦେଲି, ତମ ମନରେ... |
| ଚନ୍ଦ୍ର | ନାଇଁ ଜିତା । ତମର ଭୁଲ୍ ନୁହେଁ । ଏ ସୋସିଆଲ ସିଷ୍ଟମ୍‌ର କିଛି.. ଛାଡ଼ । ମୁଁ ମଧ୍ୟ କିଛି ଅବହେଳା କରିଛି, ତମ ପ୍ରତି ଅନ୍ୟାୟ କରିଛି । ତମ ଭବିଷ୍ୟତକୁ ନଷ୍ଟଭ୍ରଷ୍ଟ କରିଦେଇଛି । |
| ଜିତା | ନା ନା, ସେମିତି କୁହନି । ମୁଁ ପରିସ୍ଥିତିରେ ପଡ଼ି.. |
| ଚନ୍ଦ୍ର | ଏଇ ନିଅ । |
| ଜିତା | ଟଙ୍କା ? |
| ଚନ୍ଦ୍ର | ହଁ ପନ୍ଦର । |
| ଜିତା | ପନ୍ଦର କ'ଣ ? ଦରମା ମିଳିଲା ? |
| ଚନ୍ଦ୍ର | ମୋ ଦରମା କ'ଣ ପନ୍ଦର ? |
| ଜିତା | ତେବେ ? |
| ଚନ୍ଦ୍ର | ମୁଁ ଖାତା ଦେଖିବାକୁ ଯିବି । |

ଛିତା		ସତରେ ?

ଚନ୍ଦ୍ର		ହଁ, ମୋତେ ଏ ଦୁନିଆର ରୀତିନୀତି ସହ ସାଲିସ୍ କରିବାକୁ ପଡ଼ିବ । ତା'ଛଡ଼ା, ଏ ଆଦର୍ଶବାଦ ସହ ବାସ୍ତବିକତାର ସବୁ ସଂପର୍କ ତୁଟି ଯାଇଛି । ଏ ସଚ୍ଚୋଟପଣିଆର ମୂଲ୍ୟ କିଛି ନାହିଁ ।

ଛିତା		ମୁଁ ତ ସେହିଦିନୁ ସେହିକଥା କହିଆସୁଛି । ସେତେଦିନୁ ମୋ କଥା ଶୁଣିଥିଲେ ଆମେ ଏବେ କେତେ ଉପରକୁ ଉଠିପାରିଥାନ୍ତେ ?

ଚନ୍ଦ୍ର		ଛାଡ଼, ଯାହା ଯାଇଛି ଯାଇଛି । ଏବେ କିନ୍ତୁ ଉପରକୁ ଉଠିବାର ନିଶୁଣିକୁ ଆମେ ଛୁଇଁସାରିଲୁଣି । ଆସ, ଉପରକୁ ଉଠିବା । ଧର ଏ ଟଂକା (ଦେଲେ)

ଛିତା		ଏ ଟଂକାରେ କ'ଣ କରିବା ?

ଚନ୍ଦ୍ର		ଏ ଟଂକା ତମର, ଯାହା ଖୁସି, କର ।

ଛିତା		ଆଉ ପାଞ୍ଚଶ'ଟଂକା ହୁଅନ୍ତା କି, ଗୋଟେ ଗ୍ରାଇଣ୍ଡର୍ ହୋଇଯାଆନ୍ତା ।

ଚନ୍ଦ୍ର		ହବ, ଅପେକ୍ଷା କର, ପାଞ୍ଚ କାହିଁକି, ପାଞ୍ଚହଜାର ।

ଛିତା		ପାଞ୍ଚହଜାର ? ପାଞ୍ଚହଜାର ମିଳିଗଲେନା....

ଚନ୍ଦ୍ର		କ'ଣ କରନ୍ତ ?

ଛିତା		ଗୋଟେ ଟି.ଭି. ଆଣନ୍ତେ ।

ଚନ୍ଦ୍ର		ପାଞ୍ଚ ହଜାରରେ ଟି.ଭି., କ'ଣ ବ୍ଲାକ୍ ଆଣ୍ଡ୍ ହ୍ୱାଇଟ୍ ?

ଛିତା		ହଁ, ବ୍ଲାକ୍ ଆଣ୍ଡ୍ ହ୍ୱାଇଟ୍ ହେଲେ ବି ଚଳିଯିବ ।

ଚନ୍ଦ୍ର		ନାଇଁ, ଏଣିକି କଲର ଟି.ଭି.ର ସ୍ୱପ୍ନ ଦେଖ ।

ଛିତା		କଲର ଟି.ଭି ? (ଠକ୍‌ଠକ୍ କରି ପଶିଆସେ ସିଦ୍ଧିକ୍)

ସିଦ୍ଧିକ୍		ଚନ୍ଦ୍ର ଚନ୍ଦ୍ର ! ଆରେ ଭାଉଜ ! ମୁଁ ଅସମୟରେ ଆସିନି ତ !

ଛିତା		ନାଇଁ ମ ! ଆସନ୍ତୁ ।

ଚନ୍ଦ୍ର		କ'ଣ ସିଦ୍ଧିକ୍ !

ସିଦ୍ଧିକ୍		ଶୁଣ୍, ମୁଁ ଏବେ ଖୁବ୍ ବ୍ୟସ୍ତ ଅଛି । ତୋ ପାଖକୁ ଗୋଟେ ଜରୁରୀ କାମରେ ଆସିଛି । ମୋ କଥା ରଖିବାକୁ ପଡ଼ିବ ।

| | |
|---|---|
| ଚନ୍ଦ୍ର | ତୋ କାମ, ସେଥିରେ ପୁଣି ଏତେ ଫର୍ମାଲିଟି । କ'ଣ କହ । |
| ଲିତା | କହୁନାହାନ୍ତି । |
| ସିଦ୍ଧିକ୍ | ଆମ ଡି.ଆଇ.ଜି.ଙ୍କ ନାତୁଣୀର ଇଂରାଜି ପେପରଟା ତୋ ହାତରେ, ପିଲାଟା ଭଲ ଯେ ୟୁନିଭରସିଟିରେ ଦଶମ ଭିତରେ ଆସିବାକୁ ଚାହୁଁଛି । ତେଣୁ ଏବଭ୍ ଏଇଟି ପାରସେଣ୍ଟ୍ ମାର୍କ୍ ଦରକାର । |
| ଚନ୍ଦ୍ର | ଇଂରାଜିରେ ଏଇଟିପାରସେଣ୍ଟ ? |
| ସିଦ୍ଧିକ୍ | ମୁଫତ୍‌ରେ ନୁହେଁ, ଏଇ ରଖିଥା ଦଶହଜାର । |
| ଚନ୍ଦ୍ର | ଦଶହଜାର ! |
| ସିଦ୍ଧିକ୍ | କ'ଣ କମିଗଲା ? |
| ଲିତା | ନାଇଁ ମ । |
| ସିଦ୍ଧିକ୍ | ହଉ, ଆରମ୍ଭଟା ଅଙ୍କରୁ ହଉ । |
| ଚନ୍ଦ୍ର | କିନ୍ତୁ... ହଉ ହେଲା, ଖାସ୍ ତୋରି ପାଇଁ ରଖିନେଲି । |
| ସିଦ୍ଧିକ୍ | ଆରେ ସତେ ତ । ଏଇ (ଦେଲେ)ଭାଉଜ, ମୋ ଦାୟିତ୍ୱ ଲାଗିଲା । |
| ଚନ୍ଦ୍ର | ରୋଲ୍ ନମ୍ବର ? |
| ସିଦ୍ଧିକ୍ | ଆରେ ସତେ ତ । ଏଇ (ଦେଲେ)ଭାଉଜ, ମୋ ଦାୟିତ୍ୱ ଲାଗିଲା । |
| ଚନ୍ଦ୍ର | କ'ଣ, ମୋ ଉପରେ ବିଶ୍ୱାସ ଆସୁନି ? |
| ସିଦ୍ଧିକ୍ | ନାଇଁ ନାଇଁ, ଗାଡ଼ିର ଚକ ଅପେକ୍ଷା ତା'ର ଷ୍ଟିଅରିଂ ଉପରେ ଅଧିକ ଭରସା କରାଯାଇଥାଏ । (ଯାଏ) |
| ଚନ୍ଦ୍ର | ତା'ହେଲେ (ଟଂକା ଦେଲେ) |
| ଲିତା | ଦଶ ଏକ୍ ଏଗାର ହୋଇଗଲା, ମୁଁ କ'ଣ କହୁଥିଲିକି, ଖାତା ଦେଖା ସରିଯାଉ, ଯାହା ମିଳିବ ଫଣ୍ଡ୍‌ସ ଦେଖି ମାର୍କେଟିଂ କରିବା । |
| ଚନ୍ଦ୍ର | ତମ ଖୁସି (ହାଇମାରି ବସିଲେ) |
| ଲିତା | ତମେ ବସ, ମୁଁ କଫି କପେ କରିଆଣେ । |
| ଚନ୍ଦ୍ର | କଫି, କୁଇକ୍ (ମନେମନେ ହସିଉଠୁଥିଲେ । କବାଟ ବାଡ଼େଇବାର |

ଶବ୍ଦ । ସିଦ୍ଧିକ୍ ବାହାରୁ ବାରମ୍ବାର 'ଚନ୍ଦ୍ର ଚନ୍ଦ୍ର' ଡାକେ ଚନ୍ଦ୍ର କିନ୍ତୁ ନିରବ, ପଶିଆସେ ସିଦ୍ଧିକ୍)

ସିଦ୍ଧିକ୍ ଚନ୍ଦ୍ର !

ଚନ୍ଦ୍ର ଏଁ ! ପୁଲିସ୍ ! ନା ନା ମିଛ କଥା । ମୁଁ ନୁହେଁ, ମୁଁ ନୁହେଁ ।

ସିଦ୍ଧିକ୍ କ'ଣବେ ଏମିତି କ'ଣ ଦିନବେଳଟାରେ ବିଳିବିଳଉଛୁ ! (ହଲେଇ ଦିଏ)

ଚନ୍ଦ୍ର ଏଁ ସରି, ଆ ବସ୍ ।

ସିଦ୍ଧିକ୍ ନାଇଁ, ମୁଁ ବସିବାକୁ ଆସିନି, ଦେଖ୍, ମୋ ସାଂଗରେ କିଏ ଆସିଛନ୍ତି ।

ଚନ୍ଦ୍ର କିଏ ? (ଆସନ୍ତି ଗିରିଜା ପ୍ରସାଦ)

ସିଦ୍ଧିକ୍ ଇଏ ହେଉଛନ୍ତି ବିଶିଷ୍ଟ ସମାଜସେବୀ ଶ୍ରୀଯୁକ୍ତ ଗିରିଜା ପ୍ରସାଦ ମହାନ୍ତି ।

ଚନ୍ଦ୍ର ଆଜ୍ଞା ନମସ୍କାର ।

ସିଦ୍ଧିକ୍ : ତାଙ୍କୁ ସାହାଯ୍ୟ କରିବାପାଇଁ ତୋ ଭଳି ଜଣେ ମହାତ୍ମାଙ୍କର ଜରୁରତ ଅଛି । ତେଣୁ ତାଙ୍କୁ ତୋ ସହିତ ଇଣ୍ଟ୍ରୋଡିଉସ୍ ପରେ ମୋ କାମ ଅନ୍ତତଃ ଫିନିସ୍ । ଏଣିକି ତୁ ଆଉ ମହାନ୍ତିବାବୁ ଏକାଠି ଥାଇ ସମାଜ ସେବା କରନ୍ତୁ, ମୁଁ ଅପରାଧୀଙ୍କ ସେବାପାଇଁ ଚାଲିଲି ।

ଚନ୍ଦ୍ର ଯିବୁ ତ, ରହ ।

ସିଦ୍ଧିକ୍ ନାଇଁ ଭାଇ, ମୋତେ ଆଦୌ ସମୟ ନାହିଁ । ପ୍ଲିଜ୍, ମୁଁ ଆସୁଛି ! ମୁଁ ରହିଲି ମହାନ୍ତିବାବୁ । ଚନ୍ଦ୍ର ! ମହାନ୍ତିବାବୁଙ୍କ କଥା ବୁଝିଦବୁ ।

ଚନ୍ଦ୍ର ଆଜ୍ଞା ଆସନ୍ତୁ । ବସନ୍ତୁ । କ'ଣ କହନ୍ତୁ ।

ଗିରିଜା କଥା କ'ଣକି ଆଜ୍ଞା ! ଆଜିକାଲି ଯୋଉ ସମୟ, ଏ ସମୟ ସହିତ ଠିକ୍ ଭାବରେ ତାଳ ଦେଇ ନ ପାରିଲେ ଉପରକୁ ଉଠିବା ତ ଦୂରର କଥା, ତଳେ ରହିବା ବି ମହାମୁସ୍କିଲ୍ ହୋଇଗଲାଣି । ଏଇ ସେଦିନ ଯାଉ ଯାଉ ଏଡୁକେସନ୍ ମିନିଷ୍ଟରଙ୍କର ଚେମ୍ବର ଭିତରକୁ ପଶିଗଲି । କଥା ପଡ଼ିଥିଲା ଏଇ ଆଜିକାଲିକା ଖାତାଦେଖା କଥା । ଅଧ୍ୟାପକମାନେ କାଳେ ଟଂକାପଇସା ନେଇ ଖାତାରେ ନମ୍ବର ବଢ଼େଇ ଦେଉଛନ୍ତି । ଛି ଛି, କେଡ଼େ ନିନ୍ଦାର କଥା । କିନ୍ତୁ

ଅଧ୍ୟାପକଙ୍କୁ ଯାଅ ପଚାରିବ, ସେମାନେ କହିବେ, ନେତାମାନେ ହାୱାଲା ଗୱାଲା ସ୍କାମ ଭିତରେ ପଶି ଦିଗହରା ହୋଇଗଲେଣି-ଆମଠୁ ଡୋନେସନ୍ ନେଇ ରାଜନୀତି କରୁଛନ୍ତି । ଆମେ ନହେଲେ ବର୍ଷକୁ ଥରେ ଟିକେଅଧେ ଦୁର୍ନୀତି କରିପକେଇଲେ କ'ଣଟା ଏମିତି ମହାଭାରତ ଅଶୁଦ୍ଧ ହୋଇଗଲା !

ଚନ୍ଦ୍ର — ତଥାପି ଶିକ୍ଷକ, ଅଧ୍ୟାପକ, ଏମାନେ ସମାଜର ଜଣେ ଜଣେ ଆଦର୍ଶ ବ୍ୟକ୍ତିତ୍ୱର ଅଧିକାରୀ । ସେମାନଙ୍କର ଏ ଯୁକ୍ତି ନିହାତି ଅଯୌକ୍ତିକ ।

ଗିରିଜା — ହଁ, ହେଲାନା, ତମଭଳିଆ ଜଣେ ଯୁବଅଧ୍ୟାପକଙ୍କଠୁ ଠିକ୍ ଏହିଭଳିଆ ମନ୍ତବ୍ୟ ଆଶାକରାଯାଏ ।

ଚନ୍ଦ୍ର — ଛାଡ଼ନ୍ତୁ, ଏବେ କହନ୍ତୁ ତ, ଆପଣଙ୍କ କାମଟା କ'ଣ... ?

ଗିରିଜା — ନାଇଁ ନାଇଁ, ବ୍ୟସ୍ତ ହବାର ନାଇଁ । ମୁଁ ଏମିତି ରାସ୍ତାରେ ଯାଉଥିଲି, ସିଦ୍ଧିକ ବାବୁଙ୍କ ସଂଗେ ଭେଟ ହେଲା । ସେଇଠୁ ଗପ କରୁ କରୁ ଯାଉଥିଲୁ ଯେ ପର୍ଶୁକୁ ଦେଖିଲି । ଆଗରୁ ଅବଶ୍ୟ ତା' ସହିତ ଚିହ୍ନାଥିଲା । ପଚାରିଦେଲି, କିରେ ପର୍ଶୁ ତୁ ସକାଳୁ ଏମିତି କୁଆଡ଼େ ଧାଇଁଛୁ ? ସେ ଅବଶ୍ୟ ସବୁକଥା ମୋତେ କହିଲା । ପ୍ରଥମେ କହୁ ନଥିଲା । ମୁଁ ଏଣୁତେଣୁ ଗୁଡ଼େଇତୁଡ଼େଇ ପଚାରିବାରୁ କହିଦେଲା । ମୁଁ ଶୁଣିଲି, ହାୟ ହାୟ, ଏଇ ସାମାନ୍ୟ କଥା ପାଇଁ ଜଣେ ଏତେବଡ଼ ସଚ୍ଚୋଟ ନିଷ୍ଠାପର ଅଧ୍ୟାପକ ଖାତାଦେଖାରୁ ବଂଚିତ ହେବେ ?

ଚନ୍ଦ୍ର — ଆପଣ କ'ଣ ସେହି ଖାତାଦେଖା ପାଇଁ ଏପ୍ରୋଚ୍ କରିବାକୁ ଆସିଛନ୍ତି ?

ଗିରିଜା — ହଁ, କେବଳ ସେତିକି ପାଇଁ ମୁଁ ଆସିବାକୁ ବାଧ୍ୟ ହେଲି ।

ଚନ୍ଦ୍ର — କ୍ଷମା କରନ୍ତୁ ।

ଗିରିଜା — ଆହା ନାୟକବାବୁ । ଆପଣଙ୍କ ଭଳି ଅଧ୍ୟାପକ ଯଦି ଖାତା ନ ଦେଖିବେ, ଏ ଛାତ୍ରସମାଜ କାହାର ବିଚାରଧାରା ଉପରେ ତିଷ୍ଠିରହିବ । କାହାଠାରୁ ଆଉ ନ୍ୟାୟ ଆଶାକରିବ ?

ଚନ୍ଦ୍ର — ନାଇଁ, ସେକଥା ନୁହେଁ, ଖାତା ଦେଖିବାରେ ମୋର ଅବଶ୍ୟ ଆପତ୍ତି ନଥିଲା, କିନ୍ତୁ ଅଯଥା ଏପ୍ରୋଚ୍, ଏମିତିକି....

ଗିରିଜା ନାଇଁ ନାଇଁ, ଜମା ନୁହେଁ, ଯିଏ ଯାହା ଲେଖିଥିବ, ସିଏ ତାହା ପାଇବ, ତା'ବୋଲି ୫ଲେଖି ୫୦ ମାଗିବ, ଇଏ କ'ଣ ସମ୍ଭବ ?

ଚନ୍ଦ୍ର ସେହି ପର୍ଣ୍ଣୁ ପରା ...

ଗିରିଜା ମୁଁ ସବୁ ଶୁଣିଛି, ଦୁଇଟା ରୋଲ୍‌ନମ୍ବର ଆଉ ହଜାରେ ଟଂକା ଧରି ଆସିଥିଲା । ମୁଁ ତାକୁ ଗାଳିଦେଲି, କିଓ ଏତେ ବଡ଼ ଜଣେ ଅଧ୍ୟାପକ, ତାଙ୍କୁ ତୁ ଏଇ ହଜାରେ ଟଂକାରେ କିଣିନବୁ ?

ଚନ୍ଦ୍ର ମୋର ଯୁକ୍ତି ମଧ ଠିକ୍ ସେଇଆ ।

ଗିରିଜା ଉଚିତ୍ ମଧ । ଛାଡ଼ନ୍ତୁ ମୋ ଆସିବାର କାରଣ ହେଲା... (ପର୍ଣ୍ଣୁ ଆସେ କଲିଂବେଲ୍ ଧରି)କିରେ ପର୍ଣ୍ଣୁ ! ନେଇଆସିଲୁ ?

ପର୍ଣ୍ଣୁ ହଁ, ଶହେ ପଇଁତିରିଶି ପଡ଼ିଲା ।

ଗିରିଜା ଓହୋ, ତୋତେ କ'ଣ ଟଂକା କଥା କିଏ କହୁଛି ?

ପର୍ଣ୍ଣୁ ଆଉ ଏତିକି ବଳିଲା ।

ଗିରିଜା ତୁ ରଖିଦେ' । ବେଶ୍ ଏବେ ଏଇଟା ଏ ଘରେ ଲଗେଇଦେ ।

ଚନ୍ଦ୍ର କ'ଣ ?

ପର୍ଣ୍ଣୁ କଲିଂ ବେଲ୍ ।

ଚନ୍ଦ୍ର କଲିଂ ବେଲ୍ ?

ଗିରିଜା ନା ହେ । ଆମେ ଆସି କବାଟ ପାଖରେ କିଛି ସମୟ ଅପେକ୍ଷା କଲୁ । ଭିତରକୁ ଆସିବାକୁ ବାଟ ଖୋଜିଲୁ । ଦୁଆରମୁହଁରେ ହାତ ବୁଲେଇଲି ଯେ କଲିଂବେଲର ସୁଇଚ୍‌ଟା ମିଳିଲାନି । ଭାବିଲି, ଏତେବଡ଼ ଲୋକର ଘର, ଅଥଚ.... କଲିଂବେଲଟେ ନାହିଁ... ସେଇଲାଗି ।

ଚନ୍ଦ୍ର ନାଇଁନାଇଁ, ଆପଣ କାହିଁକି...

ଗିରିଜା ନାଇଁ, ନାୟକ ବାବୁ ! ସମାଜର ସେବା କରି ମୁଣ୍ଡବାଳ ଧଳା ହୋଇଗଲାଣି । କେଉଁ ବ୍ୟକ୍ତିର କି ସେବା ଆବଶ୍ୟକ, ତାହା ମୋତେ ବେଶ୍ ଭଲଭାବେ ଜଣା । ତେଣୁ ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । ଆପଣଙ୍କ ଭଳି ସଚ୍ଚୋଟ ଲୋକର ସେବାରେ ଏଇ

ମାତ୍ର ଦେଢ଼ଶହ ଟଂକା ଖର୍ଚ୍ଚ କଲି, କ'ଣ ଗୋଟେ ଭାରି ବଡ଼ କାମଟେ କରିପକେଇଲି । ଦେ ପର୍ଣ୍ଣୁ, ଗୋଟେ ଇଲେକ୍ଟ୍ରିସିଆନ୍ ଡାକିଆଣି ବେଲ୍‌ଟା ଝୁଲେଇଦେ ।

ଚନ୍ଦ୍ର — ପର୍ଣ୍ଣୁ, ପ୍ରିନ୍‌ସପାଲ୍ କ'ଣ କହିଲେ ?

ଗିରିଜା — ସିଏ କ'ଣ ଆଉ ପ୍ରିନ୍‌ସପାଲ୍ ପାଖକୁ ଯାଇଛି ?

ଚନ୍ଦ୍ର — ତା'ମାନେ ?

ପର୍ଣ୍ଣୁ — ସାର୍ ଆଉ ପୁଲିସ୍ ସାର୍ ମୋତେ ଫେରାଇଆଣିଲେ ।

ଗିରିଜା — କାହିଁକି ଚାନ୍ସ ଛାଡ଼ିବେ ? ଆପଣଙ୍କ ଭଳି ନିଷ୍ଠାପର ଅଧ୍ୟାପକ ଯଦି ଖାତା ନ ଦେଖନ୍ତି, ତା'ହେଲେ ନିରୀହ ଛାତ୍ରସମାଜ ହତାଶ ହୋଇଯିବ ।

ଚନ୍ଦ୍ର — ହେଲେ, ମୁଁ ଦୁର୍ନୀତି କରିପାରିବିନି ।

ଗିରିଜା — ଦୁର୍ନୀତି ? ଛି ! ଛି ! କିଏ କହୁଛି ଆପଣଙ୍କୁ ଦୁର୍ନୀତି କରିବାକୁ ?

ଚନ୍ଦ୍ର — ମୁଁ ଖାତାରେ ନମ୍ବର ବଢ଼େଇପାରିବିନି ।

ଗିରିଜା — ମୋଟେ ନୁହଁ, ଖାଲି ଏ ଛାତ୍ରସମାଜକୁ ଅନ୍ତତଃ ଟିକିଏ ଆଶ୍ୱସ୍ତ ହେବାପାଇଁ ଆପଣ ଖାତା ଦେଖନ୍ତୁ ।

ଚନ୍ଦ୍ର — ସମୟ ତ ହୋଇଗଲାଣି ।

ପର୍ଣ୍ଣୁ — ଖାତାଦେଖା ଆଉ ଦୁଇଦିନ ଘୁଞ୍ଚିଗଲା ।

ଚନ୍ଦ୍ର — ତା'ମାନେ..

ଗିରିଜା — ଆଜି ନୁହେଁ, କାଲି ନୁହେଁ ।

ପର୍ଣ୍ଣୁ — ତା'ପରଦିନ ବି ନୁହେଁ ।

ଗିରିଜା — ତା'ପରଦିନ

ଚନ୍ଦ୍ର — କିନ୍ତୁ ଆଜି ତ ମୋତେ କଲେଜ ଯିବାକୁ ପଡ଼ିବ ।

ଗିରିଜା — ଚାଲନ୍ତୁ, ମୋ ଗାଡ଼ି ଅଛି, ସେହି ବାଟେ ନହେଲେ ଛାଡ଼ିଦେଇଯିବି ।

ଚନ୍ଦ୍ର — ଆପଣଙ୍କ ଗାଡ଼ି...

| | |
|---|---|
| ଗିରିଜା | ଏଇ ରାସ୍ତାରେ ଛିଡ଼ାହୋଇଛି । ଆସନ୍ତୁ । |
| ଚନ୍ଦ୍ର | କିନ୍ତୁ ଆପଣଙ୍କର କାମ.... |
| ଗିରିଜା | ମୋ କାମଟା କ'ଣ ଏତେ ବଡ଼ ! ହେଲାଣି ଯେତେବେଳେ ହେଇଯିବନା' । ଆସନ୍ତୁ । |
| ଚନ୍ଦ୍ର | ଜିତା ! (ଜିତା ଆସନ୍ତି) ମୁଁ କଲେଜରୁ ଆସୁଛି । |
| ଜିତା | ଖାଇବନି ? |
| ଚନ୍ଦ୍ର | ନାଇଁ, ଆଜି ତ ଖାତାଦେଖା ହବନି । ମୁଁ ଡିଟେଲ୍ସ ବୁଝିଆସେ । ଜଷ୍ଟ୍ ଆସୁଛି । |
| ଗିରିଜା | ମୋ ଗାଡ଼ିରେ ନେଇଆସିବି । |
| ଜିତା | ତମେ କ'ଣ ଖାତା ଦେଖିବ ? (ଦୃପ୍ତିରେ) |
| ଚନ୍ଦ୍ର | ଯାଉଛି ତ.... |
| ଗିରିଜା | ନିଶ୍ଚିତନା' । ହଉ, ଆମେ ଆସୁଛୁ । |
| ଜିତା | (ଚାହିଁଥାଏ । ସମସ୍ତେ ଯାଆନ୍ତି ।) |

(ଅନ୍ଧାର)



## ତୃତୀୟ ଦୃଶ୍ୟ

ସେ ଡ୍ରଇଁରୁମ୍, ଚନ୍ଦ୍ର ରାଗରେ ଖାଇବା ପାଖରୁ ଉଠିଆସିଥାଏ । ପଛେ ପଛେ ଜିତା....

ଚନ୍ଦ୍ର : ନାଇଁ, ମୁଁ ଖାଇବିନି ।

ଜିତା : ହଉ ହେଲା, ମୋର ଭୁଲ୍ ହୋଇଯାଇଛି । ହେଲେ, ତମେ ଖାଇବା ପାଖରୁ ଏମିତି ଉଠିଗଲେ କ'ଣ ହେବ ? ଆସ ।

ଚନ୍ଦ୍ର : ନାଇଁ, ଯେପର୍ଯ୍ୟନ୍ତ ମୁଁ ନ ଜାଣିଛି ଏ ମାଛ କୋଉଠୁ ଆସିଲା, ସେ ପର୍ଯ୍ୟନ୍ତ ମୁଁ ଖାଇବିନି ।

ଜିତା : ସତ କହୁଛି ମୋତେ ବିଶ୍ୱାସ କର । କିଏ ଜଣେ ଆସି ଡାକିଲା ଏବଂ ଗୋଟିଏ ପଲିଥିନ୍ ବେଗ୍‌ରେ ମାଛଟା ବଢ଼େଇଦେଇ ଚାଲିଗଲା ।

ଚନ୍ଦ୍ର : କିଏ ଜଣେ ଆସିଲା, ମାଛଟିଏ ବଢ଼େଇଦେଇ ଚାଲିଗଲା, ଆଉ ତମେ ଚୁପ୍‌ଚାପ୍ ନେଇଗଲ । ତାକୁ ପ୍ରଶ୍ନଟିଏ ସୁଦ୍ଧା ପଚାରି ପାରିଲନି ? ତମର ଏତିକି ଟିକିଏ କମନ୍‌ସେନ୍ସ ନାହିଁ ? ଏତିକି ତମେ ଜାଣିବାକୁ ଇଚ୍ଛାକଲନି, କିଏ ଦେଇଛି । କ'ଣ ପାଇଁ ଦେଇଛି ?

ଜିତା : ସେଇଟା ତ ମୋର ଭୁଲ୍ ହୋଇଛି ।

ଚନ୍ଦ୍ର : ଏକା ତମର ନୁହେଁ । ସ୍ତ୍ରୀଲୋକମାନଙ୍କର ଇଏ ଗୋଟିଏ ମାନିଆ ମୋଫତ୍‌ରେ ମିଳିଗଲେ(କଲିଂବେଲ୍ ବାଜେ)କିଏ !

ଗିରିଜା : (ଆସନ୍ତି) ନମସ୍କାର ଆଜ୍ଞା ।

ଚନ୍ଦ୍ର : ଆଜ୍ଞା ନମସ୍କାର । ମୁଁ ଏବେ ଟିକିଏ ବ୍ୟସ୍ତରେ ଅଛି । ଟିକିଏ ପରେ ଆସନ୍ତୁ ।

ଗିରିଜା : ନାଇଁ ଆଜ୍ଞା, ମୁଁ ବି ବଡ଼ ବ୍ୟସ୍ତରେ ଅଛି । ଖାଲି ପଦୁଟିଏ କଥା କହିଦେଇ ଚାଲିଯିବି ।

ଚନ୍ଦ୍ର କ'ଣ, କୁହନ୍ତୁ ।

ଗିରିଜା : ଏ, କଥା କ'ଣକି ଆଜ୍ଞା, ମୁଁ କେବେ ମାର୍କେଟ୍ ଯାଏନି । ଆଜି ସକାଳେ ଟିକିଏ ଚାଲିଗଲି । ଦେଖିଲି, ଆଜି ମାର୍କେଟ୍‌ରେ ପ୍ରଚୁର ଇଲିସି । ସବୁବେଳେ ତ ମିଳେନି, ତେଣୁ ଲୋଭ ହେଲା । ହେଲେ, ଛ'ଶହ ଟଂକା କିଲୋ । ତଥାପି ଗୋଟେ କିଣିଲି । ଠିକ୍ ସେତିକିବେଳେ ମୋର ମନେପଡ଼ିଲା ଆପଣଙ୍କ କଥା । ଭାବିଲି, ନାୟକବାବୁଙ୍କ ଭଳି ଜଣେ ନିଷ୍ଠାପର ଅଧ୍ୟାପକ....

ଚନ୍ଦ୍ର : ଟଂକା ଦେଇ ତ ମାଛ କିଣିପାରୁନି । ତେଣୁ ଆପଣ ଦୟାପରବଶ ହୋଇ...

ଗିରିଜା : ଆହା, ଆଦୌ ନୁହେଁ । ମୁଁ ପୁଣି ଦୟା କରିବି ଆପଣଙ୍କ ଭଳି ଜଣେ....

ଚନ୍ଦ୍ର : ନିଷ୍ଠାପର ଅଧ୍ୟାପକଙ୍କୁ ?

ଗିରିଜା : ଆପଣ ବୁଝିପାରିବେନି ନାୟକବାବୁ ! ମୁଁ ଆପଣଙ୍କୁ କେତେ ଭଲ ପାଏ । କେତେ ଶ୍ରଦ୍ଧା କରେ । କାହିଁକି ଯେ ଏମିତି କରେ, ମୁଁ ନିଜେ ବି ବୁଝିପାରେନି । ସେମିତି କିଛି ସ୍ୱାର୍ଥ ବି ମୋର ନାହିଁ । ଖାଲି ସିଦ୍ଧିକ୍ ବାବୁଙ୍କ ବଂଧୁ ବୋଲି ଯାହା... ନହେଲେ ଛାଡ଼ନ୍ତୁ । ହଉ ଆଜ୍ଞା, ମୋର ସେଇଟା ଭୁଲ୍ ହୋଇଯାଇଛି ।

ଚନ୍ଦ୍ର : ନାଇଁ ନାଇଁ ଆଜ୍ଞା, ମୁଁ ଟିକିଏ.. ଏକ୍‌ସାଇଟେଡ୍ ହୋଇଯାଇଥିଲି ତ ତେଣୁ କିଛି ମାଇଣ୍ଡ୍ କରିବେନି ।

ଜିତା : ହୁଁ, ଏକ୍‌ସାଇଟେଡ୍ ! ମୁଁ ଏତେଥର କହୁଛି, କିଏ ଆଉ ତୁଚ୍ଛାଟାରେ ଆମକୁ ମାଛ ଆଣି ଦେଇଯିବ ! କେହି ନା କେହି ଜଣାଶୁଣା ଲୋକ ଦେଇଥିବେ । ସେଥିରେ କ'ଣନା ଏତେ ରାଗ, ସିଧା ଭାତଥାଳି ପାଖରୁ ଉଠିଆସିବ, ନଖାଅ ।(ଯାଏ)

ଗିରିଜା : ଏଁ ! ଏତେ କଥା ! ନାଇଁ ନାୟକ ବାବୁ !

ଚନ୍ଦ୍ର : ନାଇଁ ନାଇଁ, ବସନ୍ତୁ । ଆଉ କୁହନ୍ତୁ, କ'ଣ ପାଇଁ.. ମାନେ...

ଗିରିଜା : ନାଇଁ ନାଇଁ, ସେମିତି କିଛି ନୁହେଁ । କଥା କ'ଣକି, ଆପଣ ଆଗ ଖାଇ ଆସନ୍ତୁ । (ମେଘା ଆସେ)

ମେଘା : ବାପି ! ବାପି ! ମୁଁ ସ୍କୁଲ ଯିବି କି ନା ?

ଚନ୍ଦ୍ର : ହଁ, ନିଶ୍ଚୟ ।

ମେଘା : କେମିତି ଯିବି ?

ଚନ୍ଦ୍ର : ରିକ୍ସାରେ ।

ମେଘା : କ'ଣ ପିନ୍ଧିବି ?

ଚନ୍ଦ୍ର : ସେକଥା ମାମିଙ୍କୁ ପଚାର ।

ମେଘା : ମାମିନା' ବହୁତ ରାଗିଛନ୍ତି ।

ଚନ୍ଦ୍ର : ଆଚ୍ଛା ?

ମେଘା : କହିଲେ, ମୁଁ କହିପାରିବିନି - ବାପିଙ୍କୁ ପଚାର ।

ଚନ୍ଦ୍ର : ବାସ୍ ! ଯାହା ପିନ୍ଧିଛ, ସେଇଆ ପିନ୍ଧିଥାଅ ।

ମେଘା : ଏଇଟା କ'ଣ ସ୍କୁଲ ଡ୍ରେସ୍ ?

ଚନ୍ଦ୍ର : ତମ ସ୍କୁଲ ଡ୍ରେସ୍ ପିନ୍ଧିପକାଅ ।

ମେଘା : ସେଇକଥା ମାମି ତମକୁ କେତେଥର କହିଲେଣି, ମେଘାପାଇଁ ଆଉ ଗୋଟେ ସ୍କୁଲ ଡ୍ରେସ୍ କରିଦିଅ । ତମେ କଲନି । ଏବେ ସେଇଟା ତ ଓଦା, ମୁଁ ସ୍କୁଲ ଯିବି କେମିତି ?

ଚନ୍ଦ୍ର : ତା'ହେଲେ ଆଜି ସ୍କୁଲ ନ ଯାଅ ।

ମେଘା : ନାଇଁ, ଆଜି ଆମର ଗୀତ ସିଲେକ୍‌ସନ୍, ମୁଁ କେତେ କଷ୍ଟରେ ଗୀତ ଶିଖିଛି - ସ୍କୁଲ ନଗଲେ ମୋତେ କାଟିଦେବେ, ମୁଁ ସ୍କୁଲ ଯିବି ।

ଚନ୍ଦ୍ର : ନାଇଁ ।

ଗିରିଜା : ଆରେ ହଁ ମା, ତମେ ସ୍କୁଲ ଯିବ । ଆସ ମୋ ସଂଗରେ, ସଂଗେସଂଗେ ଗୋଟେ ନୂଆ ଡ୍ରେସ୍ ନେଇଆସିବା ।

ମେଘା : ନୂଆ ଡ୍ରେସ୍ ?

ଗିରିଜା : ହଁ ।

ଚନ୍ଦ୍ର : ନାଇଁ, ଆପଣ କାହିଁକି...

ଗିରିଜା : ଓଃ, ଚିନ୍ତା କରନି । ମୋର ଏଇଭଳି ଯଦି ଗୋଟେ ନାତୁଣୀ ଥାଆନ୍ତା ନା, ଛାଡ଼ । ସେସବୁ ଭାଗ୍ୟରେ ଥିଲେ ମିଳେ .. ଆ ମା .. ଗାଡ଼ି ଅଛି । ସଂଗେସଂଗେ ଫେରିଆସିବା - ଆ ମା' - ବାପି କିଛି କହିବେନି । (ନେଇଯାଆନ୍ତି)

ଚନ୍ଦ୍ର : (କେବଳ ଚାହିଁଥାଆନ୍ତି, ପୁଣି ଫେରିପଡ଼ନ୍ତି) ଜିତା !

ଜିତା : (ଆସନ୍ତି) କ'ଣ ହେଲା ?

ଚନ୍ଦ୍ର : ମେଘା କେତେବେଳେ କ'ଣ ପିନ୍ଧିବ, ସେକଥା କ'ଣ ମୋ'ଠୁ ଜାଣିବା ଦରକାର !

ଜିତା : ମୁଁ ସେତେଦିନୁ କହୁଛି, ତା'ର ଗୋଟେ ସ୍କୁଲ ଡ୍ରେସ୍...

ଚନ୍ଦ୍ର : ତା' ବୋଲି ଜଣେ ଭଦ୍ରଲୋକଙ୍କ ସାମ୍ନାରେ.. ?

ଜିତା : ତମେ ପରା ସତ କୁହ, ସତ କହିବାରେ ଭଦ୍ରଲୋକଙ୍କୁ ଡରୁଛ କିଆଁ ? ଯାହା ସତ, ସେ କହିଲା । କ'ଣ ହୋଇଗଲା ସେଇଠୁ ?

ଚନ୍ଦ୍ର : କ'ଣ ଆଉ ହୁଅନ୍ତା ? ସେ ଭଦ୍ରଲୋକ ମୋ ବାପପଣିଆକୁ ପରିହାସ କରି ମୋ ଝିଅକୁ ମୋରି ଆଗରେ ଡ୍ରେସ୍ କିଣିବା ପାଇଁ ମାର୍କେଟ୍ ନେଇଗଲେଣି ।

ଜିତା : ମୁଁ ଆଉ କ'ଣ କରିଥାନ୍ତି ? ମୁଁ କ'ଣ ତାଙ୍କୁ ଡ୍ରେସ୍ କିଣିବାକୁ କହିଲି !

ଚନ୍ଦ୍ର : ତମେ କହିଥିଲେ ବରଂ ମୁଁ ବେଶି ଖୁସି ହୋଇଥାନ୍ତି ।

ଜିତା : ତମେ, ତମେ ଶେଷରେ ଏଇଆ କହିଲ ? ଯିଏ ତା'ର ବାପ ଆଗରେ, ଭାଇ ଆଗରେ, ହାତ ପାତିପାରିଲାନି, ସେ ଏମିତି ପର ପାଖରେ ହାତ ପାତିପାରିବ ?

ଚନ୍ଦ୍ର : ମୁଁ କ'ଣ ବୁଝୁନି ? ତମେ ତମର, ତମ ଘରର, ତମ ସ୍ୱାମୀର ସ୍ୱାଭିମାନର ସୁରକ୍ଷା ପାଇଁ ସବୁ କରିପାର । କିନ୍ତୁ ଆଜି କାହିଁକି

ମୋର ସ୍ୱାଭିମାନ ଟିକକୁ ଏମିତି ପର ପାଦତଳେ ଦଳିମକ୍‌ଚି ଦେଲ ।
(ଆସନ୍ତି ଗିରିଜା ଓ ମେଘା)

ଗିରିଜା : ନାଇଁ ନାଇଁ ନାୟକବାବୁ । ଭୟକରନ୍ତୁନି, ଆପଣଙ୍କ ଭଳି ଜଣେ ଅଧ୍ୟାପକର ସ୍ୱାଭିମାନକୁ କେବେହେଲେ ତଳେ ପକେଇବାକୁ ଦେବିନି ।

ଚନ୍ଦ୍ର : ତା' ମାନେ, ଆପଣ ... ?

ଗିରିଜା : ହଁ, ମୁଁ ସିନା ବଡ଼ଲୋକର ବଡ଼ପଣରେ ତମ ଝିଅକୁ ଡ୍ରେସ୍ ଦୋକାନକୁ ନେଇଗଲି, କିନ୍ତୁ ଡ୍ରେସ୍ ଖଣ୍ଡେ କିଣି ପାରିଲିନି । ଭାବିଲି, ଏହାଦ୍ୱାରା ଜଣକର ପିତୃତ୍ୱକୁ ବାଧିବ । ଫେରିଆସିଲି । ମୋତେ ଭୁଲ୍ ବୁଝିବେନି, ଆଜ୍ଞା ।

ଚନ୍ଦ୍ର : ଆପଣ...ସତରେ ଆପଣ ! ମୋତେ କ୍ଷମା କରନ୍ତୁ ।

ଗିରିଜା : ନାଇଁ, ତମ ସ୍ୱାଭିମାନ ତଳେ ପଡ଼ିଗଲେ ମୁଁ କ'ଣ ଖୁସି ହେବି ? .. ତଥାପି..ଏଇ ମିଠା ଏତିକି .. ପିଲାଟା ପାଇଁ... ଯଦି ନ ବାଧେ.. ରଖିଦେଲେ.... ମୁଁ ଅନ୍ତତଃ

ଲିତା : ନାଇଁ ନାଇଁ, ଏତେଟା ଭାବନ୍ତୁନି.. (ନେଲେ) ଆସ୍ ମେଘା ! ଆଜି ଏଇ ଡ୍ରେସ୍ ପିନ୍ଧି ସ୍କୁଲ ଚାଲିଯିବ ।

ଚନ୍ଦ୍ର : ମୁଁ ଆଜି ନିଶ୍ଚୟ ସ୍କୁଲଡ୍ରେସ୍‌ଟେ ନେଇଆସିବି । ଯାଅ .. ।

ଗିରିଜା : ଆପଣ କ'ଣ ଆଜି କଲେଜ ଯିବେନି ?

ଚନ୍ଦ୍ର : ହଁ ।

ଗିରିଜା : ଯାଆନ୍ତୁ । ଆଉଥରେ ଖାଇଦେଇ ବାହାରି ପଡ଼ନ୍ତୁ - ମୋ ଗାଡ଼ିରେ ସାଂଗ ହୋଇ ଚାଲିଯିବା ।

ଚନ୍ଦ୍ର : ହେଲେ, ଆପଣଙ୍କ ଆସିବାର ଉଦ୍ଦେଶ୍ୟଟା..

ଗିରିଜା : ଆରେ, ଏମିତି ଆସିବାକୁ କ'ଣ ମନାଅଛି ?

ଚନ୍ଦ୍ର : ନାଇଁ, ଆପଣ ବ୍ୟସ୍ତଲୋକ,....

ଗିରିଜା : ଇଏ ବି ଗୋଟେ ବ୍ୟସ୍ତତାନା' । ତଥାପି... ହଉ ଆସନ୍ତୁ । କଲେଜ ନେଇଯିବା ରାସ୍ତାରେ କହିବି ।

ଚନ୍ଦ୍ର : ଠିକ୍ଅଛି, ଟିକିଏ ଅପେକ୍ଷା କରନ୍ତୁ । ମୁଁ ଏଇ ଆସୁଛି ।

ଗିରିଜା : ନାଇଁ ନାଇଁ, ଆରାମରେ ବାହାରନ୍ତୁ । ମୁଁ ବସିଛି ।

(ଚନ୍ଦ୍ର ଗଲାପରେ ଗିରିଜା ଉଠନ୍ତି । ବୁଲି ବୁଲି କ'ଣ ସବୁ ଦେଖନ୍ତି, ହଠାତ୍ ପଶିଆସନ୍ତି ସିଦ୍ଦିକ୍ ?)

ସିଦ୍ଦିକ୍ : ଆରେ ମହାନ୍ତି ବାବୁ ! ମୁଁ ଆପଣଙ୍କ ଘର ଆଡ଼େ ଯାଉଥିଲି, ଏଇଠି ରାସ୍ତାରେ ଗାଡ଼ିଟା ଦେଖି ପଶିଆସିଲି । ମୋ ଅନୁମାନ ଠିକ୍ । କ'ଣ, ହେଲା ?

ଗିରିଜା : ଥାନାରେ କ'ଣ ହେଲା ?

ସିଦ୍ଦିକ୍ : (ଚୁପ୍ ରହିବାକୁ ଇସାରା ଦେଇ) ଏଠି ନୁହେଁ, ଏମାନଙ୍କୁ କହିବେନି । ଏମାନଙ୍କ ଆଗରେ ମୁଁ ସଚ୍ଚୋଟ ।

ଗିରିଜା : ଆପଣଙ୍କ ଭଳି ନିଷ୍ଠାପର ଇନ୍ସପେକ୍ଟର ଆଉ ମିଳିବେନି ।

ସିଦ୍ଦିକ୍ : ଆପଣଙ୍କ କାମ ହୋଇଯାଇଛି । ଥାନାକୁ ଯିବେନି । ସମୟ ଦେଖି ମୋ ବସାଆଡ଼େ ଆସିବେ ।

ଗିରିଜା : ନିଶ୍ଚୟନା !

ସିଦ୍ଦିକ୍ : ମୁଁ ତା'ହେଲେ ଆସୁଛି ।

ଗିରିଜା : ହଁ ହଁ ।

ସିଦ୍ଦିକ୍ : ନମସ୍କାର (ଯାଏ)

ଗିରିଜା : ନମସ୍କାର । (ହସିଲେ, କଲିଂବେଲ୍ ବାଜେ) ହଁ, ଖୋଲା ଅଛି (ପର୍ଶୁ ଆସେ) ଆରେ ବାବା ପର୍ଶୁରାମ ।

ପର୍ଶୁ : ଜୁହାର ଆଜ୍ଞା ।

ଗିରିଜା : ଜୁହାର । କ'ଣ, କଲିଂବେଲ ଲାଗିଗଲା ?

ପର୍ଶୁ : ଦେଖିଲେନି ଚିପିଦେଲି କେମିତି ଟିଂ ଟିଂ ବାଜିଲା !

ଗିରିଜା : ତା'ହେଲେ... ।

ପର୍ଶୁ : କାମ ହୋଇଗଲା ?

ଗିରିଜା : ତୁ କ'ଣ ଭାବୁଛୁ, ଏ କାମଟା ଏତେ ସହଜରେ ହୋଇଯିବ ?

ପର୍ଶୁ : ନା, ଜମା ନୁହେଁ ।

ଗିରିଜା : ଏ କାମଟା ଯେତେ ସହଜରେ ହେବ, ଆଉ କୌଣସି କାମ ଏତେ ସହଜରେ ହୋଇନଥିବ ।

ପର୍ଶୁ : ମାନେ ?

ଗିରିଜା : ବସ୍, କହୁଚି ।

ପର୍ଶୁ : (ବସିଲେ) କୁହନ୍ତୁ ।

ଗିରିଜା : ଆରେ ପର୍ଶୁ ! ତୁ କେବେ ଚୋରିକରିଛୁ ?

ପର୍ଶୁ : ଚୋରି ? ମୁଁ ?

ଗିରିଜା : ଓ ହୋ ଚୋରି ନହଉ, ଉପୁରି ? ଉପୁରି କେବେ କରିଛୁ ?

ପର୍ଶୁ : ସେଟା କ'ଣ ଚୋରି ?

ଗିରିଜା : ଚୋରି ନହଉ, ସେହିଭଳି ପାଠ ତ, କ'ଣ କେବେ କେମିତି ଉପୁରି ପଢ଼ିଛି ନା ନାହିଁ ?

ପର୍ଶୁ : ହଃ କଲେଜରେ ଫେଏରେ ଉପୁରି ଆଉ କ'ଣ ? ଇମିତି ପିଲାଗୁଡ଼ାଙ୍କୁ କେତେବେଳେ କେମିତି ପରୀକ୍ଷାରେ ଟିକିଏ ହେଲ୍ପ, ତା' କରିଦିଏ । ଯାହା ଟଙ୍କାଏ ସୁଉକେ ପାନ ଖରଚ ପାଏଁ ।

ଗିରିଜା : ଆରେ, ସେଗୁଡ଼ା କ'ଣ ଉପୁରି ?

ପର୍ଶୁ : ଆଉ ?

ଗିରିଜା : ଶହେ ଉପରକୁ, ଦି'ଶ ପାଁଶ, ହଜାରେ, ଏମିତି କେବେ କିଛି କରିଛୁ ?

ପର୍ଶୁ : କାହିଁ ! ହଁ, ଥରେ ବଡ଼ବାବୁ ମୋତେ କାଗଜ କିଣିବାକୁ ପଠେଇଥିଲେ । ମୁଁ କାଗଜ କିଣି ହିସାବ ବୁଝେଇସାରିଲାପରେ କେମିତିକେଜାଣି ପାଁଶ ଟଂକା ମୋ ପାଖରେ ରହିଗଲା, କେହି ତ ହିସାବ ମାଗିଲେନି.. ମାରିଦେଲି ।

ଗିରିଜା : ପାଁଶ ଟଂକା ମାରିଥିଲୁ ତ !

ପର୍ଶୁ : ହଁ, ସିଏ ଢେର୍‌ଦିନ ତଳର କଥା, ମାରିଦେଇଥିଲି । ମିଛ କହିବି କିଆଁ, ଫେଏରେ ଆପଣଙ୍କ ଆଗରେ ?

ଗିରିଜା : ହଉ, ସେ ଟଂକାରେ କ'ଣ କଲୁ ?

ପର୍ଶୁ : ସେକଥା କହନ୍ତୁନି ଆଜ୍ଞା । ସେ ଟଂକାଟା ପକେଟରେ ରଖି ମୁଁ ଯାହା ଯାହା ଭାବିଛି, ମିଳିଥିଲେ ହାତୀଟେ କିଣିପକେଇଥାନ୍ତି ।

ଗିରିଜା : କାହିଁକି କହିଲୁ ! ସେଟା ଉପୁରି ଟଂକା । ସେଥିରେ ଲୋକେ ଢେର୍ ଚିଜ କିଣିପକାନ୍ତି । ହଉ, କ'ଣ କଲୁ ?

ପର୍ଶୁ : ପ୍ରଥମେ ଭାବିଲି, ଜୋତା ହଳେ କିଣିପକେଇବି । ତା'ପରେ ଭାବିଲି ଜୋତାଟା ତ ଛିଣ୍ଡିଯିବ, ତେଣୁ ଘଣ୍ଟାଟେ କିଣିବି, ହାତରେ ବାନ୍ଧିବି ।

ଗିରିଜା : ସେଇଠୁ ଘଡ଼ି ଦୋକାନକୁ ଯାଇଥିବୁ ?

ପର୍ଶୁ : ତା'ପରେ ଭାବିଲି, ମୋର ଘଣ୍ଟାଟେ କ'ଣ ହବ, ଯାଉଛି ମାସକ ପାଇଁ ଚାଉଳ କିଣିନେବି । ଫେଏରେ ଭାବିଲି, ଚାଉଳ ତ ଦରମା ଟଂକାରେ କିଣୁଛି, ଏଟା ତ ଉପୁରି ଟଂକା, ଏଥିରେ ଗୋଟେ ଉପୁରି ଚିଜ କିଣନ୍ତି । ଢେର୍ ଭାବିଚିନ୍ତି ମୋ ସ୍ତ୍ରୀପାଇଁ ଛିଟଶାଢ଼ି ଖଣ୍ଡେ କିଣି ପକେଇଲି ।

ଗିରିଜା : ଶାଢ଼ି କିଣିଲୁଟି ?

ପର୍ଶୁ : ହଁ ।

ଗିରିଜା : ଖାଲି ତୁ ନୁହେଁରେ ମକରା, ସବୁ ପୁରୁଷମାନେ ସେଇଆ କରନ୍ତି । ଆଚ୍ଛା, ଶାଢ଼ି ଦେଖି ତୋ ସ୍ତ୍ରୀ କ'ଣ କହିଲା ?

ପର୍ଶୁ : ଓ ହୋ କହନ୍ତୁନି ଆଜ୍ଞା, ସେ ଯୋଉ ଖୁସି ! ସେ ଖୁସିରେ ଏକଦମ୍ ଫାଟିପଡ଼ିଲା । ବାହାହେଲାଠାରୁ ସେ ଇମିତି ଖୁସି କେବେ ହୋଇ ନଥିଲା ।

ଗିରିଜା : ନା ତୁ ମିଛ କହି ଉପୁରି ପଇସା ନେଇଛୁ ବୋଲି ଗାଳିଦେଲା ?

ପର୍ଶୁ : ନାଇଁ ଆଜ୍ଞା, ତା'ପରଠୁ ତ ସେ ନିତି ପଚାରିଲା, ଆଜି କ'ଣ ବଡ଼ବାବୁ ତମକୁ କାଗଜ କିଣିବାକୁ ପଠେଇନାହାନ୍ତି ? ଆଉ ମୁଁ ବି ସେହିଦିନଠୁ ବଡ଼ବାବୁଙ୍କ ପାଖେ ପାଖେ ଜଗିବସିଲି... ତା'ପରେ ତ...(ହସନ୍ତି)

ଗିରିଜା : ବାସ୍, ମୁଁ ସେଇକଥା କହୁଥିଲି । (ଜିତା ଚା' ନେଇଆସନ୍ତି)

ଲିତା : ଆଜ୍ଞା ଟିକିଏ ଚା... ।

ଗିରିଜା : ଉହୁଁ, କାହିଁକି ଏତେ କଷ୍ଟ କଲେ, ନ ହୋଇଥିଲେ କ'ଣ ହୋଇ ନଥାନ୍ତା ?

ଲିତା : ନାଇଁ, କେବଳ ଚା' ଟିକିଏ.. ନିଅ ପର୍ଶୁ ।

ପର୍ଶୁ : ସାର୍ କାହାନ୍ତି କି ମାଡାମ୍ ?

ଲିତା : ବାହାରିସାରିଲେଣି, ଜୋତା ବ୍ରସ କରୁଛନ୍ତି ।

ଗିରିଜା : ଏ, କଥା କ'ଣକି.. ପର୍ଶୁ ।

ପର୍ଶୁ : ଏ ଗିରିଜା ବାବୁଙ୍କୁ ତ ଜାଣିଥିବେ, ମାଡାମ୍ । ଏ ଟାଉନରେ ଜଣେ ବିରାଟ ବ୍ୟବସାୟୀ । ସିନେମାଛକରେ ସେ ଯୋଉ ବିରାଟ ଟି.ଭି. ଦୋକାନଟା, ୟା'ଙ୍କରି ।

ଲିତା : ଟି.ଭି. ଦୋକାନ ?

ଗିରିଜା : ହଁ ଭିଡିଓକନ ଓ ସାମ୍‌ସଙ୍ଗ ଟିଭିର ମୁଁ ଡିଲର । ତା'ଛଡ଼ା ଫିଲିଭିଜନଠାରୁ ଡାୟନୋରା ପର୍ଯ୍ୟନ୍ତ, ଓହୋ ଆପଣଙ୍କର ଟି.ଭି ? ଆପଣଙ୍କର ଟି.ଭି. ନାହିଁ ।

ଲିତା : ନା ଯେ, ମୁଁ କ'ଣ କହୁଥିଲିକି ...

ଗିରିଜା : ନାଇଁ, ଆପଣଙ୍କର କିଛି କହିବା ଦରକାର ନାହିଁ , ମୁଁ ବୁଝିଗଲିଣି । ପର୍ଶୁ, ଆଜି ସଂଜସୁଦ୍ଧା ଏ ଘରେ ଟି.ଭି. ଫିଟିଙ୍ଗ୍ ହବ ।

ଲିତା : ନାଇଁ ନାଇଁ, ପରେ, ଏବେ ନୁହେଁ ।

ଗିରିଜା : ପରେ କାହିଁକି, ଆଜି ଲାଗିବ !

ଚନ୍ଦ୍ର : (ଆସନ୍ତି କହି କହି) କ'ଣ ?

ଗିରିଜା : ଆପଣଙ୍କ ଭଳି ଅଧ୍ୟାପକଙ୍କ ଘରେ ଟି.ଭି.ଟେ ନାହିଁ, ଅଥଚ ମୋ ଦୋକାନରେ ଗଦାହେଇଛି । ମୁଁ ଏଯାଏଁ ଲକ୍ଷ୍ୟକରିପାରିନି ।

ଚନ୍ଦ୍ର : ଦେଖିବା, ଗୋଟେ କିଣିବା ।

ଗିରିଜା : କିଣିବେ ତ ନିଶ୍ଚୟ, ମୁଁ ଆଜି ଆଣି ଲଗେଇଦେଉଛି ।

ଚନ୍ଦ୍ର : ଆଜି ? ହେଲେ...

| | | |
|---|---|---|
| ଗିରିଜା | : | ଟଂକା ତ ଆପଣ ସୁବିଧା କରି କିସ୍ତିରେ ଶୁଝିବେ । |
| ଚନ୍ଦ୍ର | : | ନାଇଁ ନାଇଁ, ମୁଁ ଟଂକା ହେଲେ ନେଇଆସିବି । |
| ଗିରିଜା | : | ଇଏ କି କଥା ! ମୁଁ କ'ଣ ଟଂକା ମାଗୁଛି ! ତା'ଛଡ଼ା, କଂପାନୀ ଚିଜ ଆମ ଶୋ'କେସ୍‌ରେ ଥାଅନ୍ତା, ଏଇଠି ରହିବ, ଆପଣ ଚିନ୍ତା କରନ୍ତୁନି । |
| ଚନ୍ଦ୍ର | : | ମୋର କଲେଜ୍ ଟାଇମ୍ ! କ'ଣ ପର୍ଶୁ । |
| ଗିରିଜା | : | ଚାଲନ୍ତୁ, ମୋ' ଗାଡ଼ିରେ ସାଂଗ ହୋଇ ଯିବା । ଆଉ ଝିଅ ? |
| ଝିତା | : | ମେଘା ମେଘା ! (ଆସେ) |
| ଗିରିଜା | | ଆସ ମା (ସମସ୍ତେ ଯାଆନ୍ତି, ଟିପୟ ଉପରେ ଗୋଟେ ସୁନ୍ଦର ପର୍ସ ଥାଏ, ଝିତାର ଦୃଷ୍ଟି ପଡ଼େ - ପର୍ସ୍ ଉଠାଏ, ଖୋଲେ, ଖଣ୍ଡେ କାଗଜ ଦେଖେ ଓ ପଢ଼େ) |
| ଝିତା | : | ସବ୍‌ଜେକ୍ଟ - ଇଂରାଜି, ରୋଲ୍ ନଂ - ସି.ଏ୫୪୦୨୧୨<br>(ପଢ଼ିସାରି ଚାହେଁ । ଗିରିଜା ପଶିଆସେ ।) |
| ଗିରିଜା | : | କଥା କ'ଣକି, ବେଗ୍‌ଟା ଛାଡ଼ି ଦେଇଗଲି (ଦେଖିନିଏ ଝିତାର କଥା ଜାଣିନେବା) ହଁ, ମୋ ନାତୁଣୀଟା ପରୀକ୍ଷା ଦେଇଛି - ଇଉନିଭରସିଟିରେ ଫାଷ୍ଟ୍ ହେବାର ସ୍ୱପ୍ନ ଆମେ ଦେଖିଛୁ । ଆପଣଙ୍କ ହାତ ଉପରେ ଭରସା । |
| ଝିତା | : | ଏ ପର୍ସ୍ .. |
| ଗିରିଜା | : | ଥାଉ.. |
| ଝିତା | | କିନ୍ତୁ.. |
| ଗିରିଜା | : | ସମୟସୁବିଧା ଦେଖି ଚେଷ୍ଟା କରିବେ । ମୁଁ ଅବଶ୍ୟ ରାସ୍ତାରେ କହିବି । ଆଉ ଟି.ଭି.ଟା ପଠେଇଦଉଛି ।<br>(ଯାଏ । ଝିତା କେତେ କ'ଣ ଭାବିଯାଏ) |
| ଝିତା | : | ଟି.ଭି. (ଭାବନ୍ତି) |

(ଅନ୍ଧାର)



## ଚତୁର୍ଥ ଦୃଶ୍ୟ

(ମଂଚ ଏକ ଟି.ଭି ହୋଇଯାଏ, ସମ୍ନା ମଂଚରେ ବସିଥାନ୍ତି ଜିତା ଓ ମେଘା ।
ଆଲୋକ କମିଆସେ, ପ୍ରଥମେ ଟି.ଭି.ରେ ଦୁଇଟି କାର୍ଟୁନ ଆସନ୍ତି ଡେଙ୍ଗ ଡେଙ୍ଗ )

ନରିଆ : କଥାଟିଏ କହୁଁ

ପରିଆ : କଥାଟିଏ କହୁଁ

ନରିଆ : କି କଥା ?

ପରିଆ : ବେଙ୍ଗୁଲି କଥା ।

ନରିଆ : କି ବେଙ୍ଗୁଲି ?

ପରିଆ : କାଠ ବେଙ୍ଗୁଲି

ନରିଆ : କି କାଠ ?

ପରିଆ : ଗଛ କାଠ

ନରିଆ : କି ଗଛ ?

ପରିଆ : ଆଗ ପଛ ।

ନରିଆ : କି ଆଗ ?

ପରିଆ : ବୁଢ଼ାବାଘ

ନରିଆ : କି ବୁଢ଼ା ?

ପରିଆ : କଳା ଘୋଡ଼ା

ନରିଆ : କି କଳା ?

ପରିଆ : ଚକାଡୋଳା

ନରିଆ : କି ଚକା ?

ପରିଆ : ରଥଚକ ।

ନରିଆ : କି ରଥ ?

ପରିଆ : ପାରିଜାତ

ନରିଆ : ପାରିଜାତ ?

ପରିଆ : ହଁ

ନରିଆ : ଇନ୍ଦ୍ରଙ୍କ ନନ୍ଦନବନରେ -

ପରିଆ : ଫୁଟିଛି କେଡ଼େ ଯତନରେ ।

ନରିଆ : ବାସନା ତା'ର ମହମହ ।

ପରିଆ : ରଂଗ ବି କେଡ଼େ ଟହଟହ ।

ନରିଆ : ପାରିଜାତକୁ ଭାବିଭାବି

ପରିଆ : ମୂର୍ଖ ହୋଇଲେ ମହାକବି ।

ନରିଆ : ପାରିଜାତକୁ ଆଶା କରି

ପରିଆ : ପଙ୍ଗୁ ଲଂଘଇ ହିମଗିରି ।

ନରିଆ : ପାଇବା ପାଇଁ ପାରିଜାତ

ପରିଆ : ଦେବ ମାନବ ହନ୍ତସନ୍ତ ।

ନରିଆ : ପାରିଜାତର କଥା ଏହି

ପରିଆ : ଶୁଣ ସୁଜନେ ମନଦେଇ ।

ନରିଆ : ଦ୍ୱାପର ଯୁଗ ଅନ୍ତକାଳେ

ପରିଆ : କୃଷ୍ଣ ଥାଆନ୍ତି ଦ୍ୱାରକାରେ ।

ନରିଆ : ଏକଦା ତାଙ୍କୁ ଖୋଜିଖୋଜି

ପରିଆ : ତାଙ୍କ ନାମକୁ ହେଜିହେଜି

ନରିଆ : ନାରଦ ହେଲେ ଆଗଭର

ପରିଆ : ଦେଖିବେ କୃଷ୍ଣଙ୍କ ପୟର ।

ନରିଆ : ଚାଲନ୍ତି ମନେ ଭାବିଭାବି

ପରିଆ : ପ୍ରଭୁଙ୍କୁ କିବା ଭେଟି ଦେବି ?

ନରିଆ : ପାଇଲେ ଏକ ପାରିଜାତ

ପରିଆ : ଭାବିଲେ ରହିଲା ମହତ ।

ନରିଆ : ଆସରେ ଆସ ନରଗଣ

ପରିଆ : ଦେଖିବା କୃଷ୍ଣଙ୍କ ଚରଣ (ଦୁଇପାର୍ଶ୍ୱରେ ଫ୍ରିଜ୍ ହୁଅନ୍ତେ କୃଷ୍ଣ ଓ ନାରଦ କଥା ହୋଇ ଆସନ୍ତି ।)

ନାରଦ : ପ୍ରଭୋ, ସ୍ୱର୍ଗପଥେ ଆସୁଥିଲି ଦ୍ୱାରକା ଉଦ୍ଦେଶ୍ୟେ

ପାଇଗଲି ପାରିଜାତ ପୁଷ୍ପ ଏକ

ନନ୍ଦନବନରୁ ।

କୃଷ୍ଣ : ପାରିଜାତ ?

ନାରଦ : ଆମେ ହେଲୁ ବ୍ରହ୍ମଚାରୀ

ଆମ ହସ୍ତେ ଦିଶିବ କି ସୁନ୍ଦର ଏ ଦେବୋପମ ପୁଷ୍ପ ?

ତେଣୁ ଚରଣେ ଦେଉଛି ଭେଟି, ଘେନିବା ହୁଅନ୍ତୁ ।

କୃଷ୍ଣ : ପାରିଜାତ ଅବଶ୍ୟ ସୁନ୍ଦର । ବହୁଦିନୁ ଦେଖିନାହିଁ ଏ ସୁନ୍ଦର ପୁଷ୍ପ କିନ୍ତୁ ଏହାର ଉଚିତ ସ୍ଥାନ ନୁହେଁ ମୋ ଚରଣ ।

ନାରଦ : ନାରାୟଣ ନାରାୟଣ ନାରାୟଣ ।

କୃଷ୍ଣ : ଥିବ ଯେବେ ଏହି ପୁଷ୍ପ ରୁକ୍ମିଣୀ - ଗଭାରେ

ପ୍ରୀତ ହେବ ଅର୍ଦ୍ଧାଙ୍ଗିନୀ ମୋର

ଯାଉଅଛି ପ୍ରମୋଦ ଉଦ୍ୟାନେ, ଖୋଷିଦେବି ରୁକ୍ମିଣୀ ଗଭାରେ ।

ନାରଦ : ଯାହା ଇଚ୍ଛା ଇଚ୍ଛାମୟଙ୍କର (କୃଷ୍ଣ ଯାଆନ୍ତି)

ରୁକ୍ମିଣୀଙ୍କୁ ପାରିଜାତ ଦେଇ ପ୍ରଭୁ ହେବେ ପ୍ରୀତ । ଏଣେ ସତ୍ୟଭାମା-

ଯାଏ, କରେ ଏକ ଲୀଳା (ନାରଦ ଯାଆନ୍ତି) ।

ନରିଆ : ଆରେ, ପରିଆରେ ଭାଇ ପରିଆ

ପରିଆ : କିସ ବୋଲୁଛୁ କି ଭାଇ ନରିଆ ?

ନରିଆ : ଚାହାଁ କଲିମୁଣି ହୁଏ ଖସଖସ

ପରିଆ : ସତ୍ୟଭାମା ପୁରେ ନଶପଶ । (କଥାହୋଇ ଆସନ୍ତି ନାରଦ ଓ ସତ୍ୟଭାମା ।)

ନାରଦ : ସ୍ୱଚକ୍ଷୁରେ ଦେଖିଅଛି ଦେବୀ ।

ଆଣିଥିଲି ପାରିଜାତ ତୁମ୍ଭର ସକାଶେ

ଦେଇଥିଲି ପ୍ରଭୁଙ୍କୁ ନିଜ ହସ୍ତେ

ତୁମ୍ଭଙ୍କୁ ସେ ଦେବେ ଉପହାର

ହେଲେ, ନାରାୟଣ ନାରାୟଣ ନାରାୟଣ ।

ସତ୍ୟଭାମା : ରୁକ୍ମିଣୀ ଗଭାରେ ତାହା ହେଲା ବିମଣ୍ଡିତ ।

ନାରଦ : ଇଏ କି ଅନ୍ୟାୟ ଦେବୀ ?

ଦୁଃଖ ଲାଗେ ଦେଖି ଦେବୀ ପ୍ରଭୁଙ୍କର ପକ୍ଷପାତ ନୀତି ।

ସତ୍ୟଭାମା : ନା, ଅସହ୍ୟ ଏ ପକ୍ଷପାତିତା ।

କେଉଁ ଗୁଣେ ସରି ହେବ ରକ୍ମିଣୀ ମୋହର ।

ମୋହ ହେତୁ ସ୍ୟମନ୍ତକ ମଣି ଅଛି ପ୍ରଭୁଙ୍କ ନିକଟେ

ମୁଁ ହେଉଛି ଶକ୍ରାଜିତସୁତା

ମୋର ସାଥେ ବାଦ କରି ତିଷ୍ଠିବ ରକ୍ମିଣୀ ?

ନାରଦ : ନାରାୟଣ ନାରାୟଣ ନାରାୟଣ ।

କେବେ କି ସମ୍ଭବ ଏହା ?

କିନ୍ତୁ ଦେବୀ ! ଉତେଜିତ ହେବାପାଇଁ ନୁହେଁ ଏହା ଉପଯୁକ୍ତ କ୍ଷଣ ! ଏହାଦ୍ୱାରା ଅନର୍ଥ ଘଟିବ ପ୍ରଭୁ ଦ୍ୱାରକାନାଥଙ୍କ ।

ସତ୍ୟଭାମା : ନା ନା ଦେବର୍ଷି ! ଅନର୍ଥ କି ଘଟିପାରେ ପ୍ରଭୁଙ୍କର କେବେ ? ଲୋଡ଼ା ମୋର ପାରିଜାତ ପୁଷ୍ପ, ଯାହା କି ମୋ ପତି-ପ୍ରେମର ପ୍ରତୀକ

ତେଣୁ ଦୟାକରି କୁହନ୍ତୁ ଦେବର୍ଷି !

କିପରି ମୁଁ କୃତକାର୍ଯ୍ୟ ହେବି ମୋର ଅଭୀପ୍ସା ପୂରଣେ ?

ନାରଦ : ଦେବୀ ! ଏହି ଦେଖ, ଏ ଦିଗକୁ ଆସୁଛନ୍ତି ପ୍ରଭୁ ରଂଗାଧର ।

- ଅଭିମାନ - ଅସ୍ତ୍ର ମାତ୍ର ଏକାନ୍ତ ଉପାୟ ।

ସତ୍ୟଭାମା : ଅଭିମାନ ?

ନାରଦ : ହଁ ଦେବୀ, ଅଶ୍ରୁ ଆଉ ଅଭିମାନ ନାରୀଙ୍କ ଆୟୁଧ

ଯେ ଆୟୁଧେ ପରାଜିତ ହୁଅନ୍ତି ପୁରୁଷେ ।

ସତ୍ୟଭାମା : ତେବେ କିମ୍ବା...

ନାରଦ : ରୋଷ ମୂର୍ତ୍ତି ଧରି ଦେବୀ କର ଅଭିମାନ

ମାନ ଭାଂଗି ପ୍ରଭୁ ତୁମ୍ଭ କାମନା ପୂରଣ କରିବେ

ନାରାୟଣ ନାରାୟଣ ନାରାୟଣ (ଯାଆନ୍ତି)

ସତ୍ୟଭାମା : ଦେଖିବି ମୁଁ ରକ୍ମିଣୀର ଅଛି କେତେ ଭକ୍ତି ।

କୃଷ୍ଣ : (ଆସନ୍ତି) ପ୍ରିୟେ ସତ୍ୟଭାମା !

ସତ୍ୟଭାମା : ଲୋଡ଼ା ନାହିଁ ସେହି ପ୍ରିୟ ବାକ୍ୟ ।

କୃଷ୍ଣ : ସତ୍ୟଭାମା !

ସତ୍ୟଭାମା : ତୁମେ ମାୟାଧର ଛଳନାମୟ ।

ମିଥ୍ୟାରେ ମିଥ୍ୟାରେ କେତେ ଚାଟୁବାଣୀ କହି

ପତିଭାବେ ମୋହଠାରେ କରିଛ ଛଳନା

ଦେଖି ମୁଁ ନଥିଲି ତୁମ୍ଭ ଏ ଛଦ୍ମରୂପକୁ ।

ଜାଣି ମୁଁ ନଥିଲି ତୁମ୍ଭ ଏ ପକ୍ଷପାତିତା

ହସହସ ଭାଷାର ଛଳରେ

କରିଅଛ ବଶ ମୋତେ କେଉଁ ସ୍ୱାର୍ଥପାଇଁ ?

କୃଷ୍ଣ : ସତ୍ୟଭାମା ! ତୁମ୍ଭାରେ ଉତ୍ୟକ୍ତ କିମ୍ପା ହେଉଅଛ ପ୍ରିୟେ ?

ଛଳନା ତ କରିନାହିଁ କେବେ ତୁମ୍ଭଠାରେ ।

ତୁମ୍ଭେ ମୋର ପ୍ରିୟତମା ଅଷ୍ଟପାଟ ମଧ୍ୟେ ।

ସତ୍ୟଭାମା : ମିଥ୍ୟା, ସବୁ ମିଥ୍ୟା । ସବୁ ଖାଲି କପୋଳକଳ୍ପିତ ।

କୃଷ୍ଣ : ସତ୍ୟ, ସତ୍ୟ ଏହା ସତ୍ୟଭାମା ।

ସତ୍ୟଭାମା : ସତ୍ୟ ! ଯଦି ଏହା ସତ୍ୟ

ତେବେ ପାରିଜାତ ପୁଷ୍ପ କିମ୍ପା ନୋହିଲା ମୋହର ?

କୃଷ୍ଣ : ପାରିଜାତ ?

ସତ୍ୟଭାମା : ହଁ, ଯାହା ଏବେ ଶୋଭାପାଏ ରୁକ୍ମିଣୀ ଗଭାରେ ।

କୃଷ୍ଣ : ଓ ଏଇକଥା, ଏ ସାମାନ୍ୟ କଥାପାଇଁ ଏତେ ଅଭିମାନ ?

ସତ୍ୟଭାମା : ସାମାନ୍ୟ ? ରୁକ୍ମିଣୀ ଗଭାରେ ଥାଇ ପାରିଜାତ ପୁଷ୍ପ

ଉପହାସ କରୁଅଛି ମୋତେ, ଅସହ୍ୟ ସେ ଉପହାସ ।

ନ ପାଇଲେ ପାରିଜାତ ପୁଷ୍ପ

ଜୀବନ ଝାସିବି ମୁହିଁ ସମୁଦ୍ର ବକ୍ଷରେ ।

କୃଷ୍ଣ : ନା ପ୍ରିୟେ ! ସତ୍ୟ ମୁହିଁ କରୁଛି ତୁମ୍ଭଠି
ରୁକ୍ମିଣୀଙ୍କୁ ପ୍ରାପ୍ତ ହେଲା ଏକ ପୁଷ୍ପ ମାତ୍ର
ଦିନେମାତ୍ର ରହି ତାହା ପଡ଼ିବ ଝାଉଁଳି ।
ମୁଁ ତୁମ୍ଭଙ୍କୁ ଆଣିଦେବି ପାରିଜାତ ବୃକ୍ଷ
ଉଦ୍ୟାନରେ ପୋତିଦେଲେ ତାହା,
ପ୍ରତିଦିନ ପ୍ରସ୍ଫୁଟିତ ହେବ ପାରିଜାତ
ଯାହାକୁ ଗଭାରେ ପିନ୍ଧି ହେବ ଆନନ୍ଦିନୀ ।

ସତ୍ୟଭାମା : ସତ୍ୟ ପ୍ରଭୋ ଯଦି ଥାଏ ମୋହଠାରେ ସାମାନ୍ୟ କରୁଣା
ନିବେଦନ ସ୍ୱରୂପରେ କରୁଛି ମାଗୁଣି, ଦିଅ ଆଣି ପାରିଜାତ ବୃକ୍ଷ
ସନ୍ତୋଷ ଲଭିବି ମୁହିଁ ଚିରଦିନ ପାଇଁ ।

କୃଷ୍ଣ : କରିଛି ତ ସତ୍ୟ,
ଆଣିଦେବି ପାରିଜାତ ବୃକ୍ଷ
ଏବେ ତୁଷ୍ଟମନେ ବିଜେକର ଆପଣା ଭୁବନେ ।

ସତ୍ୟଭାମା : ଯଥାଦେଶ ପ୍ରଭୋ (ଯାଆନ୍ତି)

କୃଷ୍ଣ : ଏଥିପାଇଁ କରିଅଛ ରୋଷ ?
ବାସ୍ତବରେ ଜଣେ ନାରୀପାଇଁ ଈର୍ଷାନ୍ୱିତା ଆଉଜଣେ ନାରୀ
ସାମାନ୍ୟ ପୁଷ୍ପଟେ ପାଇଁ... ( ମନେପଡ଼େ)
ହେଲେ, ସାମାନ୍ୟ କି ପାରିଜାତ ବୃକ୍ଷ
ମିଳେ ଯାହା ନନ୍ଦନକାନନେ,
କିପରି ଆସିବ ତାହା ମର୍ତ୍ତ୍ୟଭୁବନକୁ ।

ନରିଆ : ଆରେ ଘୂରିଲାରେ ଭାଇ ଘୂରିଲା ।

ପରିଆ : ପ୍ରଭୁଙ୍କର ମୁଣ୍ଡ ଘୂରିଲା ।

ନରିଆ : କହିଦେଲେ ସିନା କଥାରେ

ପରିଆ : ଏବେ ବିଛା କାମୁଡ଼ିଲା ମଥାରେ

ନରିଆ : କି କରିବେ ବୋଲି ଭାଳିଲେ ।

ପରିଆ : ଏବେ ସହସା ନାରଦ ମିଳିଲେ ।

ନାରଦ : ପ୍ରଭୋ ! କି ଚିନ୍ତାରେ ବ୍ୟାକୁଳ, ପ୍ରଭୋ ଗୋପୀନାଥ !

କୃଷ୍ଣ : ଦେବର୍ଷି ! କି କାରଣେ ଭରିଦେଲ
ମୋତେ ନେଇ କଳି - କୋଥଳିରେ ?

ନାରଦ : ମାୟାଧର, କେଉଁ ମାୟା ଅଜଣା ତୁମ୍ଭକୁ
ନାରୀ ପରା ପୁରୁଷର ଗତି ମୁକ୍ତି ପ୍ରଗତି କାରଣ ।
ନାରୀ ପୁଣି ପୁରୁଷର ଦୁର୍ଗତି କାରଣ
ଏହି କଥା ପ୍ରମାଣ ନିମନ୍ତେ ଉପୁଜିଛି କଳି ।

କୃଷ୍ଣ : କିନ୍ତୁ, କୁହ ମୋତେ ଉଦ୍ଧାର ଉପାୟ

ନାରଦ : ନାରାୟଣ ନାରାୟଣ ନାରାୟଣ ।
ଯିଏ ନିଜେ ସ୍ୱୟଂ ନାରାୟଣ,
ସିଏ ପୁଣି କରୁଛନ୍ତି ପରିତ୍ରାଣ ଚିନ୍ତା ?

କୃଷ୍ଣ : କୁହନ୍ତୁ ଦେବର୍ଷି ! କିପରି ମୁଁ ପ୍ରାପ୍ତ ହେବି ପାରିଜାତ ବୃକ୍ଷ ।

ନାରଦ : ସେ ବୃକ୍ଷ ତ ମିଳେ ଯାହା ନନ୍ଦନକାନନେ
ମର୍ତ୍ତ୍ୟ ବକ୍ଷେ ଦୁର୍ଲଭ ସେ ବୃକ୍ଷ ।

କୃଷ୍ଣ : କଥା ଦେଇଅଛି ସତ୍ୟଭାମାତୁଲେ
ଅନ୍ୟଥା ହୋଇଲେ ପୁଣି ଅନର୍ଥ ଘଟିବ
ତେଣୁ ଯେକୌଣସିମତେ
ମୁଁ ଆଣିବାକୁ ଚାହୁଅଛି ପାରିଜାତ ବୃକ୍ଷ ।

ନାରଦ : ଗୋପନରେ କେବଳ ସମ୍ଭବ ତାହା....

କୃଷ୍ଣ : ଗୋପନରେ ?

ନାରଦ : ହଁ, ଯଦି ପ୍ରଭୋ ଗୋପନରେ ହରଣ କରନ୍ତି ତାଙ୍କୁ ନନ୍ଦନବନରୁ

ତାହା ହେଲେ ପ୍ରାପ୍ତ ହେବେ ପାରିଜାତ ବୃକ୍ଷ ।

କୃଷ୍ଣ : ହେଲେ ପଛେ ହେଉ ତାହା ଗୋପନ ଭାବରେ

ନିଶ୍ଚେ ଯାଇ ଆଣିବି ମୁଁ ପାରିଜାତ ବୃକ୍ଷ ।

ନାରଦ : ନାରାୟଣ ନାରାୟଣ ନାରାୟଣ ।

କୃଷ୍ଣ : ଅଦ୍ୟ ନିଶାର୍ଦ୍ଧରେ ପ୍ରବେଶି ସେ ସ୍ଥାନେ

କରିବି ମୁଁ ଅଭୀଷ୍ଟ ସାଧନ (ଯାଆନ୍ତି)

ନରିଆ : ପରିଆ ଭାଇରେ ପରିଆ ଭାଇ

ପରିଆ : ନନ୍ଦନ ବନକୁ ରହିଥା ଚାହିଁ ।

ନରିଆ : ସ୍ତିରୀକୁ ସନ୍ତୁଷ୍ଟ କରିବା ପାଇଁ

ପରିଆ : କୃଷ୍ଣ ହେଉଛନ୍ତି କି ହାଇଁପାଇଁ ।

ନରିଆ : ମନାଇବା ପାଇଁ ସ୍ତିରୀଙ୍କ ମନ

ପରିଆ : ଚୋରିକରିବାକୁ ଗଲେ ବହନ । (ନାରଦ ଓ ଇନ୍ଦ୍ର ଆସନ୍ତି)

ଇନ୍ଦ୍ର : ଚୋରିହେବ ପାରିଜାତ ବୃକ୍ଷ ଅଦ୍ୟ ନିଶାର୍ଦ୍ଧରେ ?

କିଏ ସେ ଦୁର୍ବୃତ୍ତ । କାହାର ଏ ଦୁଃସାହସ ।

ଇନ୍ଦ୍ର ସଂଗେ ସାଜିବ ବଇରୀ ?

ନାରଦ : ସିଏ ଜଣେ ମର୍ତ୍ତ୍ୟର ମାନବ ।

ନିଜ ନାରୀ ମନରକ୍ଷା ପାଇଁ ସାଜିଛି ତସ୍କର ।

ଇନ୍ଦ୍ର : ଅସମ୍ଭବ ପ୍ରୟାସ ତାହାର ।

ନାରଦ : ସିଏ ନୁହେଁ ସାମାନ୍ୟ ମାନବ, ସହଜରେ ଧରିନେବ ତାଙ୍କୁ ।

ସିଏ ଜଣେ ଶ୍ରେଷ୍ଠ ମାୟାଧର ।

ମାୟାବଳେ ପଶିବ କାନନେ

ଏବଂ ଅନାୟାସେ କରିବ ତା' ଅଭୀଷ୍ଟ ପୂରଣ !

ଇନ୍ଦ୍ର : ଯିଏ ହେଲେ ହେଉ ପଛେ ଯେତେ ଶକ୍ତିଶାଳୀ

ଇନ୍ଦ୍ରଙ୍କ ଦୃଷ୍ଟିକୁ କେବେ ନ ପାରିବ ଫାଙ୍କି

ରେ କାହିଁ ଅଛ, କାହିଁ ଅଛ ଉଦ୍ୟାନରକ୍ଷକ !

ଆସ ବେଗେ ମୋହର ସମୀପେ ।

ନାରଦ : ନାରାୟଣ ନାରାୟଣ ନାରାୟଣ ।

ନରିଆ : ଆଦେଶ ଦିଅନ୍ତୁ ଦେବେଶ ।

ପରିଆ : ପାଳିବୁ ଏକ୍ଷଣି ଅବଶ୍ୟ ।

ଇନ୍ଦ୍ର : ଶୁଣ ଶୁଣ ଆହେ ଉଦ୍ୟାନରକ୍ଷକ ।

ମର୍ତ୍ତ୍ୟବାସୀ ଜଣେ ପଣ କରି ଆସୁଅଛି ନନ୍ଦନବନକୁ

ହରଣ କରିବାପାଇଁ ପାରିଜାତ ବୃକ୍ଷ,

କିନ୍ତୁ ମନେରଖ ଦୂତଗଣ

କେହି ଜଣେ ସୁଦ୍ଧା ପଶି ନ ପାରନ୍ତି ଯେହ୍ନେ ନନ୍ଦନକାନନେ

ସ୍ୱର୍ଗର ଗୌରବ ରକ୍ଷା କରିବା ନିମନ୍ତେ

ଅର୍ଦ୍ଧରାତ୍ରୀ ଶେଷ ଯାମଯାଏ

ସତର୍କରେ ଜଗିରୁହ ନନ୍ଦନବନକୁ ।

ବନ୍ଦୀ କର ଦୁରାଚାରୀ କିଏ

ଆସୁଅଛି ସ୍ୱର୍ଗ ଉଦ୍ୟାନକୁ ।

ଉଭୟେ ଯଥାଆଜ୍ଞା ପ୍ରଭୋ !

| | |
|---|---|
| ଇନ୍ଦ୍ର | ରେ ମର୍ତ୍ତ୍ୟର ମାନବ । ତୁଚ୍ଛାଟାରେ କରୁଅଛୁ ଏତେ ବଡ଼ ଆଶା ।<br>ନିଷ୍ଫଳ ହୋଇବ ନିଶ୍ଚେ ତୋହର ପ୍ରଚେଷ୍ଟା (ଯାଆନ୍ତି) |
| ନାରଦ | ନାରାୟଣ ନାରାୟଣ ନାରାୟଣ (ଯାଆନ୍ତି) |
| ନରିଆ | ପରିଆରେ ଭାଇ ପରିଆ |
| ପରିଆ | ଏପଟକୁ ପେଞ୍ଚେ ଘୂରିଆ । |
| ନରିଆ | ଦେଖୁଥା ପୁଅ ଦେଖୁଥା |
| ପରିଆ | ସେପଟେ ନଜର ରଖିଥା । |
| ନରିଆ | ଦିନ ଯାଇ ସଂଜ ହୋଇଲା ଆସି |
| ପରିଆ | ତା'ପରେ ହୋଇଲା ଗଭୀର ନିଶି । |
| ନରିଆ | ଏବେ ଆସିବ ତସ୍କର ମର୍ତ୍ତ୍ୟରୁ |
| ପରିଆ | ଚୋରିକରିନବ ସ୍ୱର୍ଗରୁ । |
| ନରିଆ | ଏଇ ଆସିଲାରେ ପୁଅ ଆସିଲା |
| ପରିଆ | ମର୍ତ୍ତ୍ୟରୁ ତସ୍କର ଆସିଲା । |
| ନରିଆ | ନରିଆ ହାତରେ ଶିକୁଳି |
| ପରିଆ | ପରିଆ ହାତରେ ଗୋପାଳି |
| ନରିଆ | ଘୁଞ୍ଚିଆ ରେ ଭାଇ ଘୁଞ୍ଚିଆ |
| ପରିଆ | ଏପଟକୁ ଟିକେ ଭିଡ଼ିଆ । (ଆସନ୍ତି କୃଷ୍ଣ ଛପିଛପି) |
| କୃଷ୍ଣ | ସମ୍ପୂର୍ଣ୍ଣ ନିର୍ଜ୍ଜନ, ସଂପୂର୍ଣ୍ଣ ଅଂଧାର, କେହି ନାହିଁ ଦେଖିବାକୁ ମୋତେ<br>ଚନ୍ଦ୍ରସୂର୍ଯ୍ୟେ ମଧ ହେବନି ଗୋଚର<br>ବେଶ୍ ନେଇଯାଏ ପାରିଜାତ ବୃକ୍ଷ<br>(ଉପାଡ଼ିବାକୁ ଉଦ୍ୟତ ହୁଅନ୍ତେ ନରିଆ ପରିଆ ଦୌଡ଼ିଆସନ୍ତି ।) |
| ନରିଆ | ରହରେ ରହରେ ତସ୍କର |

| | |
|---|---|
| ପରିଆ | ଆମେ ଜଗିଛୁ ଚନ୍ଦ୍ର ଓ ଭାସ୍କର । |
| ନରିଆ | ଛାର ତୁ ମର୍ତ୍ତ୍ୟର ମାନବ |
| ପରିଆ | ଭାବିଛୁ ଆମକୁ ଅଥର୍ବ ? |
| ନରିଆ | ଲଗାରେ ଲଗାରେ ଶିକୁଳି |
| ପରିଆ | ଏଥର ଯିବୁ କି ମୁକୁଳି ? (ଧରିଲେ) |
| କୃଷ୍ଣ | ଏଁ ! ଏ କି ଅଘଟଣ ଘଟିଲା ସହସା<br>ସ୍ୱର୍ଗଲୋକେ ପଡ଼ିଯିବ ହୁରି<br>ଚୋର ବୋଲି ହୋଇବି ସାବ୍ୟସ୍ତ (ଆସନ୍ତି ଇନ୍ଦ୍ର) |
| ଇନ୍ଦ୍ର | କାହିଁ ! କାହିଁ ସେ ଦୁର୍ମତି ତସ୍କର ।<br>ରେ ମୂର୍ଖ ତସ୍କର, ଜାଣୁ ଏ ନୁହେଁ ମର୍ତ୍ତ୍ୟର ଶାସନ<br>ଖସିଯିବୁ ଚୋରିକରି ରାଜ୍ୟର ସଂପଦ ।<br>ସ୍ୱର୍ଗପତି ଇନ୍ଦ୍ରହସ୍ତେ କଠୋର କ୍ଷମତା<br>ଇଚ୍ଛାକଲେ ଦଣ୍ଡିପାରେ ନିର୍ମମ ଭାବରେ ।<br>କହ କହରେ ପାଷଣ୍ଡ<br>କି ନିମନ୍ତେ ଚୌର୍ଯ୍ୟବୃତ୍ତି କରିଛୁ ଗ୍ରହଣ<br>ଏବଂ ମର୍ତ୍ତ୍ୟ ଛାଡ଼ି ସ୍ୱର୍ଗପୁରେ ହେଲୁ ଉପଗତ ? ରକ୍ଷୀ, ଖୋଲିଦିଅ ଛଦ୍ମବେଶ ତା'ର ।<br>(ଛଦ୍ମବେଶ ଖୋଲିଦିଅନ୍ତେ ଶ୍ରୀକୃଷ୍ଣଙ୍କୁ ଦେଖି ଉଭୟେ ଲଜ୍ଜିତ ହେଲେ ।) |
| ଇନ୍ଦ୍ର | (ବିସ୍ମୟରେ) ପ୍ରଭୋ ! ଦ୍ୱାରକାପତି ! ଆପଣ ! ମାର୍ଜନା କରନ୍ତୁ ପ୍ରଭୋ ଏ ମୂଢ଼ ଉଦ୍ୟାନରକ୍ଷକେ<br>ନ ଚିହ୍ନିପାରି କରିଛନ୍ତି ଅନୁଚିତ କର୍ମ । |

କୃଷ୍ଣ		ନାହିଁ ଦେବରାଜ ! ସେମାନେ ତ କରିଛନ୍ତି ତାଙ୍କର କର୍ତ୍ତବ୍ୟ ।

ଇନ୍ଦ୍ର		ଅର୍ଥାତ୍ ?

କୃଷ୍ଣ		ତସ୍କର ମୁଁ ଆସିଥିଲି ନନ୍ଦନବନକୁ
ଚୋରାଇନେବାକୁ ଏକ ପାରିଜାତ ବୃକ୍ଷ ।

ଇନ୍ଦ୍ର		ପ୍ରଭୁ ନିଜେ ତସ୍କର ରୂପରେ.. କି କାରଣେ ପ୍ରଭୋ !

କୃଷ୍ଣ		ଯେ କାରଣେ ସୃଷ୍ଟିର ପୁରୁଷ
କାଳେ କାଳେ ବଂଧାଥାଏ ନାରୀ ପଣତରେ
ଅସନ୍ତୁଷ୍ଟ ନାରୀ ମନବିନୋଦନ ପାଇଁ
ପୁରୁଷ ବି ଚୋରିକରେ ଅବା କରେ ପାପ
ପାରିଜାତ ପୁଷ୍ପ ଏକ ଦେଇଥିଲି ରକ୍ମିଣୀ ଗଭାରେ
ଦେଖିନେଲେ ସତ୍ୟଭାମା
କରିଲେ କନ୍ଦଳ,
ମନାଇବା ପାଇଁ ତାଙ୍କ ଅଭିମାନୀ ମନ
କହିଦେଲି ଆଣିଦେବି ପାରିଜାତ ବୃକ୍ଷ
ସେଥିପାଇଁ ଗୋପନରେ ପଶିଲି ସ୍ୱର୍ଗରେ
ନିଶାର୍ଦ୍ଧରେ ଚୌର୍ଯ୍ୟବୃତ୍ତି ସଂପାଦନ ପାଇଁ ।

ନାରଦ		(ଆସନ୍ତି) ନାରାୟଣ ନାରାୟଣ ନାରାୟଣ ।

କୃଷ୍ଣ		ହେ ଦେବର୍ଷି ! ଏ କି ହେଲା ଦୁର୍ବିପାକ !

ନାରଦ		ପ୍ରଭୋ, ପରଖିବା ପାଇଁ ପୁଣି ନାରୀର ଶକତି
ଖେଳଟିଏ ଖେଳିଦେଲି ନରଦେହୀ ନାରାୟଣପୁରେ
ଦେଖିଲି ନାରୀପାଇଁ ଚୋରିକରେ ନର, ପାପକରେ ନର ।
ଅର୍ଦ୍ଧାଙ୍ଗିନୀ ସିଏ, ଅର୍ଦ୍ଧଅଂଗ ତାହାର ଅଧୀନେ

ତେଣୁ ସ୍ତ୍ରୀ ମନ ସନ୍ତୁଷ୍ଟ ସକାଶେ ପୁରୁଷର ଏକାନ୍ତ କାମନା ।

ସ୍ତ୍ରୀ ଯଦି ସତ୍ୟେ ଧର୍ମେ ହୁଅନ୍ତା ସନ୍ତୁଷ୍ଟ, ତେବେ

ନର କିମ୍ବା କରନ୍ତା ଅଧର୍ମ ?

ସ୍ତ୍ରୀ ଯଦି ଦିଅନ୍ତା ପ୍ରେରଣା ଚଳିବାକୁ ସତ୍ୟପଥେ ଅବା ଧର୍ମପଥେ
ଆନନ୍ଦରେ ଚାଲନ୍ତା ସେ।

କିନ୍ତୁ ସ୍ତ୍ରୀ ଯଦି ପାପ ପାଇଁ ଚୋରି ପାଇଁ ଯୋଗାଏ ପ୍ରେରଣା,

ଚୌର୍ଯ୍ୟ ଧନେ ହୁଏ ଉତ୍ସାହିତ, ହୁଏ ଆନନ୍ଦିତ

କି କରିବ ବିଚରା ପୁରୁଷ !

ଇନ୍ଦ୍ର ଧନ୍ୟ ପ୍ରଭୋ ଧନ୍ୟ ତୁମ୍ଭ ଲୀଳା

କଳଙ୍କ ରହିଲା ପୁଣି କାଳକାଳ ପାଇଁ

ସ୍ତ୍ରୀ ପାଇଁ ଚୋର ହେଲେ ସ୍ୱୟଂ ନାରାୟଣ ।

କୃଷ୍ଣ ତେଣୁ ହେ ସ୍ତ୍ରୀ ଜାତି !

ତୁମ୍ଭ ହସ୍ତେ ବଂଧା ଯେଣୁ ପୁରୁଷର ମନ

ସତର୍କରେ ରହିଥାଅ ସଦା

ଉତ୍ସାହିତ କରନାହିଁ ଦୁର୍ନୀତି କର୍ମକୁ

ପ୍ରଶ୍ନଟିଏ କର ସଦା ଆପଣା ସ୍ୱାମୀକୁ

କେଉଁଠୁ ଆସିଲା ଅର୍ଥ କିପରି ଆସିଲା

ବର୍ଜନ କରିବ ସଦା ଦୁର୍ନୀତି ଅର୍ଥକୁ ।

ନତୁବା ସ୍ୱାମୀ ଯଦି କଳଙ୍କିତ ହୁଏ

କି ସୁଖ ପାଇବ ତୁମ୍ଭେ ?

(ନରିଆ ପରିଆ ନାଚିଲେ)

ନରିଆ ଶୁଣୁଥାରେ ଭାଇ ଶୁଣୁଥା

| | |
|---|---|
| ପରିଆ | ମନେ ମନେ ହେଜ କରୁଥା । |
| ନରିଆ | ସ୍ତିରୀ ପ୍ରୀତି ପାଇଁ ନାରାୟଣ |
| ପରିଆ | ସରଗେ ହୋଇଲେ ବଂଧନ । |
| ନରିଆ | ତେଣୁ ଶୁଣୁଥିବ ମୋର ଭଉଣୀ |
| ପରିଆ | କରୁଥିବ ଭଲ କରଣି । |
| ନରିଆ | ଜଗୁଥିବ ସ୍ୱାମୀ କର୍ମକୁ |
| ପରିଆ | ପାଳୁଥିବ ସ୍ତିରୀ ଧର୍ମକୁ । |
| ନରିଆ | ପାରିକାତେ ମନ କରିବନି |
| ପରିଆ | ପଛେ ଲୋକହସା ହୋଇବନି । (ଢିତା ଉଠିଯାଇ ଟି.ଭି. ପରଦା ଟାଣି ଦିଏ, ସୁଇଚ୍ ମାରି) |
| ମେଘା | ମାମି । ଟି.ଭି. ବନ୍ଦ୍ କରିଦେଲ କାହିଁକି, ବଢ଼ିଆ ନାଟକ ଦେଉଥିଲା । ନୁହେଁ ? |
| ଢିତା | ହଁ, ବଢ଼ିଆ ନାଟକ । |
| ମେଘା | ମାମି । ସିଏ ଭଗବାନ ନା ? |
| ଢିତା | ହଁ, |
| ମେଘା | ସେ ଚୋରିକଲେ ? ମାମି, ଭଗବାନ ଚୋରିକରନ୍ତି ? |
| ଢିତା | ହଁ । |
| ମେଘା | ନାଇଁ ମାମି । ଭଗବାନ ଚୋରିକରନ୍ତିନି । ତାଙ୍କ ସ୍ତ୍ରୀ ପାଇଁ ସେ ଚୋରିକଲେ, ହଁ ନା ? |
| ଢିତା | ମେଘା । ତୋ'ର କ'ଣ ପାଠପଢ଼ା ନାହିଁ ? ଯା, ଚୁପ୍‌ଚାପ୍ ବସି ପାଠ ପଢ଼୍। |
| | (ମେଘା ଦବିଯାଏ, ଭିତରକୁ ଯାଏ ଢିତା । ଏପଟସେପଟ ହୋଇ ଅନେକ କିଛି ଭାବିଯାଏ । ଭାବୁଭାବୁ ବସିପଡ଼େ । ଭାବନା ଭିତରେ |

କଲିଂବେଲ୍ ବାଜେ । ଜିତା ଉଠିଯାଏ ଓ କବାଟ ଖୋଲେ । ସିଦ୍ଦିକ ଓ ପଛେ ପଛେ ଚନ୍ଦ୍ର ଆସନ୍ତି)

ଜିତା	ଆରେ, ସିଦ୍ଦିକ୍ ବାବୁ, ଆସନ୍ତୁ ।

ସିଦ୍ଦିକ୍	ସରି ଭାଉଜ (ଚନ୍ଦ୍ର ହାତରେ ହେଣ୍ଡକଫ୍ ଦେଖାଏ)

ଜିତା	ଏ କ'ଣ ... ତମେ ?

ଚନ୍ଦ୍ର	ହଁ ।

ଜିତା	ନା।

ସିଦ୍ଦକ	ହଁ ଭାଉଜ । ଏ ଖାତା ଦେଖା ସେଣ୍ଟରରେ ଏମିତି ଦୁର୍ନୀତି ହେଉଛି ବୋଲି କିଏ ଭିଜିଲାନ୍ସରେ ରିପୋର୍ଟ କରିଦେଇଛି । ତେଣୁ ଆଜି ଭିଜିଲାନ୍ସ ପକ୍ଷରୁ ଅଚାନକ ସେଣ୍ଟର ଉପରେ ଚଢ଼ାଉ ହେଲା । ସମସ୍ତେ ଖସିଗଲେ, କିନ୍ତୁ ଚନ୍ଦ୍ର ପକେଟରୁ ଗୋଟେ ରୋଲ୍‌ନମ୍ବର ଓ କିଛି ଟଂକା ବାହାରିଲା.. ତେଣୁ..

ଚନ୍ଦ୍ର	ଭିଜିଲାନ୍ସ ମୋତେ ପୁଲିସକୁ ହେଣ୍ଡଅଭର କରିଦେଲା ।

ଜିତା	ନା ନା, ମିଛକଥା ।

ଚନ୍ଦ୍ର	ମୁଁ ଏବେ ଜେଲ୍ ହାଜତକୁ ଯାଉଛି । ଖାଲି ଯିବା ବାଟରେ ତମକୁ ଟିକିଏ ଦେଖା କରିଯିବାକୁ ଇଚ୍ଛାକଲି । ସିଦ୍ଦିକ୍ ବି ବଂଧୁତ୍ୱ ଖାତିରରେ....

ଜିତା	ସିଦ୍ଦିକ୍ ବାବୁ, ଆପଣ ଥାଉଁ ଥାଉଁ.....

ସିଦ୍ଦିକ୍	ମୋର କିଛି କରିବାର ନାହିଁ, ଭାଉଜ । କେଶ୍‌ଟା ଭିଜିଲାନ୍ସ ହେଣ୍ଡେଲ୍ କରୁଛି । ତଥାପି ଆଜି ରାତିଟା ପାହିଯାଉ, ବେଲ୍ ଆଣିବାକୁ ଚେଷ୍ଟା କରିବା ।

ଚନ୍ଦ୍ର	ନାଇଁ, ଖବରଦାର ! ମୋତେ ବେଲ୍‌ରେ ଆଣିବାକୁ ଚେଷ୍ଟା କରିବନି । ମୁଁ ଦୋଷ କରିଛି । ଦଣ୍ଡ ପାଇବା ପାଇଁ ସେଇଠି ପଡ଼ିରହିବି। ଏଠି ଏ ସମାଜରେ ଆସି ମୋର ଏ କଳଙ୍କିତ ମୁହଁ ଦେଖାଇ ପାରିବିନି । ଜିତା, ମୋର ତମକୁ ଅନୁରୋଧ, ତମେ

ମେଘାକୁ କିଛି କହିବନି । ମୁଁ ଯାଉଛି, ଯଦି କିଛି ଅସୁବିଧା ହୁଏ ବାପାଙ୍କ ପାଖକୁ ଚାଲିଯିବ । ଆଉ ବା ଆମର ନିଜର କିଏ ଅଛି ? ଚାଲ୍ ସିଦ୍ଧିକ ! ମେଘା ଆସିବା ପୂର୍ବରୁ....(ଦେଖିନିଅନ୍ତି ମେଘା ଆସିବାର)

ମେଘା : ବାପି.. ! ଏ କ'ଣ, ବାପି ! ତମ ହାତରେ . .. ଏ କ'ଣ ଅଂକଲ.. ବାପିଙ୍କ ହାତରେ (ଦେଖେ) ତମେ କ'ଣ ବାପିଙ୍କୁ ବାନ୍ଧିନେଉଛ ? ତମେ ପରା ଚୋରଙ୍କୁ ବାନ୍ଧ ? ବାପି କ'ଣ ଚୋର ? ଅଂକଲ, କିଛି କହୁନ କାହିଁକି ? ବାପି ! ତମେ, ତମେ କ'ଣ ଚୋରି କରିଛ ?

ଚନ୍ଦ୍ର ହଁ ମେଘା । ମୁଁ ଚୋର । ମୁଁ ଚୋରିକରିଛି ।

ମେଘା କ'ଣ ହେଲା ? ତମେ ଚୋରିକଲ ? ବାପି ତମେ ପରା କୁହ ଚୋରିକରିବା ପାପ ! ତମେ ଏ ପାପ କଲ କାହିଁକି ? ଆମର କ'ଣ ଦରକାର ? ସେହି ଟଂକାରେ ଟି.ଭି. ଆଣିଛ କି ? ଏ ଟି.ଭି. ଆମର ଦରକାର ନାହିଁ । ମାମି ! ଏ ଟି.ଭି. ଆମେ ଦେଖିବାନି । ଦେଖିଲନି, ଟି.ଭି.ରେ ପରା ଭଗବାନ ଚୋରିକଲେ ? ମାମି ! ତମେ ବାପିଙ୍କୁ ଚୋରିକରିବାକୁ କହିଲ କି ? ଯେମିତି, ଭଗବାନଙ୍କୁ ତାଙ୍କ ସ୍ତ୍ରୀ କହିଥିଲେ ! ଅଙ୍କଲ ! ମୋ ବାପିଙ୍କୁ ଛାଡ଼ିଦିଅ, ଅଂକଲ ! ମୋ ବାପି ଭାରି ଭଲ । ସେ କେବେ ଚୋରିକରନ୍ତିନି, ଅଂକଲ ।

ସିଦ୍ଧିକ୍ ମେଘା ! ନାଇଁ, ତମ ବାପି ଚୋର ନୁହଁନ୍ତି । ମୁଁ ତାଙ୍କୁ ଛାଡ଼ିଦେବି ।

ମେଘା ସତରେ ଅଂକଲ ! ବାପି ନ ଥିଲେ ମୁଁ ଶୋଇବି କେମିତି ?

ସିଦ୍ଧିକ୍ ମୁଁ ସାଂଗରେ ତମ ବାପିଙ୍କୁ ନେଇଆସିବି ।

ଚନ୍ଦ୍ର ଯାଅ ମେଘା ! ଚୁପ୍‌ଚାପ୍ ଖାଇ ଦେଇ ମାମି ପାଖରେ ଶୋଇପଡ଼ିବ ।

ମେଘା ନା ନା ବାପି ! ତମେ ମୋତେ ଗପ କହିବ ।

ଚନ୍ଦ୍ର ମାମି କହିବେ, ଚାଲ୍ ସିଦ୍ଧିକ୍ ।

ମେଘା ନା ମୋତେ କୁହ, ବାପି ! ତମେ କାହିଁକି ଚୋରିକଲ !

ଚନ୍ଦ୍ର ତମ ମାମିଙ୍କୁ ପଚାର । ଜିତା ମେଘା ପ୍ରଶ୍ନର ଉତ୍ତର ଦିଅ । ଆ ସିଦ୍ଧିକ୍ ।

ସିଦ୍ଧିକ୍	ମୁଁ ଆସୁଛି ଭାଉଜ । (ଯାଆନ୍ତି)

ମେଘା	ମାମି ! କୁହ ମାମି ! ବାପି କାହିଁକି ଚୋରିକଲେ ? କୁହ ! କୁହ !

ଛିତା	(ପିଟିଲେ) ଚୁପ୍ କର ! (ସେତେବେଳକୁ ମେଘା ବହି ଖଣ୍ଡେ ଧରି ଛିଡ଼ାହୋଇଥାଏ - ଛିତାର ଭାବନା ଭାଂଗିଯାଏ ।)

ମେଘା	କ'ଣ ହେଲା, ମାମି ! ଏ ଅଂକଟା ବୁଝେଇଦେବାକୁ ସେତେବେଳୁ କହୁଛି, ତମେ କ'ଣନା ମୋତେ ପିଟୁଛ !

ଛିତା	ଆରେ ନା ମା ! ତମ ବାପି ଆସିନାହାନ୍ତି ତ ! ... ତମେ ଯାଅ ପଢ଼ିବ । ବାପି ଆସିଲେ ବୁଝେଇଦେବେ ।

ମେଘା	ତମ ମୁଣ୍ଡ ବିନ୍ଧୁଛି, ନୁହେଁ ? (ଯାଏ)

ଛିତା	(ଏଣୁତେଣୁ ଗୁଡ଼ାଏ ଭାବିଯାଏ - ରାତି ଦଶଟା ବାଜିବାର ସୂଚନା ମିଳେ । ଛିତା ଆହୁରି ବ୍ୟସ୍ତ ହୋଇପଡ଼େ) ଏ ସମୟରେ କଲିଂବେଲ୍ ବାଜେ । ଛିତା ତରିତରି ଉଠେ । ଯାଏ ଓ କବାଟ ଖୋଲେ - ପଶିଆସନ୍ତି ଚନ୍ଦ୍ର, ମଦ ପିଇ, ଛିତା ସ୍ତବ୍ଧ)

ଛିତା	ତମେ...

ଚନ୍ଦ୍ର	ହଁ ଗିରିଜା ମହାନ୍ତି .. ମାନିବାକୁ ପଡ଼ିବ, ଏବେ ଆଉ ଭୟ ନାହିଁ । ଜିତା, ଆମେ ଗୋଟିଏ ସୁନାଖଣିର ସଂଧାନ ପାଇଯାଇଛୁ । ଯାହା ଦରକାର, ସେଠି ସବୁ ଅଛି। କହ, କ'ଣ ଦରକାର ? ଟଂକା, ସୁନା ? କ'ଣ, କିଛି କୁହନ ! ଓ ଟିକିଏ ଡେରି ହୋଇଗଲା , ନୁହେଁ ? ଆଜି ମହାନ୍ତିବାବୁ ଗୋଟେ ପାର୍ଟି ଦେଲେ ତ ! ସେ ପାର୍ଟିରେ ଓ କି ଇଣ୍ଟେରେଷ୍ଟିଂ ! ମୁଁ ଜୀବନରେ କେବେ ଏମିତି ପାର୍ଟିନା, ଏଟେଣ୍ଡ୍ କରିନି ତ ! ବହୁତ ମଜା ଲାଗିଲା । ଆରେ ଏ କ'ଣ.. ଏମିତି ଦୂରେଇଯାଉଛ ଯେ ! ଟିକିଏ ବାସୁଛି, ନୁହେଁ ! ପ୍ରଥମେ ପ୍ରଥମେ ଏମିତି ବାସିବ, ତା'ପରେ ଅଭ୍ୟାସରେ ପଡ଼ିଗଲେ ଜମା ଜଣା ବି ଯିବନି । ମୁଁ ତ ବେଶି ନେଇନି, ଜମା ଗିଲାସେ - ଆଉ ମଦ ବା ଡ୍ରିଙ୍କ୍ସଟା ଆଜିକାଲି ଗୋଟେ ଫେସନ୍, ଷ୍ଟାଟସ୍‌ର ସିମ୍ବଲ୍ । ତା'ଛଡ଼ା, ଉପରକୁ ଉଠିବାକୁ ଗଲେ ଶିଢ଼ିର ପ୍ରଥମ ପାହାଚରେ ମଦ । ମୁଁ ତ ସେହି ପ୍ରଥମ ପାହାଚରେ ପାଦ ଦେଇଛି ।

ଜିତା ନା !

ଚନ୍ଦ୍ର ନା ?

ଜିତା ତମେ ଭିତରକୁ ଯାଇପାରିବନି, ମେଘା ଅଛି।

ଚନ୍ଦ୍ର ମେଘା ଅଛି ? ଥାଉ ।

ଜିତା ତା' ସାମ୍ନାକୁ କି ମୁହଁ ନେଇଯିବ ? ଏଇ ମୁହଁ, ଏଇ ଭକ୍‌ଭକ୍ ଗଂଧ, ଏଇ ଟଳଟଳ ପାଦ ?

ଚନ୍ଦ୍ର ଜିତା !

ଜିତା ସେଇଠି ସେମିତି ଛିଡ଼ାହୁଅ ।

ଚନ୍ଦ୍ର କାହିଁକି ?

ଜିତା ତମର ଏବେ ହୋସ୍ ନାହିଁ, ଅପେକ୍ଷା କର, ହୋସ୍ ଆସୁ ।

ଚନ୍ଦ୍ର ହୋସ୍ !

ଜିତା ହଁ, (ସେମିତି .. ଶୋଇଯାଆନ୍ତି । ରାତି ପାହିଯାଏ, ସମସ୍ତେ ସ୍ୱାଭାବିକ ହୁଅନ୍ତି)

ଚନ୍ଦ୍ର (ଉଠିପଡ଼ି) ଏ କ'ଣ, ଡ୍ରଇଁରୁମ୍‌ରେ ! ରାତି ପାହିଗଲା, ଜିତା ! ଜିତା !

ଜିତା (ଉଠିପଡ଼ି) କ'ଣ ?

ଚନ୍ଦ୍ର ମେଘା କାହିଁ ?

ଜିତା ଭୟ କରନି ! ସେ କିଛି ଜାଣିପାରିନି, ଶୋଇପଡ଼ିଛି । କିନ୍ତୁ..

ଚନ୍ଦ୍ର ସରି, ଫାଷ୍ଟ ଟାଇମ୍ ତ ! ଟିକିଏ ଓଭର ହୋଇଗଲା । ଛାଡ଼, ହଁ ଏଇ ନିଅ, ଏ ରୋଲନମ୍ବରଟା ମୋ ପର୍ସରେ ରଖିଦିଅ।

ଜିତା ରୋଲ୍ ନମ୍ବର ? (ନିଅନ୍ତି ଓ ଦେଖନ୍ତି)

ଚନ୍ଦ୍ର ହଁ, ମହାନ୍ତିବାବୁଙ୍କ ନାତୁଣୀର । ତାକୁ ୟୁନିଭରସିଟିରେ ଫାଷ୍ଟ କରିବାକୁ ଚାହୁଁଛନ୍ତି । ସମସ୍ତଙ୍କୁ ଧରିସାରିଲେଣି - ମୋ ପାଖରେ.. ଇଂରାଜି ।

ଜିତା — ତମେ ବି ଧରାପଡ଼ିଯାଇଛ ?

ଚନ୍ଦ୍ର — ସମସ୍ତେ ତ କରୁଛନ୍ତି, ମୁଁ ବା କାହିଁକି ଧର୍ମବକ ସାଜିବି ? ଏମିତି ଉପାସରେ ଲୁତୁବୁତୁ ହେଉଥିବି, ଦାରିଦ୍ର୍ୟର ଯନ୍ତ୍ରଣାରେ ଛଟପଟ ହେଉଥିବି ?

ଜିତା — ବାସ୍ ଏତିକିରେ, ଏଇ ସାମାନ୍ୟ ଗିଲାସେ ମଦ ଭିତରେ ନିଜର ମଣିଷପଣିଆ, ନିଜର ବ୍ୟକ୍ତିତ୍ୱ, ଆଦର୍ଶବାଦ, ସବୁତକ ଗୋଳେଇ ଫେଣ୍ଟି ପିଇଦେଲ !

ଚନ୍ଦ୍ର — ଜିତା !

ଜିତା — ମୁଁ ତମ ସ୍ତ୍ରୀ ! ମୁଁ ତମକୁ ପ୍ରଶ୍ନ କରୁଛି । ମୋ ପ୍ରଶ୍ନର ଉତ୍ତର ଦେଇପାରିବ ? ତମର ତ ଦରମା ମାସକୁ ପାଞ୍ଚହଜାର, ତମେ ଏତେଟଙ୍କା ଆଣିଲ କୋଉଠୁ ? ଏ ଟି.ଭି. ଆସିଲା କେମିତି ? (ପ୍ରତିଧ୍ୱନି ହୁଏ)

ଚନ୍ଦ୍ର — ଜିତା ! ତମେ ମୋର ସ୍ତ୍ରୀ, ମୋ ରୋଜଗାର ଉପରେ ତମେ ନିର୍ଭରଶୀଳ । ତେଣୁ ଏ ପ୍ରଶ୍ନ ପଚାରିବାର ଅଧିକାର ତମର ନାହିଁ ।

ଜିତା — ଅଛି ! କିଏ ନ ଚାହେ, ତା' ସ୍ୱାମୀ ଜଣେ ଦୁର୍ନୀତିମୁକ୍ତ ନିଷ୍କଳଙ୍କ ବ୍ୟକ୍ତିତ୍ୱର ଅଧିକାରୀ ହେଉ ! ମୁଁ ତ ସେତିକି ଚାହିଥିଲି । ସେତିକି ସମ୍ବଳ କରି ଘରଛାଡ଼ି ଏକ ନିର୍ମଳ ବ୍ୟକ୍ତିତ୍ୱର ହାତ ଧରିଥିଲି ! ତମେ କ'ଣ ସେହି ଚନ୍ଦ୍ର ! କୁହ ! ତମକୁ ସମ୍ପୂର୍ଣ୍ଣ ରାହୁଗ୍ରାସ କରିବା ପୂର୍ବରୁ ତମେ ଆତ୍ମପ୍ରକାଶ କର । ଏ ଇଚ୍ଛା କ'ଣ ତମର ନାହିଁ ? ଉପାସ ରହିବାରେ କ'ଣ ଶାନ୍ତି ପାଇନ ? ଯନ୍ତ୍ରଣାରେ ଭିଜିଯାଇ କ'ଣ ତୃପ୍ତି ପାଇନ ? ଦୁର୍ନୀତିରେ ବୁଡ଼ିଗଲେ କ'ଣ ମୁକ୍ତି ପାଇବ ?

ଚନ୍ଦ୍ର — ଜିତା !

ଜିତା — ଜିତା ନୁହେଁ, ମୁଁ ଅପରାଜିତା (ରୋଲ୍‌ନମ୍ବର ଲେଖାଥିବା କାଗଜକୁ ଚିରିଦିଅନ୍ତି । ଚନ୍ଦ୍ର ଚାହିଁଥାଆନ୍ତି, ଏହି ସମୟରେ ସିଦ୍ଧିକ ତରିତରି ପଶିଆସେ, ଏକ ଟଙ୍କାଆଟାଚି ଧରି)

ସିଦ୍ଧିକ୍ — ଭାଉଜ, ପ୍ଲିଜ୍ ହେଲ୍ପ ମି, ମୋତେ ରକ୍ଷା କରିଦିଅ । ମୋ ଘର ଉପରେ ଭିଜିଲାନ୍ସ ରେଡ୍ ଆରମ୍ଭ କରିଦେଇଛି । ମୁଁ ଥାନାରେ ଥିଲି ।

ମୋ ହାତରେ ଏ ଅଶୀହଜାର ଟଂକା ଅଛି । ଚନ୍ଦ୍ର ତ ମାନିବନି, ଆପଣ ଏତକ ଟଂକା ରଖିନିଅନ୍ତୁ । ମନଇଚ୍ଛା ଖର୍ଚ୍ଚ କରନ୍ତୁ । ମୁଁ ଆଦୌ ନେବିନି । ନହେଲେ ମେଘା ନାଁରେ ଫିକ୍ସଡ କରିଦିଅନ୍ତୁ । ତା' ଭବିଷ୍ୟତ ପାଇଁ .. ଏଇ ବୋଧେ.. ସେମାନେ ହୁଏତ ଏଠିକି ମଧ୍ୟ ଆସିପାରନ୍ତି । ପ୍ଲିଜ୍ ଭାଉଜ.. ଚନ୍ଦ୍ର !

ଛିତା — କ୍ଷମା କରନ୍ତୁ ସିଦ୍ଧିକ୍‌ବାବୁ ! ଆମେ ଆପଣଙ୍କୁ ସାହାଯ୍ୟ କରିପାରୁନୁ । ସେ ଟଂକାର ସ୍ଥାନ ଏ ଘରେ ନୁହେଁ, ସେ ଘରେ, ଯେଉଁ ଘରେ ସ୍ତ୍ରୀ ଦୁର୍ନୀତି ପାଇଁ ସ୍ୱାମୀକୁ ପ୍ରେରଣା ଦିଏ ।

ସିଦ୍ଧିକ୍ — କିନ୍ତୁ ଭାଉଜ, ଏତକ ଟଂକା ପାଇଲେ....

ଛିତା — ଆମର ସେ ପାରିଜାତର ଆବଶ୍ୟକତା ନାହିଁ । ମୋ ବଗିଚାରେ ଯେଉଁ ମଲ୍ଲୀଫୁଲ ଅଛି, ସେହି ଫୁଲ ହିଁ ମୋ ପୂଜା ପାଇଁ ଯଥେଷ୍ଟ ମୋର ଲୋଡ଼ା ନାହିଁ ପାରିଜାତ ।(ଫ୍ରିଜ୍)

"ପୁଷ୍ପର ନାମ ପାରିଜାତ
ହେଲେ ମର୍ତ୍ତ୍ୟରେ ଫୁଟେ ନାହିଁ ।
ସ୍ୱର୍ଗରେ ଯେଉଁ ପାରିଜାତ ଫୁଟେ
ସ୍ୱର୍ଗର ଶୋଭା ପାଇଁ ।
ଗଛରେ ଫୁଟି ସେ
ଗଛରେ ଝାଉଁଳେ ।
ଝରିଯାଏ ସିନା
ଯାଏନି ଦେଉଳେ ।
ପୁଷ୍ପ ଜଗତ ଶୀର୍ଷରେ ଥାଇ
ଅର୍ଘ୍ୟରେ ଲାଗେ ନାହିଁ ।"



୨୦୦୮ ସେପ୍ଟେମ୍ବର 'ଝଙ୍କାର'ରେ ପ୍ରକାଶିତ
'ବିଭୂତି'ର ଚରିତ୍ରମାନେ

- ବିଭୂତି
- ପୂଜା
- ଆଲୋକ
- ଯୁଗଳକିଶୋର
- ସନ୍ତୋଷ

- ଲକ୍ଷ୍ମୀ
- ପାର୍ବତୀ
- ଶିବ
- ନାରାୟଣ
- କୁବେର

# ବିଭୂତି

## ପ୍ରଥମ ଦୃଶ୍ୟ

(ଯୁବଲେଖକ ବିଭୂତିଭୂଷଣଙ୍କ ଡ୍ରଇଁରୁମ୍ । ସମୟ : ସନ୍ଧ୍ୟା ଅତିକ୍ରାନ୍ତ । ଆଲୋକ ଆସିଲାବେଳରୁ ଦେଖାଯାଏ, ବିଭୂତିବାବୁଙ୍କ ସ୍ତ୍ରୀ ପୂଜା ଟି.ଭି. ଦେଖୁଥାଆନ୍ତି, ମଝିରେ ମଝିରେ ବାହାରକୁ ଚାହୁଁଥାନ୍ତି, କାହାକୁ ଯେମିତି ଅପେକ୍ଷା କରୁଛନ୍ତି । ଘର ଭିତରକୁ ପଶି ଆସନ୍ତି ହସହସ ମୁହଁରେ ବିଭୂତିଭୂଷଣ, କୌଣସି ଏକ ଅନୁଷ୍ଠାନରୁ ସମ୍ବର୍ଦ୍ଧିତ ହୋଇ । ହାତରେ ଉପଢୌକନ ।)

ବିଭୂତି : ଆରେ ପୂଜା ! ମୁଁ ତ ତମକୁ ଡାକୁଥିଲି, ଅଥଚ ତମେ ଗଲନି ! ସେ ଯେଉଁ ସମ୍ମାନ, ସମ୍ବର୍ଦ୍ଧନା ! ମୋ ଜୀବନରେ ଇଏ ପ୍ରଥମ । ଏମିତିକା ସମ୍ମାନ ଆଉ ପାଇବି କି ନା, ସନ୍ଦେହ । ଭାରି ଭଦ୍ର ସେମାନେ, ଆଉ ଆମ ସଂସ୍କୃତିମନ୍ତ୍ରୀଙ୍କର ସତରେ ସାହିତ୍ୟ-ସଂସ୍କୃତି ପ୍ରତି ଖୁବ୍ ସମ୍ମାନ । ସେ ଯେଉଁ ଭାଷଣ ଦେଲେନା.. (ପୂଜାକୁ ନିସ୍ପୃହ ଦେଖି) ଆଃ..ହଉ ହେଲା, ଏଇ ନିଅ, ଏଇଟା । ଶାଲ୍, ଏଇଟା ତାମ୍ରଫଳକ ଆଉ ଏଇ ପାଞ୍ଚହଜାର ଟଙ୍କା ।

ପୂଜା (ଖୁସିରେ) ପାଞ୍ଚହଜାର ଟଙ୍କା ! ବାଃ, ଏଥିରେ ବୋଧହୁଏ ନେକ୍‌ଲେସ୍‌ଟା ହୋଇଯିବ ।

ବିଭୂତି (ଟିକିଏ ଦବିଯାଇ) ନେକ୍‌ଲେସ୍ !

ପୂଜା ହଁ, ଆଉ କ'ଣ କରିବ ଯେ.. ।

ବିଭୂତି ମୁଁ ଭାବୁଥିଲି, ଗୁଡ଼ାଏ ଗଳ୍ପ ହୋଇଗଲାଣି ତ..

ପୂଜା ସଂକଳନଟେ ଛାପିଦବ ? କ'ଣ ହବ, କହିଲ ? ସେ ବହିଟା ସେମିତି ଛାପିଲ ଯେ ଟେବୁଲ ଉପରେ, ଥାକରେ, ଆଲମାରୀରେ ଥାକ ଥାକ ହୋଇ ଗଦାହୋଇଛି - କେତେବେଳେ ଉଈ ଲାଗୁଛି ତ କେତେବେଳେ ମୂଷା ଖାଉଛି । କେହି ତ କିଣୁନାହାନ୍ତି, ଯା'କୁତାକୁ ଉପହାର ଦେଇଦେଇ..

ବିଭୂତି : ତଥାପି ସଂକଳନଟେ ହୋଇଗଲେ, ହୁଏତ ଏକାଡେମୀ ପୁରସ୍କାରଟା..

ପୂଜା : ଏକାଡେମୀ ଆୱାର୍ଡ଼ ପାଇବ ! କେତେ ଟଙ୍କା ? ଏଇ ଦଶହଜାର । ଆଜିକାଲି ଦଶହଜାର ଟଙ୍କା ପୁଅ ଏକୋଇଶାକୁ ନିଅଣ୍ଟ, ଝିଅ ବାହାଘର କଥା ପଚାରେ କିଏ ?

ବିଭୂତି କ'ଣ ଆଉ କରିବି...

ପୂଜା ତମେ ତ ମାନୁନ, ସନ୍ତୋଷଭାଇଙ୍କୁ ଦେଖୁନ ! ତମେ ଯେମିତି ଲେଖକ, ସେ ବି ସେମିତି ଲେଖକ,ତମେ ତ ଆହୁରି ଏମ୍.ଏ. ପାସ୍ କରିଚ, ସିଏ ତ ସୁଦ୍ଧୁ ମେଟ୍ରିକ୍ । ସେ ଖାଲି ଲେଖିଲେଖି କଟକରେ କୋଠା, ଭୁବନେଶ୍ୱରରେ କୋଠା, ବାଲେଶ୍ୱରରେ କୋଠା, ତିନିତିନିଟା ବସ୍ ଚଳେଇଛନ୍ତି । ଏଇ ଗତ ସପ୍ତାହରେ ଗୋଟେ ଇଣ୍ଡିକା କାର୍ କିଣିଛନ୍ତି । ଆଉ ଅପାର ଶାଢ଼ି ଗହଣା ଦେଖିଲେ... ଛାଡ଼, ଆଉ ତମେ ବି ତ ଲେଖୁଛ ଦିନରାତି, ବାଉଳାଙ୍କ ପରି ଗାରଉଛ, ତା'ସାଂଗରେ ଚାକିରି ଖଣ୍ଡେ ବି କରିଛ - ଘର ତ କରିବ ପଛରେ, ଜାଗା ଖଣ୍ଡେ ବି କିଣିପାରୁନ !

ବିଭୂତି ଓ ହୋ, ତମେ ବୁଝୁନ ! ସେହି ଗୋଟେ କଥା ମୁଁ ଆଉ କେତେଥର କହିବି ଯେ ସେ ଯାତ୍ରା ବହି ଲେଖୁଛନ୍ତି । ସେଥିରେ ପଇସା ଅଛି । ଆଉ ମୁଁ ସାହିତ୍ୟ କରୁଛି ।

ପୂଜା କାହିଁକି, ତମେ ବି ଯାତ୍ରା ନାଟକ ଲେଖୁନ ? କିଛି ନ ହେଲେ ପଇସା ତ ଆସନ୍ତା । (ଏହି ସମୟରେ କଲିଂ ବେଲ୍ ବାଜିଛି ।)

ବିଭୂତି କିଏ ? (ଯାଉଥିଲେ)

ପୂଜା ସନ୍ତୋଷଭାଇ ଆସିଲେ ବୋଧେ !

ବିଭୂତି		ସନ୍ତୋଷଭାଇ ?

ପୂଜା	:	ହଁ, ତାଙ୍କ ଯାତ୍ରାପାର୍ଟି ପୁଲିସ୍‌ଲାଇନ୍ ପଡ଼ିଆରେ ପଡ଼ିଛି - ଖବର ଦେଇଛନ୍ତି ଆମକୁ । ଯାତ୍ରା ଦେଖିଯିବାକୁ । ସେ ନିଜେ ଆସିବେ, ସାଂଗରେ ନେଇଯିବେ..

ବିଭୂତି	:	ଯାତ୍ରା ? (ପୁଣି ବେଲ୍ ବାଜେ) ହଁ, ହଁ, (ଯାଆନ୍ତି) ଆରେ, ଆରେ, ଆଲୋକବାବୁ ଯେ ! ଆସନ୍ତୁ ଆସନ୍ତୁ...

ଆଲୋକ		(ହାତଯୋଡ଼ି) ଆଜ୍ଞା ନମସ୍କାର । (ପୂଜା ଚାଲିଯାଇଥାଆନ୍ତି)

ବିଭୂତି	:	ଏ ପୂଜା !(ଭିତରକୁ) ଆଲୋକବାବୁ ଆସିଛନ୍ତି । କୁହନ୍ତୁ...

ଆଲୋକ		ନାଇଁ ଆଜ୍ଞା, ଆପଣ ଏମିତି ସଭା ସରିଲାମାତ୍ରେ ଚାଲିଆସିଲେ..

ବିଭୂତି	:	କାହିଁକି, ଆଉ କ'ଣ କିଛି କାମ ଥିଲା କି ?

ଆଲୋକ		କାମ, ଆହୁରି ପଚାରୁଛନ୍ତି ! ଆପଣ ସମ୍ବର୍ଦ୍ଧିତ ହେଲେ, କେତେ ବଡ଼ କଥା । ସେଠି ଆପଣ କେତେ ଲୋକଙ୍କୁ ଭେଟିଥାନ୍ତେ, ହାତ ମିଳାଇଥାନ୍ତେ । ଆପଣଙ୍କୁ କଂଗ୍ରାଚୁଲେଟ୍ କରିବାକୁ କେତେ ଲୋକ ଅପେକ୍ଷା କରିଛନ୍ତି, ଆପଣ କ'ଣନା...

ବିଭୂତି		ନାଇଁ, ମୋତେ ସେଗୁଡ଼ା ଭଲଲାଗେନି... । ମୁଁ ତେଣୁ ଚୁପ୍‌ଚାପ୍..

ଆଲୋକ	:	ମୁଁ ଜାଣେ, ଆପଣ ଏମିତି ଦେଖେଇହୁଅନ୍ତି ନାହିଁ । ତେଣୁ ସିଧା ଅନୁମାନ କରି ଆପଣଙ୍କ ଘରକୁ ପଳେଇଆସିଲି । ଆଉ ଅନୁମାନଟା ବି ଠିକ୍ । କଥା କ'ଣକି, ଆମ ପତ୍ରିକାର ସଂପାଦକ କହିଛନ୍ତି, ଆପଣଙ୍କ ଉପରେ ଗୋଟେ ଫିଚର କରିବାକୁ ! ସେ ଅବଶ୍ୟ କେବେଠୁ କହିଲେଣି । ମୁଁ ଦେଖିଲି, ଏ ସମ୍ବର୍ଦ୍ଧନା ସହିତ ଯୋଡ଼ିଯାଡ଼ି କରି ଦି'ପଦ ଗାରେଇଦେବି ।

ବିଭୂତି	:	ଓ, ଆଚ୍ଛା, ଆଚ୍ଛା । ହେଲେ, ମୁଁ ଏବେ ଟିକିଏ ଅସୁବିଧାରେ..

ଆଲୋକ		ଅସୁବିଧା ?

ବିଭୂତି		ନାଇଁ, ଅସୁବିଧା କ'ଣକି... ଟିକିଏ ଫାଇନାନ୍ସିଆଲ...ମାନେ ଆର୍ଥିକ ଦିଗରୁ..

ଆଲୋକ : ସେକଥା କୁହନ୍ତୁନି ଆଜ୍ଞା ! ତା'ଛଡ଼ା, ଅସୁବିଧା କାହାର ନାହିଁ ! ଏଠି ବାଜପେୟୀଙ୍କଠାରୁ ବୁସ୍ ପର୍ଯ୍ୟନ୍ତ, ଆଉ ବାଂଲାଦେଶଠୁ ଋଷ ପର୍ଯ୍ୟନ୍ତ, ସମସ୍ତେ ଏଇ ସମସ୍ୟାରେ ପଡ଼ିଛନ୍ତି ।

ବିଭୂତି : ସେକଥା ସତ ଯେ, ହେଲେ, ଆପଣ କାମ କରିବେ, ଅଥଚ..

ଆଲୋକ ମୁଁ କାମ କରିବି - ମାନେ ?

ବିଭୂତି : ଏଇ ଫିଚର ବାବଦରେ ତ କିଛି...

ଆଲୋକ : ଫିଚର ବାବଦରେ ପଇସା, ମାନେ ପାରିଶ୍ରମିକ - କ'ଣ କହୁଛନ୍ତି ଆପଣ ! ଆପଣଙ୍କ ଭଳି ଜଣେ ଲେଖକଙ୍କ ଫିଚର କରିବା ଭାଗ୍ୟରେ ଯୁଟିଛି, ଏଇଟା କ'ଣ କମ୍ ବଡ଼ କଥା ! ଯା' ପାଇଁ ପଇସା ! ଛି ଛି...

ବିଭୂତି : ନାଇଁ, ଆଜିକାଲି-

ଆଲୋକ : ସେଗୁଡ଼ା ସବୁ ଫମ୍ପା ଅଲେଖକମାନଙ୍କଠୁ ପେଟପାଟଣା ପାଇଁ ହୁଏତ କିଏ କ'ଣ ନଉଥିବ । (ପୂଜା ଚା' ନେଇ ଆସିଛି)

ବିଭୂତି : (ଚା' ଦେଖି) ଇଏ କ'ଣ .... ?

ପୂଜା : ନାଲି ଚା' । ଏ ମାସରେ ଅମୂଲ ଆଣିଛ ?

ଆଲୋକ : ହେଲା ହେଲା, ନାଲି ଚା', ମୋର ଚଳେ । ତା'ଛଡ଼ା ନାଲି ଚା' ତ ସ୍ୱାସ୍ଥ୍ୟ ପାଇଁ ଭଲ ।

ବିଭୂତି ନା (ପିଇ ଦେଇ), ଇସ୍ ଚିନି ବି ପଡ଼ିନି ।

ପୂଜା : ତିନିଦିନ ହେଲା ଚିନିଡବା ତଳେ ଗଡୁଛି ।

ଆଲୋକ ସାର୍, ଚାଳିଶ ତ ଟପିଯାଇଥିବେ, ତିନି ଅଭ୍ୟାସ ଛାଡ଼ିଦିଅନ୍ତୁ। ମୁଁ ଛାଡ଼ିଦେଇଛି ସାର୍... (ପୂଜା ହସିଦେଇ ଚାଲିଯାଏ)

ବିଭୂତି (ସାମାନ୍ୟ ଅପ୍ରସ୍ତୁତ ହୋଇ) ନାଇଁ, କଥା କ'ଣକି, ମୁଁ ଟିକିଏ ଏଇମିତି ବ୍ୟସ୍ତ ରହିଥିଲି ତ...

ଆଲୋକ : ଏଇଟା ସାର୍ ଜଣେ ଉଚ୍ଚକୋଟୀର ସାହିତ୍ୟିକର ସ୍ୱଭାବ ।

ବିଭୂତି : ନାଇଁ ଯେ...ପ୍ଲିଜ୍, ଟିକିଏ ଅପେକ୍ଷା କରନ୍ତୁ.... ।

ଆଲୋକ : ହେଲା ହେଲା, ଭିତରକୁ ଯିବେ ତ ଯାଆନ୍ତୁ । (ବିଭୂତି ଭିତରକୁ ଯାଆନ୍ତି) ବାସ୍ତବିକ୍ କେଡ଼େ ସାଦାସିଧା ସାହିତ୍ୟିକଟେ ! କଲମରେ କମ୍ପନ ଅଛି; ହେଲେ, ଏ ସମାଜ ଏମାନଙ୍କୁ କ'ଣ ଦେଉଛି ନା ଦେଉଛି ? ଖଣ୍ଡେ ଶାଲ, ଗୋଟେ ଫୁଲମାଳ ଆଉ ଖଣ୍ଡେ ମାନପତ୍ର ଧରେଇଦେଇ କାମ ସାରିଦଉଛି । (କିଛି ସମୟ ପରେ ଯୁଗଳ ଆସନ୍ତି) ଇଏ କ'ଣ, ଯୁଗଳବାବୁ ଯେ ! ସାର୍ ନମସ୍କାର ! ଆପଣ ... ।

ଯୁଗଳ : ଆରେ ଆଲୋକ ! ତମେ ଏଠି ! ମାନେ ବିଭୂତି ପାଖକୁ ?

ଆଲୋକ : ଗୋଟେ ଫିଚର ପାଇଁ ଆସିଥିଲି, କିନ୍ତୁ ଆପଣ ?

ଯୁଗଳ ଏଟା ପରା ମୋ' ଝିଅ ଘର...

ଆଲୋକ ମାନେ ବିଭୂତିବାବୁ-

ଯୁଗଳ ମୋ' ସାନଜୋଇଁ ।

ଆଲୋକ : ମାନେ...ଆପଣ..ବିଭୂତିବାବୁଙ୍କ ଶଶୁର । ଇଏ ସଂଯୋଗର କଥା, ଅପୂର୍ବ ମିଳନ...ଯୁଗଳକିଶୋର ନାୟକଙ୍କ ଭଳି ଔପନ୍ୟାସିକ ଶଶୁରଙ୍କର ବିଭୂତି ମହାନ୍ତି ଭଳି ଗାଳ୍ପିକ ଜୋଇଁ ! ବାଃ, ଚମତ୍କାର ସଂଯୋଗ ।

ଯୁଗଳ : କ'ଣ କରିବି, ବିଧିର ବିଧାନ-

ଆଲୋକ : ସତରେ, ଆପଣ ଭାଗ୍ୟବାନ । ନହେଲେ ବିଭୂତିବାବୁଙ୍କ ଭଳି ଜୋଇଁ ପାଇଥାଆନ୍ତେ !

ଯୁଗଳ (ହସି) ମୋ ଭାଗ୍ୟ କଥା କୁହନି । ଗଳ୍ପ ସିନା ଲେଖି ଓଡ଼ିଆ ସାହିତ୍ୟକୁ ନେଇ ଜାତୀୟ ଦରବାରରେ ଛିଡ଼ା କରାଇଦେଉଛି, ଅଫିସ୍‌ରେ ଅନ୍ୟମନସ୍କ ରହି ସଂସାର ଉଚ୍ଛନ୍ନ କରିଦଉଛି । ସବୁ ସେକ୍‌ସନ୍‌ରୁ ଫେରି ଫେରି ଶେଷରେ ଡେସ୍‌ପାଚ୍ ସେକ୍‌ସନରେ ପହଞ୍ଚିଲା ଯେ ଆଜି କଲେକ୍ଟରଙ୍କ ଚିଠି ସି.ଏସ୍.ଓଙ୍କୁ ଦେଲା ତ ସି.ଏସ୍.ଓ.ଙ୍କ ଚିଠି କଲେକ୍ଟରଙ୍କୁ ଇସ୍ୟୁକରି ଦେଉଛି । (ଆଲୋକ ଜୋର୍‌ରେ ହସନ୍ତି, ବିଭୂତି ଆସନ୍ତି, ହଠାତ୍ ଯୁଗଳଙ୍କୁ ଦେଖି)

ବିଭୂତି : ବାବା । (ଜୁହାର ହେଲେ) ଇଏ ଆଲୋକବାବୁ ।

ଆଲୋକ : ଆମର ପରିଚୟପର୍ବ ସରିଗଲାଣି ।

ବିଭୂତି : ପୂଜା, ପୂଜା । ବାବା ଆସିଛନ୍ତି...

ଯୁଗଳ : ହେଲା ହେଲା, ତମେ ଆଲୋକବାବୁଙ୍କ କଥା ବୁଝ, ମୁଁ ପୂଜା ପାଖକୁ ଯାଉଛି । (ଯାଉଯାଉ ଫେରି)ହଁ, ଆଲୋକ ବାବୁ ବିଭୂତିଙ୍କ ସାହିତ୍ୟ କୃତିକୁ ନେଇ ଓଡ଼ିଆରେ ତ ଫିଚର କରୁଚ, କୌଣସି ଇଂରେଜି ପତ୍ରିକା ପାଇଁ ଗୋଟେ ଫିଚର କର...

ଆଲୋକ ସାର୍ (ଯୁଗଳ ଯାଉଥିଲେ, ପୂଜା ଆସେ)

ପୂଜା ବାପା, ତମେ ? କ'ଣ ଏକୁଟିଆ ?

ଯୁଗଳ ଆଉ ଆସିବ କିଏ ? ବୋଉ ? ଲିଜା ପରା ଆସିଛି ।

ପୂଜା : ଅପା ଆସିଛି ?

ଯୁଗଳ ଏଠିକୁ ବି ଆସିବ । (କାର୍ ରହିବାର ଶବ୍ଦ) ଏଇ ତ କିଏ ଆସିଲା । (ଦେଖନ୍ତି)

ବିଭୂତି ସନ୍ତୋଷଭାଇ ବୋଧହୁଏ ।

ପୂଜା ସନ୍ତୋଷଭାଇ, (ସନ୍ତୋଷ ପଶିଆସନ୍ତି)

ବିଭୂତି / ପୂଜା: ଭାଇନା (ଜୁହାର ହୁଅନ୍ତି)

ସନ୍ତୋଷ ହେଲା, ହେଲା । ବାବା, ଆପଣ ବି (ଜୁହାର)

ଯୁଗଳ ହଁ, ହଁ, ହେଲା, ଆଉ ଇଏ ହେଉଛନ୍ତି ଦୈନିକ ଗଣବାର୍ତ୍ତାର ସାମ୍ବାଦିକ...

ଆଲୋକ ଆଲୋକ ମହାନ୍ତି-

ସନ୍ତୋଷ ନମସ୍କାର ।

ଯୁଗଳ ମୋ ବଡ଼ ଜ୍ୱାଇଁ ସନ୍ତୋଷ ପଟ୍ଟନାୟକ ।

ବିଭୂତି ଓଡ଼ିଆ ଯାତ୍ରାଜଗତର ବିଶିଷ୍ଟ ନାଟ୍ୟକାର ।

ଆଲୋକ ଆଚ୍ଛା, ତା'ହେଲେ ଅପୂର୍ବ ସମନ୍ୱୟ ।

ସନ୍ତୋଷ : ଆମ ପାର୍ଟି ଆସିଛି ତ, ପୁଲିସ୍‌ଲାଇନ୍ ପଡ଼ିଆରେ ପଡ଼ିଛି । ଆସୁ ନାହାନ୍ତି ?

ଆଲୋକ : ହଁ ହଁ, ମୁଁ ଶୁଣିଥିଲି..

ସନ୍ତୋଷ : ଆଜି ମୋ' ନାଟକ ଅଛି ।

ଆଲୋକ 'ଶଳା ପଳାଇଲା ଶାଳୀକି ନେଇ' ।

ସନ୍ତୋଷ (କଣେଇ ଚାହିଁ) ହଁ (ଯୁଗଳ ଘୃଣାରେ ହୁଁ ମାରି ଭିତରକୁ ଯାଆନ୍ତି । ପୂଜା ହସିଦିଏ)

ଆଲୋକ : ଆଚ୍ଛା ସନ୍ତୋଷ ବାବୁ, ଆପଣମାନେ ଯାତ୍ରାନାଟକର ଏଭଳି ନାମକରଣ କାହିଁକି କରନ୍ତି ?

ସନ୍ତୋଷ : ସେକଥା ଏମିତି ଗୋଟିଏ ବାକ୍ୟରେ କହିଦେଇ ଆପଣଙ୍କୁ ବୁଝାଇ ପାରିବି ?

ଆଲୋକ ଆସନ୍ତୁ - (ଗୋଟିଏ କୋଣକୁ ଡାକିନିଅନ୍ତି)

ପୂଜା (ଇସାରାରେ ବିଭୂତିଙ୍କି ଗୋଟିଏ ପାଖକୁ ଡାକିନିଏ) ଏଯ ଶୁଣ, ବାପା ଆସିଛନ୍ତି, ଏଣେ ଭାଇ ବି ଆସି ପହଞ୍ଚିଗଲେଣି । ଏତେଦିନ ପରେ ଆମ ଘରକୁ ଆସିଛନ୍ତି, ସେମାନଙ୍କୁ କିଛି ଦବନା, ଏମିତି ଫେରେଇଦେବ ?

ବିଭୂତି ମୁଁ କ'ଣ ମନା କରୁଛି ?

ପୂଜା ଘରେ କ'ଣଟା ଅଛି ଯେ ଦେବି !

ବିଭୂତି ତା'ହେଲେ...

ପୂଜା ମାର୍କେଟ୍ ଆଡ଼େ ଯାଆନ୍ତନି ?

ବିଭୂତି ଏଣେ ଆଲୋକ ବାବୁ...

ପୂଜା ରାସ୍ତାରେ ନ ହେଲେ କଥା ହୋଇ...

ବିଭୂତି : ହଉ ଦିଅ, ବେଗ୍‌ଟା ଆଣ... (ପୂଜା ଯାଏ)

ଆଲୋକ ଅବଶ୍ୟ, ଆପଣଙ୍କ ପ୍ରସ୍ତାବଟା ମନ୍ଦ ନୁହେଁ ।

ସନ୍ତୋଷ ଆରେ, ବର୍ତ୍ତମାନ ଆମ ଓଡ଼ିଶାରେ ଏତେ ଯାତ୍ରା ପାର୍ଟି ହେଲାଣି ଯେ ହିସାବ କରି ହେବନି । ନାଟ୍ୟକାର, ନିର୍ଦ୍ଦେଶକ, କଳାକାର ପୁରସ୍କାର

ପାଇଁ ଟଣାଓଟରା, ଦର କଷାକଷି, ନିଲାମ ପର୍ଯ୍ୟନ୍ତ କଥା ଗଲାଣି ।ଏଇ ସୁଯୋଗରେ କଳାକାରମାନେ ନିଜ ଢୋଲ ପିଟି ଦାମ୍ ବଢ଼େଇବା ପାଇଁ ଖବରକାଗଜକୁ ବେଶି ଭରସା କରୁଛନ୍ତି । ଆପଣ ଯଦି ଆପଣଙ୍କ କାଗଜରେ ଗୋଟିଏ ପୃଷ୍ଠା ପ୍ରକାଶ କରନ୍ତେ....

ଆଲୋକ ବୁଝିଗଲି, ପେପରଠୁ ପକେଟ୍ ପର୍ଯ୍ୟନ୍ତ, ସବୁ ଗରମ ହୋଇଯାଆନ୍ତା...

ସନ୍ତୋଷ ଏଇ ରଖନ୍ତୁ ହଜାରେ । ମୋ'ରି ନାଟକଠୁ ଫିଚରଟେ ଆରମ୍ଭ କରନ୍ତୁ...

ଆଲୋକ ଏଇ, ଏବେ, ଆଜି ରାତିରେ ଫିଚର ପ୍ରସ୍ତୁତ ହେଇଯିବ ।

(ପୂଜା ବେଗ୍ ଦିଏ – ବିଭୂତି ନିଅନ୍ତି)

ଆଲୋକ ବିଭୂତିବାବୁ, ଆପଣଙ୍କ ଫିଚରଟା ନହେଲେ ପରେ କରିବା ।

ବିଭୂତି ପରେ ? ହଉ ହେଲା, ଆପଣ ତା'ହେଲେ ଏଠି ବସନ୍ତୁ, ମୁଁ ସାଙ୍ଗେ ସାଙ୍ଗେ ଆସୁଛି ।

ଆଲୋକ ହଁ, ଆସନ୍ତୁ । ସାର୍ କୁହନ୍ତୁ....

ସନ୍ତୋଷ : ପୂଜା ଗିଲାସେ ପାଣି ଫ୍ରିଜ୍‌ରୁ ଆଣିବୁ ତ, ଭୀଷଣ ଗରମ ।

(ପୂଜା ଯାଉଯାଉ ଅଟକିଯାଏ)



## ଦ୍ୱିତୀୟ ଦୃଶ୍ୟ

(ଆଲୋକ ଆସିଲାବେଳକୁ ଦେଖାଯାଏ, ପୂଜା କିଚେନକାମରେ ବ୍ୟସ୍ତ ଥାଇ ଏପଟସେପଟ ହେଉଥାନ୍ତି । ମଝିରେ ମଝିରେ ମୁଣ୍ଡ କୁଣ୍ଡଉଥାନ୍ତି ଆଉ ଦାଣ୍ଡଆଡ଼େ ଚାହୁଁଥାନ୍ତି)

ପୂଜା — ଆଚ୍ଛା ଲୋକ ! ଚାରି ଛ'ଟା ମିଠା କି ଯୋଡ଼େ ତିନିଟା ସିଙ୍ଗଡ଼ା ଆଣିବେ କି ନା ସନ୍ଦେହ, ସେଥିରେ ଅଧଘଣ୍ଟାଏ ହେଲା ଦେଖାନାହିଁ ! ଏଭଳି ଲୋକଙ୍କ ସାଂଗରେ... (ସନ୍ତୋଷ ଆସନ୍ତି)

ସନ୍ତୋଷ — କ'ଣ ମାଡାମ୍ ? ଏମିତି ଗରଗର ହଉଛ ଯେ ? ପଞ୍ଚମରେ ଥିଲା ପରି ଲାଗୁଛ । କାହାକୁ ଶୋଧୁଛ କି ?

ପୂଜା — ଶୋଧିବି ଆଉ କାହାକୁ ? ଏ ଦୁନିଆରେ ତମଛଡ଼ା ଆଉ ଅଛି କିଏ ?

ସନ୍ତୋଷ — ଆରେ, ଇଏ ତ ମୋ ବହିର ଡାଇଲଗ୍ !

ପୂଜା — ଆଚ୍ଛା ସନ୍ତୋଷଭାଇ ! ତମେ ଜଣେ ଏତେବଡ଼ ନାଟ୍ୟକାର ହେଇଛ । ଲକ୍ଷଲକ୍ଷ ଟଂକା ରୋଜଗାର କରୁଛ, ଆଉ କେତେହେଲେ ତମକୁ ବଳିବ ?

ସନ୍ତୋଷ — (ହସି) ଆରେ, ପଇସା କ'ଣ କାହାକୁ ବଳେ ? ତୁ କ'ଣ କହିବାକୁ ଚାହୁଁଛୁ, ସିଧାସିଧା କହ ।

ପୂଜା — ତମେ ତ ଜାଣ, ତମ ସଢୁ ମହୋଦୟ ବି ଜଣେ ଲେଖକ । ଦିନରାତି ବସି ଲେଖୁଛନ୍ତି । ହେଲେ, କଣାପଇସାଟେ ନାହିଁ ।

ସନ୍ତୋଷ — ଆରେ ଏଠି ଏମିତି ଦିନରାତି କଥା କ'ଣ କହୁଛୁ, ଜନ୍ମଜନ୍ମ ଧରି

ବସି ଗାରେଇଲେ ବି ଫଟା ପାହୁଲାଟେ ମିଳିବନି, ପଇସା ଅଛି ଯାତ୍ରାରେ । ଯାତ୍ରା ଲେଖୁନାହାନ୍ତି ? ଗୋଟେ ସିଜନରେ ଲକ୍ଷେଟଙ୍କା ରୋଜଗାର କରିବ । ମୁଁ ଦେବି ।

ପୂଜା ମୁଁ ତ ସେଇକଥା କହୁଛି । ତମେ ଟିକେ ସାହାଯ୍ୟ କଲେ ହୁଅନ୍ତାନି ?

ସନ୍ତୋଷ ମୁଁ କ'ଣ ମନା କରୁଛି ? ମୋ' ପାଖରେ ପରା ପାର୍ଟିବାଲା ଆସି ଧାରଣା ଦଉଛନ୍ତି । ମୁଁ ଫେରେଇଦଉଛି - ପାରୁନି, ବିଭୂତି ରାଜିହେବେ ତ ?

ସନ୍ତୋଷ କିନ୍ତୁ ଏ ଲେଖା ସେଠି ଚାଲିବନି । ସେ ବଂଗଳା ଜାଣନ୍ତି ?

ପୂଜା ବଂଗଳା ? ଜାଣିଥିବେ, ମୁଁ ଜାଣେନି । କାହିଁକି ? ନ୍ ଜାଣିଥିଲେ ଶିଖିଯିବେ । (ଯୁଗଳ ଗୋଟେ ଚିଠି ଓ ଖୋଲା ଲଫାପା ଧରି ଭିତରୁ ଆସନ୍ତି)

ଯୁଗଳ କାହିଁକି, ବଂଗଳା ଶିଖିବା କ'ଣ ଦରକାର ?

ସନ୍ତୋଷ ନାଇଁ.. ପୂଜା କହୁଛି....

ପୂଜା ଇଏ ତ ଲେଖାଲେଖି କରୁଛନ୍ତିନା ଯାତ୍ରାପାଇଁ...ଭାଇଙ୍କୁ କହୁଥିଲି ଯେ...

ସନ୍ତୋଷ ବଂଗଳା ଜାଣିଥିଲେ ଯାତ୍ରାଲେଖିବା ଟିକେ ସହଜ ହୁଅନ୍ତା ।

ଯୁଗଳ ବଂଗଳାରୁ ସିଧାସଳଖ ଉତାରିଆଣି 'ଶଳା ପଳେଇଲା ଶାଳୀକି ନେଇ', 'ବାପ ବାହାଘର ମାଆ ଚଉଠି', 'ଯମ ଲେଖୁଥିବ ପ୍ରେମର ଚିଠି' ଆଦି ଓଡ଼ିଆ ନାଁ ଦେଇ ଓଡ଼ିଆଙ୍କୁ ଭକୁଆ ତ ବନେଇଲ ବନେଇଲ, ଗୁଡ଼ାଏ ଅପସଂସ୍କୃତି ଆଣି ଓଡ଼ିଶା ମାଟିରେ ବୁଣାବୁଣି ରୁଆରୋଇ କରି ଅମଳ କରିବା ଆରମ୍ଭ କରିଦେଲଣି ! ନା ନା, ବିଭୂତି ଯାତ୍ରା ନାଟକ ଲେଖିବନି । ଯଦି ଲେଖିବ, ତା' ଭାଷାରେ ଲେଖିବ । ପୂଜା, ଏ ଚିଠି କେବେ ଆସିଥିଲା ।

ପୂଜା କେଉଁ ଚିଠି ? (ଦେଖି) କେବେ ଗୋଟେ ଆସିଥିବ । ନିତି ତ ଗଦେ ଗଦେ ଚିଠି ଆସୁଛି, କିଏ ଦେଖୁଛି ।

ଯୁଗଳ  ଯେତେ ଆସିଲେ ବି ଚିଠି ତ ! ତାକୁ ଖୋଲିବନି ? ବିଭୂତି ଦେଖିଛନ୍ତି ?

ପୂଜା  କେଉଁଠାଣି ?

ଯୁଗଳ  ଖୋଲା ତ ହେଇନି, ଏଇ ଏବେ ମୋ' ଆଖିରେ ପଡ଼ିଲାରୁ ଖୋଲିଲି । ଖୋଲିନଥାନ୍ତି, ଖାଲି ଦୂରଦର୍ଶନରୁ ଆସିଛି ବୋଲି ଦେଖି ଖୋଲିଲି। ନ ଖୋଲିଥିଲେ ଏତେ ବଡ଼ ପ୍ରୋଗ୍ରାମଟା ମିସ୍ କରିଥାଆନ୍ତେ...

ସନ୍ତୋଷ ଓ ପୂଜା : କି ପ୍ରୋଗ୍ରାମ୍ ?

ଯୁଗଳ  ଆଜି ରାତି ନ'ଅଟା ବେଳେ ବିଭୂତିର ଗୋଟେ ନାଟକ ଟି.ଭି.ରେ ଟେଲିକାଷ୍ଟ୍ ହେବ ।

ସନ୍ତୋଷ  ନଅଟା ? ଆଉ ତ ପାଞ୍ଚ ମିନିଟ୍ ଅଛି...

ଯୁଗଳ  ସେଇ ତ କଥା, ବିଭୂତି କାହାନ୍ତି ?

ପୂଜା  ଓ ତାଙ୍କ ନାଟକ ! ଯାହା ତ ଲେଖନ୍ତି, ଛାଡ଼ । ବୁଝିବା ତ ଦୂରର କଥା, ଓଲଟା ବିରକ୍ତ ଲାଗିବ ଯେ ମଣିଷ ଉଠି ପଳେଇବ।

ସନ୍ତୋଷ  ଠିକ୍ କଥା, ଆଜିକାଲି ଲୋକମାନେ ଏତେ ଚିନ୍ତାକରି ଗଭୀର ତତ୍ତ୍ୱ ଭିତରକୁ ଯିବାକୁ ଚାହୁନାହାନ୍ତି, ସେଇଥିପାଇଁ ତ ମଞ୍ଚନାଟକ ଛାଡ଼ି ଯାତ୍ରାକୁ ଦୌଡ଼ୁଛନ୍ତି...

ଯୁଗଳ  କିଏ କହିଲା, ମଂଚ ନାଟକ ବୋର୍ ? ଅବଶ୍ୟ ମଝିରେ ଗୋଟେ ସମୟ ଆସିଥିଲା, ମଂଚ ନାଟକ ବିରକ୍ତିକର ବୋଧ ହେଉଥିଲା । ସେ ସମୟ ଏବେ ନାହିଁ । ଜୀବନର ମୌଳିକ ତତ୍ତ୍ୱ ଉପରେ ମଂଚନାଟକ ହିଁ ଗୁରୁତ୍ୱ ଦେଉଛି । ତା'ଛଡ଼ା, ଅନ୍ୟମାନେ ଯେତେ ବିରକ୍ତ ହେଲେ ବି ଆମ ବିଭୂତିର ନାଟକ ଆମେ ଦେଖିବା ତ ? ପୂଜା ଦେଖିବନି ? ବିଭୂତି କାହାନ୍ତି ?

ପୂଜା  ସେ ତ ମାର୍କେଟ୍ ଯାଇଛନ୍ତି ଯେ ଘଣ୍ଟେ ହେଇଗଲା...

ଯୁଗଳ  ନଅଟା ତ ହେବାକୁ ଗଲା । (ବିଭୂତି ଆସନ୍ତି)

| | |
|---|---|
| ବିଭୂତି | ପୂଜା ! ମୋର ଜଣେ ସାଂଗ କହିଲା, ମୋ'ର ଗୋଟେ ନାଟକ ଏବେ ଟି.ଭି.ରେ ଦେବ... |
| ଯୁଗଳ | ଏଇ ନିଅ ଚିଠି - (ଦେଲେ, ପୂଜା ହାତକୁ ବେଗ୍‌ଟା ବଢ଼େଇ ଚିଠି ପଢ଼ିଛି) |
| ପୂଜା | (ବେଗ୍ ଦେଖେ । ଭିତରକୁ ଦେଖି ତା' ଭିତରୁ ଗୋଟେ ବହି ବାହାର କରେ । ଆଉ କିଛି ନାହିଁ) ମାନେ ? (ବିଭୂତି ଚିଠି ପଢୁଥାନ୍ତି) |
| ଯୁଗଳ | କ'ଣ ହେଲା ? |
| ପୂଜା | ଦେଖିଲ, ତମ ଜୋଇଁଙ୍କ ଗତି ! ଜଣେ ଲୋକକୁ ଟଂକା ବେଗ୍ ଦେଇ ପଠାଇଲି ଯେ... |
| ବିଭୂତି | ଓ, ମୁଁ ପୂରା ଭୁଲିଯାଇଛି । ପୁସ୍ତକମେଳାଟା ପଡ଼ିଛି ତ, ପଶିଗଲି - ଭଲ ବହିଟେ ଦେଖିଲି । କିଣିଆଣିଲି - |
| ପୂଜା | ଛି...ଛି... |
| ଯୁଗଳ | ଓ ରହ, ଟିଭିଟା ଖୋଲ । |
| ସନ୍ତୋଷ | ଡି.ଡି.-ସିକ୍ସ (ଖୋଲନ୍ତି ପୂଜା ବେଗ୍ ଫୋପାଡ଼ି ଚାଲିଯାଉଥାଏ) |
| ଯୁଗଳ | ପୂଜା, କିଛି ଦରକାର ନାହିଁ । ବସ୍ - ନାଟକ ଦେଖ (ସମସ୍ତେ ବସନ୍ତି । ଟି.ଭି.ରେ ନାଟକ ଆରମ୍ଭ ହୁଏ ।) |



## ଟି.ଭି. ପ୍ରଥମ ଦୃଶ୍ୟ

(ଧୀରେ ଧୀରେ କୈଳାସପୁର ଦୃଷ୍ଟିଗୋଚର ହୁଏ
ଯେଉଁଠାରେ ଦେବୀ ପାର୍ବତୀ ଧ୍ୟାନମଗ୍ନ)

ପାର୍ବତୀ — ଓଁ ନମୋ ଶିବାୟଃ (ଆସନ୍ତି ଲକ୍ଷ୍ମୀ)

ଲକ୍ଷ୍ମୀ — (ପାର୍ବତୀଙ୍କୁ ଦେଖି ନିଜକୁ ତଥା ନିଜ ବସନଭୂଷଣକୁ ଦେଖି ମନେ ମନେ ତୃପ୍ତ ହୁଅନ୍ତି)

ଦେବୀପାର୍ବତୀ ହେ ତପସ୍ୱିନୀ ପାର୍ବତୀ, ହେ ପର୍ବତନନ୍ଦିନୀ ପାର୍ବତୀ ! ହେ ଶିବସୋହାଗିନୀ ପାର୍ବତୀ !

ଆମ୍ଭେ ବୈକୁଣ୍ଠବାସିନୀ, ସମୁଦ୍ରନନ୍ଦିନୀ, ବିଷ୍ଣୁବିନୋଦିନୀ, ଯାବତୀୟ ଜାଗତିକ ସଂପତ୍ତିର ଅଧିକାରିଣୀ ଲକ୍ଷ୍ମୀ ଠାକୁରାଣୀ ।

ପାର୍ବତୀ — ଦେବୀ ଲକ୍ଷ୍ମୀ !

ପତିନାମେ ପରିଚିତା ହେଲେ ସିନା
ନାରୀ ଜନ୍ମ ହୁଅଇ ସାର୍ଥକ,
ଅନ୍ୟ ପରିଚୟେ ନାହିଁ ଗତି ଓ ମୁକତି

ଲକ୍ଷ୍ମୀ — ଭ୍ରମୁଥିଲି ଆକାଶମାର୍ଗରେ,
ମନେପଡ଼ି ତୁମ କଥା ଆସିଲି କୈଳାସେ,
କି ଦେଖୁଛ ଦେବୀ ! ଅଳଙ୍କାର ଆଉ ମୋର ବସନଭୂଷଣ ?
ଅବଶ୍ୟ ଏ ବେଶରେ ଏ ବାସରେ ପାର୍ବତୀଙ୍କ ଅବସ୍ଥାନ
ବ୍ୟଥା ଦିଏ ଅନ୍ତରେ ମୋହର ।

| | |
|---|---|
| ପାର୍ବତୀ | ବେଶଭୂଷା ମିଛ, ଖାଲି ଶରୀର ଭୂଷଣ, |
| | ତପଜପ ବ୍ରତ ଓ ସାଧନା- |
| | ଆତ୍ମିକ ବିକାଶ ପାଇଁ ଏକା ପ୍ରୟୋଜନ । |
| ଲକ୍ଷ୍ମୀ | ତଥାପି - ଅଳଂକାର ବ୍ୟତିରେକ |
| | ନାରୀ ଦେହ ଅସାର ଅପୂର୍ଣ୍ଣ |
| | ଅଳଂକାର ହୁଏ ସିନା ସଧବାଭୂଷଣ । |
| ପାର୍ବତୀ | ନା ଦେବୀ ! ପତି ମାତ୍ର ସତୀର ଭୂଷଣ । |
| ଲକ୍ଷ୍ମୀ | ଯେଉଁ ପତି |
| | ପତ୍ନୀ ଦେହେ ପାରେ ନାହିଁ ଦେଇ |
| | ସୁବର୍ଣ୍ଣ ଭୂଷଣ, |
| | ସେ ପତିର କି ଯୋଗ୍ୟତା ଅଛି ଯେ |
| | ସିଏ ହେବ ପତ୍ନୀର ଭୂଷଣ ? |
| | ଅବଶ୍ୟ, ତୁମ୍ଭ ପତି ମହେଶ୍ୱର |
| | ନିଃସ୍ୱ ଯୋଗୀ ଶ୍ମଶାନନିବାସୀ |
| | ଅଳଂକାର ପାଇବେ ସେ କାହୁଁ ! |
| | ତେଣୁ କିବା ତୁମ୍ଭ ଦେହେ ନାହିଁ ଅଳଂକାର ! |
| ପାର୍ବତୀ | ମହାଯୋଗୀ ମହେଶ୍ୱର ସିଏ, |
| | ଜାଗତିକ ଜଡ଼ ଦ୍ରବ୍ୟେ ନାହିଁ ତାଙ୍କ ଆଶା ଆକର୍ଷଣ । |
| ଲକ୍ଷ୍ମୀ | ବୁଝିଗଲୁ ଅବସ୍ଥା ତୁମ୍ଭର । |
| | ଯଦି ଆଶା ଥାଏ ଅଳଂକାରେ |
| | ଅବିଳମ୍ବେ ଆଣିଦେବି ମୁହିଁ । |
| ପାର୍ବତୀ | ଧନ୍ୟ ହେଲି ନାରାୟଣୀ ବଚନେ ତୁମ୍ଭର |
| | ମାତ୍ର ଅର୍ଦ୍ଧାଙ୍ଗନୀ ମୁହିଁ ଶୂଳପାଣିଙ୍କର, ତେଣୁ |
| | ତାଙ୍କ ଦତ୍ତ ଅଳଂକାର ମୋହର ଭୂଷଣ । |

ଲକ୍ଷ୍ମୀ		ତେବେ ଯାଉଅଛି ମୁହିଁ

ପାର୍ବତୀ		ହେ ଅତିଥିଶ୍ରେଷ୍ଠ !

ବସିବେନି ଆମ୍ଭର ନିବାସେ ?

ଲକ୍ଷ୍ମୀ		ବସିବାକୁ କାହିଁ ସ୍ଥାନ, କାହିଁ ବା ଆସନ ।

ବ୍ୟାଘ୍ରଚର୍ମ ଆସନରେ ବସେ ଯଦି ବିଷ୍ଣୁପାଟରାଣୀ

ଅପଯଶ ହେବନି କି କୈଳାସପୁରରେ ?

ପାର୍ବତୀ		(ତାଙ୍କ ଯିବା ବାଟକୁ ଚାହାନ୍ତି - ପୁଣି କ'ଣ ଭାବି ଧ୍ୟାନପାଇଁ ଯାଆନ୍ତେ ଶିବ ଆସନ୍ତି )

ଶିବ		ପ୍ରିୟେ ପାର୍ବତୀ ! ବିଷଣ୍ଣ କିପାଇଁ ?

ପିତ୍ରାଳୟ ଚିନ୍ତା କିବା ଘାରିଛି ମନରେ ?

ପାର୍ବତୀ		ହେ ପ୍ରଭୋ ତ୍ରିଲୋଚନ !

କେଉଁ କଥା ଅଜଣା ତୁମ୍ଭଙ୍କୁ ?

ଶିବ		ଅବଶ୍ୟ ପାର୍ବତୀ, ଜାଣିଲି ମୁଁ ଧ୍ୟାନବଳେ

ଆସିଥିଲେ ତୁମ୍ଭ ପାଶେ ବିଷ୍ଣୁ-ପାଟରାଣୀ,

ଦେଇଛନ୍ତି ତୁମ୍ଭ ମନେ ଅନେକ ବେଦନା ।

ପାର୍ବତୀ		ନା ପ୍ରଭୋ ! ବ୍ୟଥା ନାହିଁ ମନେ ମୋର...

କେବଳ ଯା ଭାବନା ଏତିକି,

ପତି ସିନା ପତ୍ନୀଙ୍କର ଆତ୍ମା-ଆଭରଣ,

କିନ୍ତୁ ସମାଜ ନିମନ୍ତେ-

ସ୍ୱର୍ଣ୍ଣ ଅଳଂକାର କ'ଣ ନୁହେଁ ପ୍ରୟୋଜନ

ନାରୀ ଅଙ୍ଗ ପାଇଁ ?

ଶିବ		ଦେବୀ ପାର୍ବତୀ ! ପତି ପାଶେ ସତୀ ତୁମ୍ଭେ- ନୁହେଁ କି ଯଥେଷ୍ଟ ?

ପାର୍ବତୀ		ହେ ପ୍ରଭୋ ଦିବ୍ୟଜ୍ଞାନୀ ! ମାଗୁନାହିଁ ବଳା ବଟଫଳ

ଗଳାମାଳି, ବାହୁଟି କଙ୍କଣ ।

ସ୍ୱଚ୍ଛ କିଛି ଅଳଂକାର ମାତ୍ରକ ମାଗୁଣି ।
ଯାହାଇଚ୍ଛା ତବ ପ୍ରତୀକ ପରାୟେ ଅଂଗରେ ପିନ୍ଧିବି ।

ଶିବ (ହସି) ପତିପ୍ରାଏ ଅଳଂକାର ନାହିଁ ପତ୍ନୀ ପାଇଁ ।
ଜାଣିଶୁଣି ଯଦି ତୁମ୍ଭେ ମାଗୁଅଛ ତାହା,
ତେବେ ଆମ୍ଭଠାରେ ନାହିଁ କିଛି ବିଭୂତି ବ୍ୟତୀତ ।
ନେଇଯାଅ ଏ ବିଭୂତି କୁବେରଙ୍କ ପାଶେ,
ନିକିତିରେ କରି ସେ ତଉଲ-
ଏହି ପରିମାଣେ ଦେବେ ସ୍ୱର୍ଣ୍ଣ ଅଳଂକାର ।

ପାର୍ବତୀ ଯଥା ଆଜ୍ଞା ପ୍ରଭୋ ।



## ଟି.ଭି. ଦ୍ୱିତୀୟ ଦୃଶ୍ୟ

(ବୈକୁଣ୍ଠପୁରରେ ଲକ୍ଷ୍ମୀ ଓ ନାରାୟଣ ଆଳାପରତ)

ନାରାୟଣ  କି ଦେଖିଲ ପାର୍ବତୀନିବାସେ ?
କି କର୍ମରେ ମଗ୍ନ ଥିଲେ ହିମାଦ୍ରୀତନୟା ?

ଲକ୍ଷ୍ମୀ  ଶିବନାମ ଜପ କରୁଥିଲେ, କିନ୍ତୁ
କି ବର୍ଣ୍ଣିବି ବେଶ ତାଙ୍କ, କି ବର୍ଣ୍ଣିବି ବାସ,
ବୃକ୍ଷ ମୂଳେ ପତ୍ରାସନେ କରୁଛନ୍ତି ତପ ।
ଅଳଂକାର ବସନରେ ନୁହନ୍ତି ସଜ୍ଜିତ ।

ନାରାୟଣ  ସତୀ ସିଏ,
ପତିବ୍ରତା ନାମେ
ଜଗତେ ବିଦିତ ।
ଶିବପ୍ରାପ୍ତି ଲକ୍ଷ୍ୟ ତାଙ୍କ,
ଶିବ ତାଙ୍କ ଗତି ମୁକ୍ତି ସ୍ଥିତି
ସେହି ହେତୁ ବେଶବାସେ ନରହି ଆସକ୍ତ
କରୁଛନ୍ତି ଦିବାନିଶି ଶିବନାମ ଜପ ।

ଲକ୍ଷ୍ମୀ  ଶିବ କିବା ସଂସାରରେ ସାର

ନାରାୟଣ  ମହାଯୋଗୀ ମହେଶ୍ୱର ସିଏ,

ତାଙ୍କ ଯୋଗଫଳ ଯୋଗୁଁ
ଭୋଗ୍ୟବସ୍ତୁ
ସଂସାରରେ ଲବ୍ଧ,
ଆମ୍ଭେ ଯାହା ଭୋଗକରୁ,
ସବୁ ଶିବଙ୍କର
ଯୋଗଲବ୍ଧ ଫଳ ।

ଲକ୍ଷ୍ମୀ	କିପରି ?

ନାରାୟଣ	ସ୍ୱଚକ୍ଷୁରେ ନକଲେ ଦର୍ଶନ
ପ୍ରତ୍ୟୟ କି ହୋଇବ ମନରେ ?
ତେଣୁ ଦେଖ ଦେବୀ
ଶିବଙ୍କ ମହାତ୍ମ୍ୟ



## ଟି.ଭି. ତୃତୀୟ ଦୃଶ୍ୟ

(ଦେଖାଯାଏ କୁବେର ନିବାସ । କୁବେର ଓ ପାର୍ବତୀ ।)

କୁବେର : ଏ କି କଥା କହୁଅଛ ମାତ,
ମହାଦେବ ବିଭୂତିର ତୁଲ ଅଳଂକାର
ଦେବି ମୁଁ ତୁମ୍ଭଙ୍କୁ !
ତୁମେ ତ ଏ ସଂସାରର ମାତ
ପିତା ପୁଣି ଦେବଙ୍କର ଦେବ ମହାଦେବ
ଆଉ ଅକିଞ୍ଚନ କୁବେର ମୁଁ
ବସିଅଛି ଭଣ୍ଡାର ଦ୍ୱାରରେ
ଭଣ୍ଡାର ରକ୍ଷଣ ଯାହା କର୍ତ୍ତବ୍ୟ ମୋହର,
ଆପଣ ତ ଭଣ୍ଡାରମାଳିକ ।
ଯାହା ତୁମ୍ଭ ଇଚ୍ଛା,
ଯେଉଁ ଅଳଂକାରେ ମନ ଅଛି ମାତ
ଦେଲେ ହିଁ ଆଦେଶ
ଅବିଳମ୍ୱେ ପାଦତଳେ କରିବି ଅର୍ପଣ ।

ପାର୍ବତୀ : ହେ ଧନପତି !
ଏ ସଂସାର-ଭଣ୍ଡାରର ଅଧିପତି

ପାଇଛି ମୁଁ ପ୍ରଭୁଙ୍କ ଆଦେଶ,
ଏ ବିଭୂତି ପରିମାଣେ ଦେଇ ଅଳଂକାର
କରହେ କୃତାର୍ଥ ମୋତେ, ଯିବି ମୁହଁ
କୈଳାସ ଭୁବନେ ।

କୁବେର : ହେ ଦେବୀ ଜଗନ୍ମାତ !
ଘେନ ମା' ବିନତି,
ଯାହା ଇଚ୍ଛା ଅଳଂକାର ଘେନିଯାଅ ମାତ
ଲୋଡ଼ା ନାହିଁ ବିଭୂତି ବଂଧକ ।

ପାର୍ବତୀ : ଏ ଆଦେଶ ନୁହଁଇ ମୋହର,
ଏ ଆଦେଶ ଦେଇଛନ୍ତି ପ୍ରଭୁ ଶୂଳପାଣି,
ଜାଣିଛ ତ ପ୍ରଭୁଙ୍କ ପ୍ରତିଜ୍ଞା ପ୍ରତାପ
କୋପ କଲେ କ୍ଷଣିକରେ ପ୍ରଳୟ ରଚିବେ,
ସେହି ହେତୁ କହୁଛି ହେ ଦେବ,
ଦିଅ ମୋତେ ଅଳଂକାର
ବିଭୂତିର ସମତୁଲ ।

କୁବେର : ନିରୂପାୟ ମୁହିଁ
ତଥାପି ହେ ଦେବୀ ! କରିବେ ମାର୍ଜନା
ତୁମରି ଆଜ୍ଞାରେ
ପ୍ରଦାନ ମୁଁ କରୁଅଛି
ସ୍ୱର୍ଣ୍ଣ ଅଳଂକାର ।

ପାର୍ବତୀ : ନିଅ ଏ ବିଭୂତି ।
(କୁବେର ବିଭୂତି ମୁଣ୍ଡରେ ମାରି ତରାଜୁରେ ପକାନ୍ତି)
(କୁବେର ଗୋଟେ ପରେ ଗୋଟେ ଅଳଂକାର ରଖନ୍ତି, କିନ୍ତୁ ବିଭୂତି ଓଜନିଆ ହେଉଥାଏ । ଶେଷରେ କୁବେର ନିରାଶ ହୋଇ)

କୁବେର : ମାତା ! ଅସହାୟ ମୁହିଁ, ଶୂନ୍ୟ ହେଲା କୁବେର ଭଣ୍ଡାର ।

ପାର୍ବତୀ : ହେ କୁବେର, ଲୋଡ଼ା ନାହିଁ ତୁମ୍ଭ ଅଳଂକାର
ଦିଅ ମୋତେ ପବିତ୍ର ବିଭୂତି ।

କୁବେର : ମା ! (ଦେଲେ)



## ଟି.ଭି. ଚତୁର୍ଥ ଦୃଶ୍ୟ

(ବୈକୁଣ୍ଠପୁରରେ ଲକ୍ଷ୍ମୀ ଆଶ୍ଚର୍ଯ୍ୟଚକିତ - ନାରାୟଣ ହସହସ ମୁହଁରେ ଚାହିଁଥାନ୍ତି)

ନାରାୟଣ    ଦେଖିଲ ତ ଦେବୀ !
ଏତେ ବଡ଼ କୁବେରଭଣ୍ଡାର
ହେଲାନାହିଁ ସମତୁଲ ବିଭୂତି ନିକଟେ ?
ଶିବ, ପୁଣି ବିଭୂତିଭୂଷଣ
ଚିନ୍ତାକର କେତେ ରତ୍ନ କେତେ ସଂପଦର
ଅଧିକାରୀ ସିଏ, ଯେଉଁ ଅଳଂକାର ପିନ୍ଧି ତୁମ୍ଭେ
ଦେଖାଅ ଜଗତରେ
ତାହା କେତେ ତୁଚ୍ଛ, କେତେ ଅଳ୍ପ,
ବିଭୂତି ନିକଟେ !

ଲକ୍ଷ୍ମୀ    କ୍ଷମା କର ପ୍ରଭୋ !
ଜାଗତିକ ଜଡ଼ତାରେ ଅଂଧ ହୋଇ ମୁହିଁ
ପାର୍ବତୀଙ୍କୁ ମଣିଥିଲି ଛୋଟ ।

ନାରାୟଣ    : ଚାଲ ଯିବା କୈଳାସପୁରକୁ
ସାକ୍ଷାତ କରିବା ଯାଇ ବିଭୂତିଭୂଷଣେ ।



## ଟି.ଭି. ପଞ୍ଚମ ଦୃଶ୍ୟ

(କୈଳାସରେ ଶିବଙ୍କ ପାଦତଳେ ପାର୍ବତୀ)

ପାର୍ବତୀ ହେ ପ୍ରଭୋ, ହେ ବିଭୂତିଭୂଷଣ !
ଏତିକି ମାତ୍ରକ ତୁଲ୍ୟ ହେଲା ନାହିଁ
କୁବେରଭଣ୍ଡାର
ଆଉ ପ୍ରଭୁ ମୋର ବିଭୂତିଭୂଷଣ,
ଆନ ଭୂଷଣରେ ଦେଇ ମନ
କରିଅଛି ଅପରାଧ;
ହେ ପ୍ରଭୋ ମହାଯୋଗୀ
କରନ୍ତୁ ଆଶିଷ
ଏହିପରି ଜନ୍ମ ଜନ୍ମ ଧରି ମୋହରି ଭୂଷଣ ଭାବେ
ରହିଥିବେ ବିଶ୍ୱ ବ୍ରହ୍ମାଣ୍ଡରେ ।

ଶିବ (ହସି) ଏହା ଏକ ଜାଗତିକ ମାୟା,
ଏ ମାୟାରେ ଛନ୍ଦିହୋଇ ମର୍ତ୍ତ୍ୟର ମାନବ
ପାପ କର୍ମେ ଘାଣ୍ଟିହୁଏ ମର୍ତ୍ତ୍ୟଲୋକେ ସିନା,
ଦେବତା ପକ୍ଷରେ ସଦା ଅଟେ ଅନୁଚିତ,
ବିଳାସରେ ମଗ୍ନ ହେଲେ ସ୍ୱର୍ଗର ଦେବତା

ଜଗତରେ ବୃଦ୍ଧିପାଏ ଆସୁରିକ ଶକ୍ତି ।

(ଲକ୍ଷ୍ମୀ ଓ ନାରାୟଣ ଆସନ୍ତି)

ଲକ୍ଷ୍ମୀ    ହେ ପ୍ରଭୋ ବିଭୂତିଭୂଷଣ !
ଲଜ୍ଜିତ ମୁଁ, ଅନୁତପ୍ତ ନିଜ କର୍ମ ପାଇଁ,
ହେୟଜ୍ଞାନ କରିଅଛି ଶାଶ୍ୱତ ସତ୍ୟକୁ-
ହେ ଦେବୀ ପାର୍ବତୀ
ତୁମ୍ଭେ ଶ୍ରେଷ୍ଠ ନାରୀ
ଭାଗ୍ୟବତୀ ଏ ସାରା ବିଶ୍ୱରେ ।

ନାରାୟଣ    ହେ ପ୍ରଭୋ କୈଳାସବିହାରୀ !
ତବ ମହାଯୋଗ ଫଳ ଯୋଗୁଁ
ତ୍ରୈଲୋକ୍ୟନିବାସୀ ସ୍ୱଚ୍ଛନ୍ଦରେ
କରୁଛନ୍ତି ଜୀବନଯାପନ, ଏହା
ଚିରନ୍ତନ ସତ୍ୟ
ଏ ସତ୍ୟକୁ ଅବଜ୍ଞା କରି ଯାତନା ଭୋଗନ୍ତି
ଦେବ ଆଉ ମାନବ ଦାନବ

ଶିବ    ହେ ପ୍ରଭୋ ଗୋଲକବିହାରୀ !
ଧନ୍ୟ ହେଲି ଲଭି ତୁମ୍ଭ ଦୁର୍ଲଭ ଦର୍ଶନ ।

ଲକ୍ଷ୍ମୀ    ଦେବୀ ପାର୍ବତୀ,
ଆସ ଯିବା କହି ଏହି ଜଗତଜନଙ୍କୁ
ଭୋଗଠାରୁ ଯୋଗ ମହତ୍ତର ।

ପାର୍ବତୀ    ଭୋଗ ଦିଏ ରୋଗ ଆଉ ଯୋଗ ଦିଏ ଶକ୍ତି ।

ଲକ୍ଷ୍ମୀ    ରୋଗ ଦିଏ ମୃତ୍ୟୁ, ଆଉ ଶକ୍ତି ଦିଏ ମୁକ୍ତି ।

ଶିବ ଓ ନାରାୟଣ : ଜଗତରେ ଏହା ଯାହା ଚିରନ୍ତନ ସତ୍ୟ (ଟି.ଭି.ରେ ଚିତ୍ର ଫ୍ରିଜ୍ ହୋଇ ଲେଖା ବାହାରେ)

| | |
|---|---|
| ଯୁଗଳ | ବାଃ ବାଃ ଚମତ୍କାର ! ଏକଦମ୍ ଚମତ୍କାର ! ବିଭୂତି, ତମେ ସତରେ ବିଭୂତିଭୂଷଣ । |
| ବିଭୂତି | ନାଇଁ ବାବା, ପତ୍ରିକାରେ ଏମିତି, ଏକ ଲେଖା ବାହାରିଥିଲା, ମୁଁ ସେଇଟାକୁ ନାଟ୍ୟରୂପ ଦେଇଛି । |
| ସନ୍ତୋଷ | ବାସ୍ତବିକ, କେତେ ବଡ଼ କଥାଟାକୁ କେତେ ସହଜରେ କହି ଦେଲ ! |
| ଯୁଗଳ | ଯା'କୁଇ କହନ୍ତି ନାଟକୀୟତା, କଳାଚାତୁରୀ, ସାମାଜିକ ଆନ୍ଦୋଳନ । ଏ ସମାଜକୁ ଠିକ୍ ବାଟରେ ଚଳେଇବା ପାଇଁ ଯା'କୁ ସାଂସ୍କୃତିକ ଚାବୁକ କହିପାର । ଆଉ ତମ ଯାତ୍ରାରେ, ଯାବତୀୟ ଭ୍ରଷ୍ଟାଚାର, ନଗ୍ନତା, ଅଶ୍ଳୀଳତା । ତମେ କଲମ ଧରିଛ କାହିଁକି ? ସମାଜକୁ ସୁପଥକୁ ଆଣିବା ପାଇଁ ନା ବିପଥଗାମୀ କରିବା ପାଇଁ ? ଈଶ୍ୱର ତମକୁ ସୃଷ୍ଟିକରିଛନ୍ତି, ତମେ କିଛି ସୃଷ୍ଟିକର, ଧ୍ୱଂସ କରୁଛ କାହିଁକି ? |
| ସନ୍ତୋଷ | ବାସ୍ତବିକ ବିଭୂତି, ତମେ ସତରେ ବିଭୂତିଭୂଷଣ ଆଉ ତମ ଆଗରେ ମୁଁ ଲଜ୍ଜିତ ବିଷ୍ଣୁ । ଆମ ଶାସ୍ତ୍ରରେ ଯେ ଏତେ ସୁନ୍ଦର କଥାମାନ ଅଛି, ତାହା ମୋର ଧାରଣା ନ ଥିଲା । |
| ଯୁଗଳ | କ'ଣ ନାହିଁ ଆମ ଶାସ୍ତ୍ରରେ ? ତେଣୁ ଶୁଣ, ତମେ ଦିହେଁଯାକ ଲେଖକ । ଯଦି ଏ ସମାଜକୁ କେହି ଜଣେ ଉଚିତ ମାର୍ଗରେ ଚଳେଇପାରିବେ, ସେ ଆଉ କେହି ନୁହେଁ, କେବଳ ଲେଖକ । ପୁଣି ନାଟକଲେଖକର ଦାୟିତ୍ୱ ଆଉଟିକିଏ ବେଶି । କାରଣ, ନାଟକ ମାଧ୍ୟମରେ ହିଁ ପ୍ରଭାବଶାଳୀ ସାଂସ୍କୃତିକ ବିପ୍ଳବ କରାଯାଇପାରେ । ପୂଜା ! |
| ପୂଜା | ଏଇ ନିଅ ପାଞ୍ଚହଜାର ଟଂକା, ଆଉ ମୋ'ର ସବୁଯାକ ଅଳଂକାର । ତମ ଗଳ୍ପସଂକଳନଟା ଛାପିଦିଅ । |
| ସମସ୍ତେ | ପୂଜା ! |
| | (ଯବନିକା) |



୨୦୦୨ ଡିସେମ୍ବର 'ଝଙ୍କାର'ରେ ପ୍ରକାଶିତ

'WWW. ବିବେକ ଡଟ୍‌କମ୍'ର

ଚରିତ୍ରମାନେ

- ବିବେକ
- ଚନ୍ଦ୍ର
- ଗୌରମୋହନ
- ରୋଜା
- ରତ୍ନା

# www. ବିବେକ ଡଟ୍‌କମ୍

## ପ୍ରଥମ ଦୃଶ୍ୟ

(ରାସ୍ତାର ଘୋ ଘୋ ଶବ୍ଦ, ମନ୍ଦିରରୁ ଘଣ୍ଟା ଓ ମସ୍‌ଜିଦ୍‌ରୁ ନମାଜ ସାଂଗକୁ ଦୂରରୁ କ୍ଷୀଣସ୍ୱରରେ 'ବିବେକ' 'ବିବେକ' ଡାକ ଶୁଭୁଥାଏ । ଏହି ବିବେକ ଶବ୍ଦର ନିକଟତର ହେବାର ପ୍ରକ୍ରିୟାରେ ମଂଚର ସାମ୍ନାଜୋନ୍‌କୁ ଆଲୋକ ଆସିଲାବେଳକୁ ଦେଖାଯାଏ, ରୋଜା, ଚନ୍ଦ୍ର ଓ ଗୌରମୋହନ ଅନେକେଙ୍କୁ ଖୋଜୁଥାନ୍ତି ଏକ ଅସଂଲଗ୍ନ ମୁଦ୍ରାରେ, ସତେ ଯେମିତି ସେମାନଙ୍କର ବହୁମୂଲ୍ୟ ସଂପଦ ହଜିଯାଇଛି ।)

ରୋଜା	ବିବେକ, ତମେ କୋଉଠି ଅଛ, ବିବେକ ?

ଗୌର	ବିବେକ, ତୁ କୁଆଡ଼େ ଗଲୁରେ, ବାପା ? ଫେରିଆ ରେ, ବାପା !

ଚନ୍ଦ୍ର	ବିବେକ, ତମେ କୋଉଠି ଅଛ ? ଫେରିଆସ ।

(ଆଲୋକ ତୀବ୍ର ହୁଏ - ସମସ୍ତେ ଦେଖାଦେଖିହୁଅନ୍ତି)

ରୋଜା	ବାପା, ତମେ ଏ ଯାଏ ବିବେକଙ୍କୁ ପାଇଲନି ?

ଚନ୍ଦ୍ର	ନା ରେ ମାଆ, ଦୁନିଆଯାକ ଖୋଜିଲିଣି, କୋଉଠି ହେଲେ ବିବେକକୁ ପାଉନି, ଏମିତିକି ତା' ଠିକଣା ମଧ୍ୟ ପାଉନି, ସମୁଦି ! ତମେ କ'ଣ...

ଗୌର	ନା ସମୁଦି, ବହୁତ ଖୋଜିଲିଣି । ହେଲେ..

ରୋଜା	କୁଆଡ଼େ ଆଉ ଗଲେ ?

ଚନ୍ଦ୍ର	ସତେ ଯେମିତି କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ।

ଗୌର	ପିଲାଟିଦିନରୁ ସେଟା ଏମିତି ଅଭିମାନିଆ ।

ରୋଜା        ସେ ମୋ ଉପରେ ରାଗିକି ପଳେଇଲେ ।

ଚନ୍ଦ୍ର        : ପଳେଇଲେ ଯେ କୁଆଡ଼େ ପଳେଇଲେ ?

ଗୌର        କିଏ ଜାଣେ ! କାହାକୁ ପଚାରିବା ?

ରୋଜା        ମନୋରଂଜନ ଜାଣିଥିବେ କି ?

ଗୌର ଓ ଚନ୍ଦ୍ର : ମନୋରଂଜନ ?

ରୋଜା        ହଁ, ତାଙ୍କର ପିଲାଦିନର ବଂଧୁ ।

ଗୌର        ହଁ ହଁ, ସିଏ ନିଶ୍ଚୟ ଜାଣିଥିବ ।

ଚନ୍ଦ୍ର        ସେହି ମନୋରଂଜନ ତ ଅସଲ ଗୋବର୍ଦ୍ଧନ ।

ରୋଜା        ତାଙ୍କୁ ପଚାରିଲେ କେମିତି ହୁଅନ୍ତା ?

ଚନ୍ଦ୍ର        ଯେମିତି ହେଉ, ଚାଲ, ତାଙ୍କୁଇ ପଚାରିବା ।

ଗୌର        ଚାଲ (ସମସ୍ତେ ଯାଆନ୍ତି । ସାମ୍ନା ଜୋନ୍ ଅନ୍ଧାର ହୋଇ ବାମପାର୍ଶ୍ୱ ଜୋନ୍‌କୁ ଆସିଲାବେଳକୁ ଦେଖାଯାଏ ରୋଜା, ଚନ୍ଦ୍ର ଓ ଗୌର ମନୋରଂଜନକୁ ଘେରିଯାଇଥାଆନ୍ତି)

ମନୋରଂଜନ : ବିବେକ ? କୋଉ ବିବେକ ? ମୋ' ପାଖରେ କୌଣସି ବିବେକର ଠିକଣା ନାହିଁ ।

ଗୌର        ତୋତେ ନେହୁରା ହଉଛି ବାପା, ମୋତେ ଆଉ ପୁତ୍ରକଷ୍ଟ ଦେ' ନା । କହିଦେ', ମୋ' ବିବେକ କୋଉଠି ଅଛି ?

ରୋଜା        ତମେ ତ ଜାଣ ମନୋରଂଜନ, ବିବେକ ମୋ' ଶଂଖାସିନ୍ଦୂର । ତାଙ୍କୁ କୋଉଠି ରଖିଛ, ମୋତେ ଫେରେଇଦିଅ ।

ମନୋ        ଶଂଖାସିନ୍ଦୂର ? (ହସିଲେ)

ଚନ୍ଦ୍ର        ଦେଖ ମନୋରଂଜନ, କେବଳ ବିବେକର ବଂଧୁ ବୋଲି ମୁଁ ଏତେ ସମୟ ଧୈର୍ଯ୍ୟ ଧରି ହାତପାତି ଛିଡ଼ାହୋଇଛି ।

ମନୋ        ନ ହେଲେ ?

ଗୌର        ଏ ମନୋରଂଜନ, ପୁତ୍ରହରା ବାପର ଦୁଃଖ ଦେଖିଛୁ, ଆଉ ସେ ଦୁଃଖ ଯଦି କେବେ କ୍ରୋଧରେ ପରିଣତ ହୁଏନା...

ମନୋ (ହସି) ତା'ହେଲେ ?

ରୋଜା ଶଂଖା ସିନ୍ଦୂରର ସୁରକ୍ଷା ପାଇଁ ନାରୀ ବି ହାତରେ (ଛୁରୀ ବାହାର କରେ)

ଚନ୍ଦ୍ର ମୁଁ ବି ଖାଲିହାତରେ ଆସିନି, ମନୋରଂଜନ (ପିସ୍ତଲ ବାହାରକରେ) ।

ମନୋ ଏଁ ! ପିସ୍ତଲ ?

ଗୌର ତୋର ଏ ଗଳାଟାକୁ ଚିପିଦେବା ପାଇଁ ଏ ହାତୁଆ ହାତ ହିଁ ଯଥେଷ୍ଟ ।

ମନୋ (ଅପ୍ରସ୍ତୁତ ହୋଇ) ଏଁ ! ନା ନା..

ଚନ୍ଦ୍ର କହୁଛୁନା, ଏବେ ଦେଖିବୁ ?

ମନୋ ନା ନା, ମୁଁ ସତ୍ କହୁଛି, ମୋ' ପାଖରେ ବିବେକ ନାହିଁ।

ରୋଜା ମନୋରଂଜନ !

ଗୌର କହୁଛୁନା, ଏବେ ଦେଖିବୁ ?

ସମସ୍ତେ କହ, କହ, ବିବେକ କୋଉଠି ?

ମନୋ ମୁଁ ସତ କହୁଛି, ମୋ' ପାଖରେ ବିବେକ ନାହିଁ । ତା' ଠିକଣାଟା...

ସମସ୍ତେ କାହିଁ ତା' ଠିକଣା ?

ମନୋ ଏଇ, ବିବେକର ଠିକଣା ତ ? ଭିଜିଟିଙ୍ଗ୍ କାର୍ଡ୍...

ଚନ୍ଦ୍ର ଓ ରୋଜା : ଭିଜିଟିଙ୍ଗ୍ କାର୍ଡ୍ !

ଗୌର କାହିଁ, ଦେଖି !

ଚନ୍ଦ୍ର ଏଇ ପରା ।

ରୋଜା : www ଡଟ୍ ବିବେକ ଡଟ୍‌କମ୍ ।

ଚନ୍ଦ୍ର ଇଏ ତ ୱେବ୍ ସାଇଟ୍‌ର ଠିକଣା ।

ମନୋ ହଁ, ବିବେକ ଏବେ ଏଇ ଠିକଣାରେ ହିଁ ଉପଲବ୍ଧ ।

ଗୌର ତା'ହେଲେ, ଚାଲ ଯିବା ବିବେକ ପାଖକୁ ।

ଅନ୍ୟମାନେ : ଚାଲ । (ସମସ୍ତେ ଯାଆନ୍ତି । ସାମ୍ନା କୋନ୍ ଅନ୍ଧାର ହୁଏ । ଆଲୋକ ଆସେ ପଛ କୋନ୍‌ର ପାଦଦେଶକୁ । ରୋଜା, ଚନ୍ଦ୍ର ଓ ଗୌରା

ସେଠି ଛିଡ଼ାହୋଇ ୱେବ୍ ସାଇଟ୍ ଖୋଲିବାର ମୁଦ୍ରା ପ୍ରକାଶ କରନ୍ତି ।)

ସମସ୍ତେ (ରିମୋଟ୍ ଧରି) www ଡଟ୍ ବିବେକ୍ ଡଟ୍‌କମ୍ ।

(ପଛପାଖ ଜୋନ୍‌ର ପରଦା ଉଠିଯାଏ, ଟି.ଭି. ପରଦା ଭଳି ଆଲୋକରେ ବିବେକ ଉଭାହୁଅନ୍ତି ।

ସମସ୍ତେ ଏଇ ବିବେକ ।

ଗୌର ସମୁଦି, ଏଇ ଆମ ବିବେକ ।

ରୋଜା ହଁ ଡାଡି, ଏଇ ବିବେକ.. ।

ଚନ୍ଦ୍ର ବିବେକ ।

ବିବେକ ହଁ, ମୁଁ ବିବେକ । ମୁଁ ବର୍ତ୍ତମାନ www ଡଟ୍ ବିବେକ ଡଟକମ୍ ଠିକଣାରେ ଉପଲବ୍ଧ । ମୁଁ କ୍ରିକେଟିୟର ବିବେକ ଦାସ, ଡକ୍ଟର ବିବେକ ମହାନ୍ତି ଅବା ମିନିଷ୍ଟର ବିବେକ ମହାପାତ୍ର ହୋଇପାରେ । ମୁଁ ଯିଏ ହେଲେ ବି ବିବେକ ନାମରେ ଏଇ ଠିକଣାରେ ଆବଦ୍ଧ । ମୁଁ କିପରି ଏଇ ଠିକଣା ଭିତରକୁ ପଶିଗଲି, ତାହା ଶୁଣିବା ହୁଅନ୍ତୁ ସୁଧୀଜନେ । ଆଜ୍ଞା କହିବେ କି, ଏ ଶତାବ୍ଦୀର ସବୁଠାରୁ ଲୋକପ୍ରିୟ ଖେଳ କ'ଣ ? ମୁଁ ଯଦି କହେ କ୍ରିକେଟ୍, ଏକମତ ହେବେ ନିଶ୍ଚୟ । ତା'ହେଲେ ମଣିଷଜୀବନକୁ ନେଇ ଏମିତି ଏକ କ୍ରିକେଟ୍ ପିଚ୍‌ରେ ବିଛେଇଦେଲେ କେମିତି ହୁଅନ୍ତା ? ତେଣୁ ଧରିନିଅନ୍ତୁ, ମୁଁ ଆପଣଙ୍କର ଅତିପ୍ରିୟ କ୍ରିକେଟିୟର ବିବେକ ଦାସ ।

ସମସ୍ତେ (ଚାପାସ୍ୱରରେ) କ୍ରିକେଟିୟର ବିବେକ ଦାସ ?

ବିବେକ ହଁ, ମୋର ମନେପଡ଼େ... ସେଦିନ, ଆପଣ ବି ମନେପକାନ୍ତୁ, ମୁଁ ବ୍ୟାଟ୍ ଧରି ବାଡ଼ଉଥାଏ (ରେଡିଓ ବା ଟି.ଭି. କମେଣ୍ଟ୍ରି ମାଧ୍ୟମରେ ଅତୀତ ସାମ୍ନାକୁ ଆସେ । ଫ୍ଲାସ୍‌ବାକ୍ ଆରମ୍ଭ ହେବାରୁ ପଛପାଖ ଜୋନ୍ ଅନ୍ଧାର ହୋଇ ଡାହାଣ ପାଖ ଜୋନ୍‌କୁ ଆଲୋକ ଆସିବାରୁ ଦେଖାଯାଏ, ରତ୍ନା ଟି.ଭି. ଦେଖୁଥାଏ, ଆନନ୍ଦିତ ହେଉଥାଏ । କିଛି ସମୟ ପରେ ରୋଜା ପହଞ୍ଚେ)

ରୋଜା : କେତେ ହେଲା, ରତ୍ନା ?

ରତ୍ନା ଆଉ ଛ' ବଲ୍‌ରେ ଚବିଶ ରନ୍ ।

| | |
|---|---|
| ରୋଜା | ଛ'ବଲରେ ଚବିଶ ରନ୍ ? ବିବେକ୍ ବେଟିଂ କରିବ ତ ? |
| ରନ୍। | କ'ଣ କରିବ କେଜାଣି ? ଏଇ ତ ଫାଷ୍ଟ ବଲ୍ । |
| ରୋଜା | ମାର ବିବେକ୍, ମାର... |
| ରନ୍। | ଓଃ ସିକ୍ସ.. |
| ରୋଜା | ଆଉ ପାଞ୍ଚ ବଲ୍‌ରେ ଅଠର ରନ୍ । |
| ରନ୍। | ଏଇ ସେକେଣ୍ଡ ବଲ୍ । |
| ରୋଜା | ଓଃ, ଆଉ ଗୋଟାଏ ଛକା । |
| ରନ୍। | ମାର, ମାର ଓଡ଼ିଆ ହିରୋ, ମାର୍... |
| ରୋଜା | ଆଉ ଚାରି ବଲ୍ - ବାର ରନ୍ । |
| ରନ୍। | ମାନେ ଯୋଡ଼ାଏ ଛକା । |
| ରେଜା | ତିନିଟା ବାଉଣ୍ଡେରି ହେଲେ ବି ହଉ । |
| ରନ୍। | ଏଇ,ଦେଖ ଦେଖ, ଆଉ ଗୋଟାଏ ଛକା, କହୁଛୁ କ'ଣନା ଚୌକା। ସିଏ ବିବେକ ଦାସଟି, ବ୍ୟାଟ୍ ଉଠେଇଲେ ଛକ୍କା । |
| ରୋଜା | ଆଉ ତିନି ବଲ, ଛଅରନ୍ । |
| ରନ୍। | ଏଇ ନେ' ଶେଷ ଛକା, ଆଃ.. । |
| ରୋଜା | ଓଃ ଇସ୍, ଯାଇଥିଲା ତ ? ଏବେ କେମିତି ମିସ୍ କରିଦେଲା ! |
| ରନ୍। | ଏଇନେ ତ ବୋଲ୍ଡ ହୋଇଯାଇଥାଆନ୍ତା । |
| ରୋଜା | ଏ କ୍ରିକେଟ୍ ତ ଏମିତି ଖେଳ । କେତେବେଳେ ଯେ ବୋଲ୍ଡ ହୋଇଯିବ, କହିହେବନି । |
| ରନ୍। : | ଏ ବିବେକଟା ଯେମିତି ଟାଲଣ୍ଟେଡ୍ ହୋଇଛି ନା, ଯା'କୁ ଲାଇଫ୍- କ୍ରିକେଟ୍‌ରେ କିଏ ବୋଲ୍ଡ କରିବ, କେଜାଣି... । |
| ରୋଜା | (ଦୀର୍ଘଶ୍ୱାସ ଛାଡ଼ି) କୋଉ ଭାଗ୍ୟବତୀ ହାତରେ ଯା' ଓ୍ୱିକେଟ୍‌ଟା ପଡ଼ିବ, କେଜାଣି । |
| ରନ୍। | ମୁଁ ଚାହିଲେ ଯା' ଓ୍ୱିକେଟ୍‌ଟା ନେଇଯାଆନ୍ତି ଯେ'... |

ରୋଜା	ତୁ ?

ରତ୍ନା	କାହିଁକି, ତୋର ଈର୍ଷା ହେଉଛି ?

ରୋଜା	ଏଇ ଏଇ, ନେ' ଶେଷ ଛକା ।

(ଗୋଟେ ଜୋର ହଲ୍ଲା ଶୁଣାଯାଏ । ରୋଜା ରତ୍ନା ଆନନ୍ଦରେ ବିହ୍ୱଳ ହୋଇ ଉଠିପଡ଼ନ୍ତି । ଅନ୍ଧାର ହୁଏ । ଆଲୋକ ଆସେ ବାଆଁପାଖ ଜୋନ୍‌କୁ । କଥାବାର୍ତ୍ତା ହେଉଥାନ୍ତି ଚନ୍ଦ୍ର ଓ ରୋଜା ।)

ଚନ୍ଦ୍ର	କ'ଣ କହିଲୁ ? ରତ୍ନା । ଆମ ରମେଶ ପଟ୍ଟନାୟକଙ୍କ ଝିଅ ରତ୍ନା ? ସିଏ କହୁଛି, ବିବେକର ୱିକେଟ୍ ନେଇଯିବ । (ହସନ୍ତି) ସେ ବୋଧେ ଜାଣିନି ବିବେକ କିଏ ।

ରୋଜା	ତମେ କ'ଣ ବିବେକ ଦାସକୁ .. ଜାଣ ?

ଚନ୍ଦ୍ର	ତୋ'ର ବି ହୁଏତ ମନେଥାଇପାରେ, ରୋଜା । ତୁ ପିଲା ହୋଇଥିଲୁ, ଆମ ଘରେ ଜଣେ ଚାକର ଥିଲା ଗଉରା, ଗଉରା ମ...

ରୋଜା	ଗଉରା ?

ଚନ୍ଦ୍ର	ହଁ, ତା'ର ଗୋଟେ ପୁଅ ଥିଲା । ସବୁବେଳେ କ୍ରିକେଟ୍ ଖେଳୁଥିଲା । ଏମିତି ଥରେ ବଲ୍ ବଜେଇ ଆମ ଗାଡ଼ିର କାଚ ଭାଂଗି ଦେଇଥିଲା, ମନେପଡୁନି ?

ରୋଜା	ହଁ ହଁ, ତମେ ପାଟିକଲ । ତା' ବାପା ତାକୁ ପିଟିପିଟି...

ଚନ୍ଦ୍ର	ତା' ବେଟ୍‌କୁ ଛଡ଼େଇ ଚୁଲିରେ ଜାଳିଦେଇଥିଲା ।

ରୋଜା	ତା'ପରେ ତାକୁ ଜର ଧରିଲା ଯେ ଆଉ ଛାଡ଼ିଲାନି...

ଚନ୍ଦ୍ର	ତୋ' ମମି କ'ଣନା ମୋତେ ଲୁଚେଇ ତା' ପାଇଁ ଗୋଟେ ବେଟ୍ ମଗେଇଦେଲା ।

ରୋଜା	ହଁ, ତା' ନାଁ ବି ତ ବିବେକ ଥିଲା ।

ଚନ୍ଦ୍ର	ହଁ, ସେହି ଗଉରାର ପୁଅ ବିବେକ ଆଜି ବିବେକ ଦାସ ।

ରୋଜା	ପିଲାଟା ଖୁବ୍ ଜନପ୍ରିୟ...ନୁହେଁ ଡାଡି ?

ଚନ୍ଦ୍ର	ଅଫ୍‌କୋର୍ସ୍, ଆଉ ସେଇଥିପାଇଁ ରତ୍ନା...ଡୋଣ୍ଟ୍ ୱରି, ତୁ ଯା'

(ମନେମନେ) ଗୌରମୋହନ, ଆଉ ମିନ୍ ଗଉରାର ପୁଅ ବିବେକ ଆଜି ୱାର୍ଲ୍ଡ ଫେମସ୍ କ୍ରିକେଟିୟର ବିବେକ ଦାସ । ରୋଜା ପାଇଁ ଟ୍ରାଏଲ ନେଲେ.. କ୍ଷତି କ'ଣ ? ମୁଁ ଜଷ୍ଟ୍ ଆସୁଛି, ରୋଜା (ଚନ୍ଦ୍ର ଚାଲିଯାଆନ୍ତି । ରୋଜା ଭାବନାରେ ମଗ୍ନରହେ ।)

ରୋଜା	ବିବେକ ଦାସ, ତମ ଉଇକେଟ୍‌ଟା ତା'ହେଲେ ଏତେ ପାଖରେ ? (ସ୍କୁଟର ଶବ୍ଦରେ ଅନ୍ଧାର ହୁଏ । ପଛପାଖ ଜୋନ୍‌କୁ ଆଲୋକ ଆସେ । ବିବେକ ଦାସର ଡ୍ରଇଂରୁମ୍, ଅତ୍ୟାଧୁନିକ କ୍ରିକେଟିୟରର ପସନ୍ଦ ମାଫିକ ସାଜସଜ୍ଜାରେ ଘରଟି ସଜ୍ଜିତ । କଲିଂବେଲ୍ ବାଜେ । ଗୌରମୋହନ ଭିତରୁ ବ୍ୟସ୍ତ ହୋଇ ଆସନ୍ତି ।)

ଗୌର	କିଏ ? ଯାଉଛି ଯାଉଛି । (ଯାଇ କବାଟ ଖୋଲନ୍ତି)

ସାର୍ (ଚନ୍ଦ୍ର ଆସନ୍ତି) ଆପଣ ? ନମସ୍କାର, ଆସନ୍ତୁ ଆସନ୍ତୁ । ମୋ'ର ଆଜି କି ଭାଗ୍ୟ !

ଚନ୍ଦ୍ର	ନାଇଁ ନଇଁ, ମୋତେ ଏତେଦିନ ପରେ ବି ଚିହ୍ନିପାରିଲ ? ମୁଁ ଭାବିଥିଲି...

ଗୌର	ଇଏ କି କଥା ସାର୍ ! ସାତ ବର୍ଷ କାଳ ପରା ଆପଣଙ୍କର ଅନ୍ନ ଖାଇ ବଂଚିଥିଲି । ଅନ୍ନଦାତାଙ୍କୁ ଭୁଲିଯିବି ?

ଚନ୍ଦ୍ର	ନାଇଁ, କଥା କ'ଣକି ଗଉରା, ସରି ଗୌରମୋହନ....

ଗୌର	ନାଇଁ, ନାଇଁ, ସାର୍, ଆପଣଙ୍କ ମୁହଁରେ ଗଉରାଟା ଯେତେ ସୁନ୍ଦର ଶୁଭୁଛି, ଗୌରମୋହନଟା ଜମାରୁ ସେମିତି ଶୁଭୁନି । ଆସନ୍ତୁ, ବସନ୍ତୁ, ସାର୍, ମୁଁ ଚା' ଆଣୁଛି ।

ଚନ୍ଦ୍ର	ଚା' ତମେ ଆଣିବ ?

ଗୌର	ସାର୍, ଏଇ ହାତରେ ତ ଆପଣଙ୍କୁ କେତେ ଚା' ପିଆଇଛି, ଆଉ ଆଜି ପିଆଇବିନି ?

ଚନ୍ଦ୍ର	ନାଇଁ, ମୁଁ କ'ଣ କହୁଥିଲିକି...

ଗୌର	ନା ସାର୍, ଏ ଘରେ କେହି ଚାକରପୂଝାରୀ ନାହାନ୍ତି । ସବୁକାମ ମୁଁ ମୋ ନିଜହାତରେ କରୁଛି, କାହିଁକିନା ମୋତେ ମାଲିକ ହେବାକୁ ଲାଜଲାଗୁଛି ।

| | |
|---|---|
| ଚନ୍ଦ୍ର | (ମନେମନେ) ତୋତେ ଯେମିତି ମାଲିକ ହେବାକୁ ଲାଜଲାଗୁଛି, ମୋତେ ସେମିତି ଚାକର ହେବାକୁ ଲାଜଲାଗୁଛି । |
| ଗୌର | ସାର୍, ମୋତେ କ'ଣ କିଛି କହିଲେ ? |
| ଚନ୍ଦ୍ର | ନାଇଁ, କଥା କ'ଣକି ଗୌରମୋହନ, ମୁଁ ତମପାଖକୁ ଗୋଟିଏ ବିଶେଷ କାମରେ ଆସିଥିଲି । କେମିତି ଯେ କହିବି, ଭାବିପାରୁନି... |
| ଗୌର | ସାର୍,କହିବେ କ'ଣ, ଆଦେଶ କରନ୍ତୁନା, ମୁଁ ଆଜି ବି ଆପଣଙ୍କ ପାଖରେ ସେହି, ଖାଇପିଇକି ଅଢ଼େଇଶହ ଟଙ୍କା ପାଉଥିବା ଗଉରା... |
| ଚନ୍ଦ୍ର | ମୋ' କଥା ରଖିବ ତ ? |
| ଗୌର | ମୁଁ କଥାଦେଉଛି ପରା, କୁହନ୍ତୁ... । |
| ଚନ୍ଦ୍ର | କଥା କ'ଣକି, ମୋ' ଝିଅ ରୋଜା... (ମୋଟରସାଇକେଲ ଆସିବାର ଶବ୍ଦରେ ଚନ୍ଦ୍ର କହିଚାଲନ୍ତି । କିଛି ସମୟ ପରେ ଅନ୍ଧାର ହୁଏ । ପୁଣି ଆଲୋକ ଆସିଲାବେଳକୁ ଦେଖାଯାଏ, ବିବେକ ଓ ଗୌର କଥାବାର୍ତ୍ତା କରୁଛନ୍ତି ।) |
| ବିବେକ | ବାହାଘର ? ମୋର ? ନାଇଁ ବାପା, ଏତେ ଶୀଘ୍ର ନୁହେଁ । |
| ଗୌର | ଏତେ ଶୀଘ୍ର ! ତୋ' ବୟସ କେତେ ହେଲାଣି, ଜାଣୁ ? ତୋ ବୋଉ ବଂଚିଥିଲେ, ଏ କାମ କେତେଦିନୁ ସରନ୍ତାଣି । |
| ବିବେକ. | ନାଇଁ ବାପା, ମୋ କ୍ୟାରିୟର ..ମୋ' ଫ୍ୟୁଚର.. |
| ଗୌର | ଆରେ ବାଇଆ, ବାହାସାହା ହେଲେ ଲୋକର ଉନ୍ନତି ହୁଏ । ତା'ଛଡ଼ା, ନିଜେ ଚନ୍ଦ୍ରଶେଖର ମହାନ୍ତି ଯେତେବେଳେ... ଚନ୍ଦ୍ରଶେଖର ମହାନ୍ତିଙ୍କୁ ଜାଣୁ ତ ? |
| ବିବେକ | ସେ ପରା ଦିନେ ତମର, ମାନେ ଆମର ମାଲିକ ଥିଲେ ? |
| ଗୌର | ସେଇଥିପାଇଁ ତ କହୁଛି, ଯିଏ ଦିନେ ମୋର ମାଲିକ ହୋଇ ମୋତେ ହୁକୁମ କରୁଥିଲା, ସେ ଆଜି ତା' ଝିଅପାଇଁ ମୋ ପାଖରେ ହାତ ପାତୁଛି । |
| ବିବେକ | ତୁମେ ଭୁଲିଯାଉଛ ବାପା, ସେ ନୃଶଂସ ଆଉ ନିଷ୍ଠୁର । |

| | |
|---|---|
| ଗୌର | ତୁ ବି ଭୁଲିଯାଉଛୁ ବିବେକ, ତାଙ୍କ ସ୍ତ୍ରୀ ମା'ଲକ୍ଷ୍ମୀଙ୍କୁ । ସାକ୍ଷାତ ଲକ୍ଷ୍ମୀ ଠାକୁରାଣୀ, ତୁ ଜରରେ ପଡ଼ିଥିଲୁ, ରାତିରାତି ତୋ ପାଖରେ ବସି ତୋ' ସେବା କରୁଥିଲେ । ତୋ ପାଇଁ ସେ ବାବୁଙ୍କଠୁଁ କେତେ ଗାଳି ନ ଶୁଣିଛନ୍ତି । ଶେଷରେ ତାଙ୍କରି ଦେଇଥିବା ବେଟ୍‌କୁ ନେଇ ତୁ ଆଜି ଏତେବଡ଼ ହୋଇଛୁ । ସେ ତୋତେ ବେଟ୍ ଦେଲାବେଳେ କ'ଣ କହିଥିଲେ, ଜାଣୁ ? |
| ବିବେକ | ଏ ବେଟ୍ ତୋତେ ବିଶ୍ୱବିଜୟୀ କରୁ । |
| ଗୌର | ବାସ୍, ସେହି ଲକ୍ଷ୍ମୀ ମା'ଙ୍କ ଝିଅକୁ ତୁ... ଛାଡ଼, ମୁଁ ବା ତୋତେ ବାଧ କରିବି କାହିଁକି ! ତୁ ଏବେ ବଡ଼ ହୋଇଗଲୁଣି । |
| ବିବେକ | ନାଇଁ ବାପା, ମୁଁ ତମର ଅବାଧ ହେବିନି...ହେଲେ... (କଲିଂ ବେଲ୍ ବାଜେ ।) |
| ଗୌର | କିଏ ? |
| ବିବେକ | ମୁଁ ଦେଖୁଛି (କବାଟ ଖୋଲେ, ମନୋରଂଜନ ଆସେ) |
| | ଆରେ ମନୋରଂଜନ, ତୁ ! |
| ମନୋ | ତୁ ମୋତେ ଚିହ୍ନିପାରିଲୁ ? |
| ବିବେକ | ପିଲାଦିନର ବଂଧୁକୁ କ'ଣ ଭୁଲିହୁଏ ? |
| ମନୋ | ନାଇଁ, ଏତେ ଯଶଖ୍ୟାତି ଆଉ ପ୍ରାଚୁର୍ଯ୍ୟ ଭିତରେ... |
| ବିବେକ | ଆରେ, ଯଶଖ୍ୟାତି କ'ଣ ବଂଧୁକୁ ଭୁଲେଇଦିଏ ? ଆ ଆ, ଭିତରକୁ ଆ । ବାପା ମୋ' ବଂଧୁ ମନୋରଂଜନ । |
| ଗୌର | ମନୋରଂଜନ । |
| ମନୋ | ନମସ୍କାର ମଉସା । |
| ଗୌର | ବାସ୍ । ତମେ ଆସିଗଲ, ମୋ' କାମ ଏବେ ହାଲୁକା ହୋଇଗଲା । |
| ମନୋ | ମାନେ ? |
| ଗୌର | ଏଇ ବିବେକର ବାହାଘର । |
| ମନୋ | କ'ଣ ରାଜିହଉନି ? ଏଇ ହେଇଗଲା, ମଉସା (ସମସ୍ତେ ହସନ୍ତି ।) |

ବିବେକ (ଫ୍ରିଜ୍ ହୋଇ) ବାସ୍ । ପ୍ରିୟ ବଂଧୁ ମନୋରଂଜନର ପ୍ରରୋଚନା, ଉଦାର ନିଷ୍କପଟ ବାପା ଗୌରମୋହନଙ୍କ ଅନୁଜ୍ଞା ଆଉ କୁଶଳୀ କପଟୀ ଶ୍ୱଶୁର ଚନ୍ଦ୍ର ମହାନ୍ତିଙ୍କ ନିର୍ଦ୍ଦେଶରେ ରୋଜାର କୋମଳ ହାତ ଯୋଡ଼ିକ ମୋର ବଳିଷ୍ଠ ବ୍ୟାଟ୍‌ଧରା ପାପୁଲିକୁ ଜଡ଼େଇଧରେ ।

(ଧୀରେଧୀରେ ଅନ୍ଧାର ହୋଇ ସେହି ଜୋନ୍‌କୁ ଆଲୋକ ଆସିଲାବେଳକୁ ଦେଖାଯାଏ, ରୋଜା ବୋହୂବେଶରେ ସୋଫାରେ ବସିଥାଏ, ରତ୍ନା ଆସେ ସନ୍ତର୍ପଣରେ ।)

ରତ୍ନା କନ୍‌ଗ୍ରାଚୁଲେସନ୍‌ସ, ରୋଜା ।

ରୋଜା (ବିସ୍ମିତ ହୋଇ) ଆରେ ରତ୍ନା, ତୁ ! ଆ' ଆ' ।

ରତ୍ନା ଯାହାହଉ, ଇଣ୍ଡିଆ ଟିମ୍‌ର ଦାମିକା ଓ୍ୱିକେଟ୍‌ଟାକୁ ପର୍ସ୍‌ରେ ପକେଇଦେଲୁ । ହେଲା, ତୋ' ବ୍ୟାଟ୍‌ସମେନ କାହାନ୍ତି କି ?

ରୋଜା ଫିଲ୍‌ଡ ଯାଇଛନ୍ତି ।

ରତ୍ନା ଏଇ ପରା କ୍ରିକେଟିୟରମାନେ ଫିଲ୍‌ଡରେ, ନହେଲେ କ୍ୟାମ୍ପ୍‌ରେ । କିଛି ନ ହେଲେ ଟୁର୍‌ରେ । କ'ଣ ବେଡ୍‌ରୁମ୍‌କୁ ଆସନ୍ତି । ମୁଁ ଚାହିଥିଲେ କ'ଣ, ବିବେକ ଦାସର ଓ୍ୱିକେଟ୍‌ଟା ନେଇପାରିନଥାନ୍ତି ? ଏଥିପାଇଁ ଇଚ୍ଛା ହେଲାନି । ହଉ, ଏଇ କାର୍ଡ୍ ରହିଲା... ଆସନ୍ତା ଦଶ ତାରିଖ ମଂଗଳବାର ହୋଟେଲ ସ୍ୱସ୍ତିରେ...

ରୋଜା କ'ଣ ତୋତେ ବି ଓ୍ୱିକେଟ୍ ମିଳିଗଲା ନା କ'ଣ ?

ରତ୍ନା ନାଇଁ ବାବା ନାଇଁ, ଓ୍ୱିକେଟ୍ ପଛରେ ଗୋଡ଼େଇବା ଝିଅ ମୁଁ ନୁହେଁ । ପାଓ୍ୱାର ଯେତେବେଳେ ମୋ' ପଛରେ ଗୋଡ଼ଉଛି, ମୁଁ କାହିଁକି କାହା ପଛରେ ଗୋଡ଼େଇବି, କହିଲୁ ?

ରୋଜା ପାଓ୍ୱାର !

ରତ୍ନା ହଁ, ରୁଲିଂ ପାର୍ଟିର ପ୍ରେସିଡେଣ୍ଟଙ୍କ ଏକମାତ୍ର ପୁତ୍ର ଷ୍ଟେଟ୍ ୟୁଥ ଫୋରମ୍‌ର ପ୍ରେସିଡେଣ୍ଟ ସୁବୋଧ ମହାନ୍ତି... । ବାପାମାଆ, ମାମୁମାଇଁଙ୍କ ସହିତ ଆମ ଘରେ ଲାଇନ୍ ଲଗେଇଛନ୍ତି ।

ରୋଜା ଇଜ୍ ଇଟ୍ ?

| | |
|---|---|
| ରତ୍ନା | ମୁଁ କଲେଜ ୟୁନିୟନ୍ ପ୍ରେସିଡେଣ୍ଟ୍ ଥିଲି ତ, ପଲିଟ୍‌କସ୍‌ରେ ଏକ୍‌ସିପରିଏନ୍‌ସ ଅଛି, ତାଙ୍କୁ ହେଲ୍ପ କରିବି, ମାନେ ମହିଳା ମୋର୍ଚ୍ଚା ଆଦି... |
| ରୋଜା | ଓ.କେ. ବେଷ୍ଟ୍ ଅଫ୍ ଲକ୍ । |
| ରତ୍ନା | ମୋର ସମୟ ନାହିଁ - ତୋ' ବ୍ୟାଟ୍‌ସମ୍ୟାନ୍‌ଙ୍କୁ ସାଂଗରେ ଧରି ଯିବୁ । (ବାହାରେ ଗାଡ଼ି ଅଟକିବାର ଶବ୍ଦ ।) |
| ରୋଜା | ଏଇ ବୋଧହୁଏ ଆସିଗଲେ, (ଦେଖି) ହଁ । |
| ରତ୍ନା | ମୁଁ ତେବେ ଆସୁଛି (ବିବେକ ଆସନ୍ତି ।) |
| ରୋଜା | ରହ, ଇଏ ମୋ ବଂଧୁ ରତ୍ନା । |
| ରତ୍ନା | ହାଲୋ:... |
| ବିବେକ | ଥାଙ୍କ୍ ୟୁ... (ଭିତରକୁ ଚାଲିଯାଆନ୍ତି ।) |
| ରତ୍ନା | କ'ଣ ସିଧା ଭିତରକୁ ଚାଲିଗଲେ ! |
| ରୋଜା | ବ୍ୟସ୍ତ ଅଛନ୍ତି, ବୋଧେ । |
| ରତ୍ନା | ଥିବେ । ହେଲା, ମୁଁ ଆସୁଛି । ଭୁଲିଯିବୁନି । |
| ରୋଜା | ନା ନା - ( ରତ୍ନା ଚାଲିଯାଏ - ଭିତରୁ କହି କହି ଆସନ୍ତି ଗୌର ଓ ଚନ୍ଦ୍ର ।) |
| ଚନ୍ଦ୍ର | ନାଇଁ ନାଇଁ, ମୁଁ କ'ଣ ଏକବାରେ ଚାଲିଯାଉଛି ? ମଝିରେମଝିରେ ଆସିବିନା... |
| ଗୌର | ନା ନା, ଏ ଘର କ'ଣ ଆପଣଙ୍କର ନୁହେଁ । |
| ଚନ୍ଦ୍ର | ଆରେ ସମୁଦି, ଯେତେହେଲେ ଝିଅଘର, ଝିଅଘରେ ବାପକୁ କୁଣିଆ କୁହାଯାଏ । ମୋ' ଭଳିଆ ଲୋକ ଏମିତି କୁଣିଆ ହୋଇ କେତେଦିନ ରହିପାରିବ, କହିଲ ? |
| ରୋଜା | କ'ଣ କହିଲେ, ଡାଡି ! ଏ ଘରେ ଆପଣ କୁଣିଆ ? |
| ଗୌର | ସେଇକଥା ମାଆ, ଝିଅ ଦେଇ ପୁଅ କରିଛନ୍ତି । ତାଙ୍କର ଯେମିତି ଗୋଟେବୋଲି ଝିଅ, ମୋ'ର ବି ସେମିତି ଗୋଟେବୋଲି ପୁଅ, ଏଠି କିଏ କାହାର କୁଣିଆ ? |

ଚନ୍ଦ୍ର	ହେଲା ବାବା ହେଲା, ତମ କଥାରେ ନହେଲେ ଆଉ କିଛିଦିନ ରହିଗଲି ।

ଗୌର	ଆସନ୍ତୁ ଆସନ୍ତୁ, ଆଣନ୍ତୁ ସେ ବେଗ୍ । (ବେଗ୍ ଧରନ୍ତି)

ଚନ୍ଦ୍ର	ମୁଁ ଯାହା ଦେଖୁଛି, ତମେ ଇମ୍ପାରୁ ଛାଡ଼ିବନି ।

ଗୌର	ଆସନ୍ତୁ (ଟାଣିଟାଣି ନେଇଯାଆନ୍ତି । ଆସନ୍ତି ବିବେକ ।)

ବିବେକ	ମୁଁ ଆସୁଛି, ବାବା ।

ରୋଜା	କ'ଣ ହେଲା, ଏବେ ପରା ଆସିଲ, ପୁଣି... ?

ବିବେକ	ଆଜି ପୁଲିସ୍ ପଡ଼ିଆରେ ଗୋଟେ ମେଚ୍ ଅଛି । ମୋତେ ମୋ ପ୍ୟାରେଣ୍ଟ କ୍ଲବ୍, ମାନେ ଜୟଦୁର୍ଗା କ୍ଲବ୍ ତରଫରୁ ଖେଳିବାକୁ ପଡ଼ିବ ।

ରୋଜା	ପୁଲିସ୍ ପଡ଼ିଆରେ । ତମେ ବିବେକ ଦାସ, ଜଣେ ଇଣ୍ଟରନ୍ୟାସନାଲ କ୍ରିକେଟିୟର, ଜୟଦୁର୍ଗା କ୍ଲବ୍ ପାଇଁ ପୁଲିସପଡ଼ିଆରେ ଖେଳିବ ।

ବିବେକ	ହଁ, ଏଇ ପୁଲିସ ପଡ଼ିଆ ଆଉ ଜୟଦୁର୍ଗା କ୍ଲବ୍ ତ ମୋତେ ମଣିଷ କରିଛନ୍ତି ।

ରୋଜା	ସେତେବେଳେ ଅମଣିଷ ଥିଲ, ମଣିଷ ହେବାପାଇଁ ଖେଳୁଥିଲ । ଏବେ ମଣିଷ ହୋଇସାରିଲାପରେ ପୁଣି କ'ଣ ଅମଣିଷ ହେବାପାଇଁ ଖେଳିବ ?

ନା, ବିବେକ ଦାସର ଷ୍ଟାଟସ୍‌କୁ ତମେ ଏମିତି ଜୟଦୁର୍ଗା କ୍ଲବର ବେନ୍‌ର ତଳେ ପୁଲିସ ପଡ଼ିଆର ଧୂଳିମାଟିରେ ଲୋଟେଇ ଦେଇ ପାରିବନି (ଗୌର ଆସିଛନ୍ତି ।)

ଗୌର	ଆରେ, ଆରେ, କ'ଣ ହୋଇଛି ?

ରୋଜା	ଦେଖ ବାବା, ଭୋର୍‌ରୁ ଯାଇଥିଲେ ଯେ ଖେଳିଖେଳି ଏବେ ପହଞ୍ଚିଲେ, ପୁଣି ଖେଳିବାକୁ ବାହାରିଲେଣି ।

ଗୌର	ଆରେ, ଇଏ କ'ଣ ବିବେକ ! ଏମିତି ଖାଲି ଖେଳିଲେ କ'ଣ ଘରସଂସାର ଚଳିବ ? ଆଗରୁ ଗୋଟେପ୍ରକାର ଥିଲା, ଏବେ ବାହାସାହା ହେଲୁ, ଘର କଥା ବୁଝନ୍ତି ନା...

ବିବେକ	ଘର ପାଇଁ କ'ଣ ଖେଳ ବଂଦ୍ କରିଦେବି ?

ଗୌର	କିଏ କହିଲା ଖେଳ ବନ୍ଦ୍ କରିବାକୁ ? ତା' ବୋଲି କ'ଣ ଦିନରାତି ଖେଳିବୁ ?

ବିବେକ	ବାପା ତମେ...

ଗୌର	ମୋ କଥା ଏଣିକି ଭୁଲିଯାଅ । ତମ ଘର ତମେ ସମ୍ଭାଳ, ମୁଁ ବାବା ସୁବର୍ଣ୍ଣେଶ୍ୱରଙ୍କ ଆଶ୍ରା ଧରିଲି । ବୋହୂମା, ବିବେକଟା ପିଲାଦିନରୁ ଏମିତି ଅଝଟିଆ, ବୁଝେଇଦେଲେ ବୁଝିଯିବ । ବିବେକ, ବୋହୂମା' ସହିତ ମିଶି ଘର ଦାୟିତ୍ୱ ବୁଝ, ମୁଁ ଚାଲିଲି...

ବିବେକ	ବାବା, ତମେ...

ରୋଜା	ବାବା କ'ଣ କହିଗଲେ, ଶୁଣିଲ ? ଆଜିଠୁ ଏ ବାଜେଖେଳ ସବୁ ବନ୍ଦ୍ ।

ବିବେକ	ନ ଖେଳିଲେ ଏ ଷ୍ଟାଟସ୍ ମେଣ୍ଟେନ୍ କରିବ କେମିତି ?

ଚନ୍ଦ୍ର	(କହିକହି ଆସନ୍ତି) ଆରେ ଏଠି କ'ଣ ଖେଳିଲେ ପେଟ ପୂରିବ ? ଏଟା ପରା ଇଣ୍ଡିଆ... ତା' ଭିତରେ ପୁଣି ଓଡ଼ିଶା । ହଁ, ଶାଗପଖାଳରେ ପେଟ ପୂରିପାରେ; ହେଲେ ବିବେକ ଦାସର ପେଟ ଶାଗପଖାଳରେ ପୂରିଲେ କ'ଣ ସୁନ୍ଦର ଦିଶିବ ?

ରୋଜା	ସେଇକଥା ଆପଣଙ୍କ ଜୋଇଁଙ୍କୁ ବୁଝାନ୍ତୁ ।

ବିବେକ	ମୁଁ ଆଉ କ'ଣ କରିବି ?

ଚନ୍ଦ୍ର	ତମକୁ ସମୟ ସହିତ ଦୌଡ଼ିବାକୁ ପଡ଼ିବ (ମନୋରଂଜନ ଆସନ୍ତି ।)

ଚନ୍ଦ୍ର	କାରଣ ସମୟ ଓ ଟଂକା, ଏମାନେ ଦୌଡ଼ିବାକୁ ଭଲପାଆନ୍ତି । ତାଙ୍କ ସହିତ ତାଳମିଳେଇ ଦୌଡ଼ିପାରିଲେ ଏଠି ମଣିଷ ପଦବାଚ୍ୟ ହୋଇ ରହିପାରିବ ।

ବିବେକ	:	ଆରେ ମନୋରଂଜନ, ତୁ ଠିକ୍ ସମୟରେ ପହଞ୍ଚିଛୁ ।

ମନୋ	ପହଞ୍ଚିବାକୁ ବାଧ ହେଲି । ବଂଧୁ, ତୋତେ ଏ ସମୟରେ ବାଟ ଦେଖେଇବା ମୋର କର୍ତ୍ତବ୍ୟ । ଶୁଣ, ଆଜିକାଲି ଦୁନିଆରେ ଟଂକା ହେଉଛି ସବୁକିଛିର ମୂଳ । ହାତରେ ଟଂକା ଥିଲେ ସୁଖ, ଶାନ୍ତି ସ୍ନେହମମତା, ସବୁ କିଣିହେବ...

ଚନ୍ଦ୍ର     କରେକ୍ଟ, ସେଣ୍ଟ ପରସେଣ୍ଟ କରେକ୍ଟ ।

ମନୋ     ଆଗକୁ ଲମ୍ବା ଭବିଷ୍ୟତ ଅଛି, ଏ ଖେଳରୁ କେତେ ରୋଜଗାର କରିବୁ ? ପୁଣି କେତେଦିନ ରୋଜଗାର କରିବୁ ? ତୋର ଏ ଫର୍ମ କ'ଣ ସବୁଦିନ ଥିବ ?

ଚନ୍ଦ୍ର     ଆଉ, ଥରେ ଫର୍ମ ଚାଲିଗଲେ କେହି ପଚାରିବେନି ।

ମନୋ     ଏବେ ତମର ନେମ୍ ଅଛି, ଫେମ୍ ବି ଅଛି ।

ଚନ୍ଦ୍ର     ସେହି ନେମ୍ ଆଉ ଫେମ୍‌କୁ ନେଇ ଯାହା ରୋଜଗାର କରିଯିବନା...

ରୋଜା     ମୁଁ ତ ଠିକ୍ ସେଇକଥା କହୁଥିଲି ।

ବିବେକ     ମୁଁ ଆଉ କ'ଣ କରିପାରିବି ! କେବଳ ଖେଳିବି ତ ।

ମନୋ     କ'ଣ କହିଲୁ, ବିବେକ ଦାସ ପୁଣି କ'ଣ କରିପାରିବ ! ଖାଲି ବେଟ୍ ହଲେଇଲେ ନୋଟ୍ ଖସିବ, ନୋଟ୍ ।

ବିବେକ     : ବେଟ୍ ହଲେଇଲେ ନୋଟ୍ ଖସିବ ?

ଚନ୍ଦ୍ର     ଆଉ, ତମେ କୋଉ ବେଙ୍କ୍, କମ୍ପାନି ବା କର୍ପୋରେସନ୍‌ରେ ଚାକିରି କରୁନ...

ବିବେକ     ଆଉ, ମୋ' ଖେଳ ?

ମନୋ     ଆରେ, ଖେଳ କିଏ ବନ୍ଦ୍ କରିବ ! ତୁ ଖାଲି ପୋଷ୍ଟ ହୋଲ୍ଡ କରି ଦରମା ତ୍ର କରିବୁ, ଆଉ ମନଇଚ୍ଛା ଖେଳିବୁ ।

ରୋଜା     ବେଶ୍, ଚାକିରି କରୁନ କାହିଁକି ?

ଚନ୍ଦ୍ର     ଶହଶହ କମ୍ପାନି ଚାହିଁବସିଛନ୍ତି, ତମକୁ ତାଙ୍କ କମ୍ପାନିର ବିଜ୍ଞାପନରେ ନେବାପାଇଁ । ତମେ ଖାଲି କେମେରା ସାମନାରେ ବଲ୍ ଫିଙ୍ଗିବ ବା ବେଟ୍ ହଲେଇବ ଆଉ ଏଣେ ତମ ଏକାଉଣ୍ଟରେ ସଂଖ୍ୟା ବଢ଼ିବଢ଼ି ଚାଲିବ ।

ବିବେକ     ଚାକିରି କରିବି, ବିଜ୍ଞାପନ କରିବି... ।

ମନୋ     ଆରେ ଆହୁରି ଅନେକ ସ୍କୋପ୍ ଅଛି, ତୁ ଖାଲି ହଁ କର୍ ।

ରୋଜା     ତାଙ୍କ ହିଁରୁ କ'ଣ ମିଳିବ, ଆପଣ ବ୍ୟବସ୍ଥା କରନ୍ତୁନା !

ବିବେକ — ଠିକ୍ ଅଛି, ଖେଳିଖେଳି ଟଂକା ପାଉଥିଲି । ଆଜିଠୁ ଟଙ୍କା ପାଇଁ ଖେଳିବି । ମୋ' ବେଟ ବଲ୍ ଆଉ ନେମ୍ ଫେମ୍‌କୁ ବିକିବିକି ଭବିଷ୍ୟତ ପାଇଁ ରୋଜଗାର କରିବି, ଓ.କେ. ?

(ସମସ୍ତେ ଖୁସିହୋଇଯାଆନ୍ତି, ବିବେକ ଫ୍ରିଜ୍ ହୋଇଯାଏ । ତା'ର ଅନ୍ତଃସ୍ୱର ଶୁଣାଯାଏ ।)

ବିବେକର ସ୍ୱର : ବାସ୍ କେତେ କେତେ ଫାଷ୍ଟ୍ ମିଡିୟମ୍ ଫାଷ୍ଟ୍ ଆଉ ସ୍ପିନରଙ୍କୁ ଛକ୍‌କା ଚଉକା ମାରି ଧଇଁଆ ଉଡ଼େଇଦେଇଥିବା ବିବେକ ଦାସ ଶେଷରେ ଏ ଚୁଡ଼ିପିନ୍ଧା ହାତର ଗୁଗ୍‌ଲିରେ ବୋଲ୍‌ଡ, କ୍ଲିନ୍ ବୋଲ୍‌ଡ ହୋଇଗଲା । ସ୍ତ୍ରୀର ପ୍ରରୋଚନାରେ, ଅଫିସରୁ ଷ୍ଟୁଡିଓକୁ, ଷ୍ଟୁଡିଓରୁ ଫିଲ୍‌ଡକୁ ଦିନରାତି ଦୌଡ଼ିଲି । ଦୌଡ଼ି ଦୌଡ଼ି ଥକିଗଲି ।

(ଧୀରେ ଧୀରେ ଅନ୍ଧାର ହୋଇ ପୁଣିଥରେ ଆଲୋକ ଆସିଲାବେଳକୁ ଦେଖାଯାଏ, ରୋଜା ଗୋଟେ ଆଟାଚିରେ ଭର୍ତ୍ତିହୋଇଥିବା ଟଙ୍କା ଗଣୁଥାନ୍ତି । କଲିଂବେଲ୍ ବାଜିବାରୁ ଟଙ୍କାତକ ଆଟାଚିରେ ରଖିଦିଅନ୍ତି ଓ କବାଟ ଖୋଲନ୍ତି)

ରୋଜା — ଆରେ, ମନୋରଂଜନବାବୁ ଯେ, ଆସନ୍ତୁ ଆସନ୍ତୁ, ଏତେଦିନ ପରେ ମନେପଡ଼ିଲା ? ବସନ୍ତୁ ।

ମନୋ — ନାଇଁ, ମୁଁ ଟିକିଏ ଅଦର୍‌ୱାଇଜ୍ ବିଜି ଥିଲି ତ ...

ରୋଜା — ଡ୍ରାଇଭର ହାତରେ ଯୋଉ ଚେକ୍‌ଟା ପଠେଇଦେଇଥିଲି...

ମନୋ — ହଁ ହଁ, ପାଇଛି ।

ରୋଜା — ଠିକ୍ ଏମାଉଣ୍ଟଟା ଜାଣିନଥିଲି ତ, ତେଣୁ ବ୍ଲାଙ୍କ୍ ଦେଇଦେଲି ।

ମନୋ — ମୋ' ଇଜ୍ଜତ ବଞ୍ଚେଇଦେଇଛନ୍ତି, ଭାଉଜ ।

ରୋଜା — ପ୍ଲିଜ୍, ମନୋରଂଜନବାବୁ । ଆପଣଙ୍କ ମୁହଁରୁ ଏ 'ଭାଉଜ' ଶବ୍ଦ ଶୁଣିଲେ ମୁଁ ଖୁବ୍ ବୋର୍ ହୁଏ - କେମିତି ବୟସ୍କବୟସ୍କ ଲାଗେ ନିଜକୁ...

ମନୋ — ସରି ମିସେସ୍ ଦାସ, ଆଉ ବିବେକ ?

ରୋଜା — ବଂଧୁ ନଥିଲେ କ'ଣ ଆମ ସହିତ କଥା ହେବାପାଇଁ କିଛି ବିଷୟବସ୍ତୁ ନାହିଁ ? (ଚନ୍ଦ୍ର ଆସନ୍ତି 'ରୋଜା' 'ରୋଜା' ଡାକି)

| | |
|---|---|
| ଚନ୍ଦ୍ର | ରୋଜା । ରୋଜା; ଆରେ ତୁ ଏଠି । ଆଉ ମନୋରଂଜନ ବି । |
| ମନୋ | ନମସ୍କାର, ମଉସା । |
| ଚନ୍ଦ୍ର | ନମସ୍କାର । ହଁ, ରୋଜା ମୋତେ କିଛି ଟଂକା ଦେଲୁ । |
| ରୋଜା | କ'ଣ ଆଜି ବି କ୍ଲବ୍ ଯିବେ ? |
| ଚନ୍ଦ୍ର | ଚୁପ୍, ସେପଟେ ସମୁଦି ଅଛନ୍ତି । ଦେ'ଦେ', ମୁଁ ଏଇ ସାଙ୍ଗେସାଙ୍ଗେ ଫେରୁଛି । ବିବେକ କ'ଣ ଫେରିନାହାନ୍ତି ? |
| ରୋଜା | (ଆଟାଚି ଖୋଲି) କେତେ ଦେବି ? |
| ଚନ୍ଦ୍ର | ସେ ଆଟାଚିରେ କେତେ ଅଛି ? ତୁ ଗୋଟେ କାମ କର । ଅଟାଚିଟା ଦେଇଥା', ବଳକାଟଂକା ମୁଁ ଫେରାଇଆଣିବି । (ରୋଜାର ପ୍ରତିକ୍ରିୟାକୁ ନ ଚାହିଁ ସିଧା ଆଟାଚି ଧରନ୍ତି, ଏହି ସମୟରେ ବାହାରେ ଗାଡ଼ି ଅଟକେ ।) |
| ଚନ୍ଦ୍ର | ଏଇ ତ, ବିବେକ ଫେରିଲେଣି । ଆସ ବିବେକ, ତମକୁ ତମର ବଂଧୁ ଅପେକ୍ଷା କରିଛନ୍ତି । |
| ବିବେକ | ଆଇ ଏମ୍ ଭେରି ମଚ୍ ଟାୟାର୍ଡ୍ । |
| ଚନ୍ଦ୍ର | ହଁ, ହଁ, ଥକିଯିବାଟା ତ ସ୍ୱାଭାବିକ । ହେଲେ, ରୋଜା, ଲୋକ ଥକିଗଲେ କ'ଣ ଚାହେ, ଜାଣୁ ତ ? ଅବଶ୍ୟ ମୋର ଏଟା ତୋତେ କହିବା ଠିକ୍ ହେବନି, ନା କ'ଣ ମନୋରଂଜନ ? |
| ମନୋ | ମୁଁ କହିଦେବି । |
| ରୋଜା | ଆଇ ନୋ' ଡାଡି । |
| ଚନ୍ଦ୍ର | ତ ଫେର୍ ଡେରି କାହିଁକି ? ବିବେକ, ମୁଁ ଆସୁଛି । |
| ମନୋ | ହାଲୋ ବିବେକ । |
| ବିବେକ | ହାଲୋ (ଥକିଯାଇ ବସିପଡ଼ନ୍ତି ।) |
| ମନୋ | ତୁ ଖୁବ୍ ଟାୟାର୍ଡ୍ ଜଣାପଡୁଛୁ । ଶୋଇପଡ୍ । ମୁଁ ଆସୁଛି । |
| ବିବେକ | ଆରେ ଭାଇ, ଟଂକାର ନିଶା ମୋ' ଆଖିରୁ ନିଦ ଛଡ଼େଇନେଇଛି । |
| | (ରୋଜା ଇତିମଧ୍ୟରେ ବୋତଲ, ଗ୍ଲାସ୍ ଧରି ଆସେ ଓ ଗ୍ଲାସ୍‌ରେ ଢାଳି ବିବେକକୁ ଦିଏ ।) |

| | |
|---|---|
| ରୋଜା | ନିଅ, ଏତକ ପିଇଦିଅ । ନିଦ ହେଇଯିବ। |
| ବିବେକ | ପିଇବି ? କ'ଣ ? |
| ରୋଜା | ଡ୍ରିଙ୍କ୍ସ । |
| ବିବେକ | ଡ୍ରିଙ୍କ୍ସ ? |
| ରୋଜା | ହଁ, ତମକୁ ନିଦ ହଉନି, ତେଣୁ ମଗେଇଦେଇଛି । |
| ବିବେକ | ଡ୍ରିଙ୍କ୍ସ ମାନେ ମଦ ? ମୁଁ ମଦ ପିଇବି ? ବାପା ? |
| ମନୋ | ଆରେ ତୁ କ'ଣ ବାରବର୍ଷର ବାଳକ ଯେ ସବୁ କଥାରେ ବାପାଙ୍କ ପରମିଶନ୍ ଲୋଡ଼ିବୁ ? ତା'ଛଡ଼ା ଡ୍ରିଙ୍କ୍ସ ଆଜିକାଲି ଷ୍ଟାଟସର ସିମ୍ବଲ । |
| ବିବେକ | ନାଇଁ, ମୁଁ କେବେ ପିଏନି ତ ! |
| ମନୋ | ପିଇନୁ ବୋଲି କ'ଣ ପିଇବୁନି ? |
| ରୋଜା | ପିଇଦେଲେ ନିଦ ଆସିଯିବ । |
| ମନୋ | ନିଦ ହେଲେ ସ୍ୱପ୍ନ ଆସିବ । |
| ରୋଜା | ସ୍ୱପ୍ନ ଦେଖିଲେ ସିନା ଶାନ୍ତି ମିଳିବ ! |
| ମନୋ | ତା'ପରେ ଗୋଟେ ତାଜା ସକାଳକୁ ସାମ୍ନାକରିବାର ଉତ୍ସାହ ମିଳିବ । |
| ରୋଜା | ନିଅ, ପିଅ । (ପିଆଇଲେ ।) |
| ମନୋ | ଆରେ ପି' । |
| ବିବେକ | (ପିଇଦେଇ) ଆଃ । |
| ମନୋ | ପ୍ରଥମେ ଟିକିଏ ଗଳା ଜଳିବ... |
| ରୋଜା | ଛାତି ବି ପୋଡ଼ିପାରେ...(ପିଆଇଲେ ।) |
| ମନୋ | ଅଭ୍ୟାସରେ ପଡ଼ିଗଲେ ସବୁ ଠିକ୍ ହେଇଯିବ । ବାରମ୍ୱାର ପିଇଲେ |
| ବିବେକ | ଆଃ କି ଶାନ୍ତି, କି ତୃପ୍ତି ! ଦିଅ, ଦିଅ ରୋଜା, ଆହୁରି ଦିଅ । ଢାଳ (ଢାଳନ୍ତି, ବିବେକ କଣ୍ଠସ୍ଥ କରୁକରୁ ଫ୍ରିଜ୍) । |
| ବିବେକରସ୍ୱର | : ବାସ୍, ଶେଷରେ ଆର୍ଡ଼୍ ଡବଲିଉ, ମାନେ ୱାଇନ୍ ବି ଆସି ମୋତେ ଗୋଟାପଣେ ଗିଳିଦେଲା । ତା'ପରେ ମୋ ଜୀବନଟା ଓହ୍ଲାଇବାକୁ ଲାଗିଲା ତଳକୁ ତଳକୁ... । |

(ଧୀରେଧୀରେ ଅନ୍ଧାର ହୁଏ । ସ୍ଲୋଗାନ୍ ଶବ୍ଦରେ ଆଲୋକ ଆସିଲାବେଳକୁ ଦେଖାଯାଏ ଗୌର ମନଖୁସିରେ ପାଟି କରୁଥାନ୍ତି ।)

ସ୍ଲୋଗାନ — ଇଣ୍ଡିଆ କ୍ରିକେଟ୍ ଜିନ୍ଦାବାଦ୍ ।

ପ୍ରାଇଡ୍ ଅଫ୍ ଇଣ୍ଡିଆ ବିବେକ ଦାସ - ଜିନ୍ଦାବାଦ

ଓଡ଼ିଆ ପୁଅ ବିବେକ ଦାସ - ଜିନ୍ଦାବାଦ

ଗୌର — ବିବେକ ! ଆରେ ମୋ' ସ୍ୱପ୍ନ ସାର୍ଥକ ହୋଇଛିରେ, ତୁ ଆମ ଇଣ୍ଡିଆ ଟିମ୍‌ର କ୍ୟାପ୍ଟେନ ହେଇଛୁ । ଏବେ ଟି.ଭି. କହିଲା, (ରୋଜା ଆସୁଥିବାର ଦେଖି) ଆରେ ବୋହୂମା', ବିବେକ୍ କାହିଁ ? ସେ ଆମ ଇଣ୍ଡିଆ ଟିମ୍‌ର କ୍ୟାପ୍ଟେନ୍ ।

ରୋଜା — ସେ ପରା ଶୋଇଛନ୍ତି, ଏଡ଼େ ଜୋର୍‌ରେ ପାଟି କଲେ ଉଠିପଡ଼ିବେ...

ଗୌର — ହେଲା ହେଲା, ସେ ଶୋଉ । ମୁଁ ବାବା ସୁବର୍ଣ୍ଣେଶ୍ୱରଙ୍କ ପାଖରେ ମହାଭୋଗ କରିଆସେ । ମୋ' ସ୍ୱପ୍ନ ଆଜି ସାର୍ଥକ ହେଇଛି । ମୋ ବିବେକ ଆଜି ଇଣ୍ଡିଆ ଟିମ୍‌ର କ୍ୟାପ୍ଟେନ୍ ହୋଇଛି । (ମନଖୁସିରେ ଯାଆନ୍ତି, ରୋଜା ବିଦ୍ରୂପର ହସ ହସନ୍ତି । ଟେଲିଫୋନ୍ ରିଂ ହୁଏ । ରୋଜା ରିସିଭର ଉଠାନ୍ତି ।)

ରୋଜା — ହାଲୋ, ରୋଜା ସ୍ପିକିଙ୍ଗ୍ ।

(ପଛପାଖ ଜୋନ୍ ଅନ୍ଧାର ହୋଇ ଡାହାଣ ଜୋନ୍‌କୁ ଅଲୋକ ଆସେ । ରତ୍ନା କର୍ଡ୍‌ଲେସ ଧରି ବୁଲିବୁଲି କଥାହେଉଥାନ୍ତି ।)

ରତ୍ନା — କନ୍‌ଗ୍ରାଚୁଲେସନ୍ ରୋଜା, ମୁଁ ରତ୍ନା କହୁଛି...ହଁ ହଁ, ତୋ ବିବେକ ତ ୱାର୍ଲ୍‌ଡକପ୍ ପାଇଁ କ୍ୟାପ୍ଟେନ୍ ହୋଇଗଲା, ଆଉ କ'ଣ...କ'ଣ କହିଲୁ, ମୁଁ ଜାଣିଲି କେମିତି ? ଆମ ବାବୁ ପରା କ୍ରିକେଟ୍ କଣ୍ଟ୍ରୋଲ୍ ବୋର୍ଡ୍‌ର ଜଣେ ମେମ୍ବର । କହିବାକୁ ଗଲେ, ସେ ହିଁ ତ ବିବେକ ପାଇଁ ଫାଇଟ୍ କଲେ । ନହେଲେ ଓଡ଼ିଆ ପିଲା, ପୁଣି କ୍ୟାପ୍ଟେନ୍ ! ଛାଡ଼, ହଁ ତୋତେ ଫୋନ୍ କରିବାର କାରଣ ହେଲା, ଆସନ୍ତା ଡିସେମ୍ବର ୩୧ ତାରିଖରେ ମୁଁ ଗୋଟେ ଫେସନ୍ ଶୋ' କରୁଛି...ହଁ ହଁ, ନ୍ୟାସନାଲ ଲେଭେଲ -ଚେଷ୍ଟା ବି କରୁଛି । ଇଣ୍ଟରନ୍ୟାସନାଲ ଲେଭେଲ ବି ହୋଇପାରେ । ପଲଟିକାଲ୍ ହାଣ୍ଡ ଅଛି, ଚିନ୍ତା କ'ଣ ।

ଫେସନ୍ ଶୋ' କ'ଣ ଯିଏସିଏ କରିପାରିବ । କ'ଣ କରିବି କହ, ନିଜକୁ ତ ପୁଣି ଏଷ୍ଟାବ୍ଲିସଡ୍ କରିବାକୁ ପଡ଼ିବ, ନହେଲେ ତୋ'ରି ଭଳି ଓଢ଼ଣା ଟାଣି ହାଉସୱାଇଫ୍ ହୋଇ ଘରେ ବସିବି । ହାଲୋ ହାଲୋ, ଆରେ ଆରେ (ହସି) ବିଚାରି (ଅନ୍ଧାର ହୁଏ, ପୁଣି ପଛପାଖ ଜୋନ୍‌କୁ ଆଲୋକ ଆସିଲାବେଳକୁ ଦେଖାଯାଏ ବିବେକ, ମନୋରଂଜନ ଓ ରୋଜା ଆଲୋଚନାରେ ମଗ୍ନ ।)

ରୋଜା — ଆପଣ କହିଲେ ମନୋରଂଜନବାବୁ, ଜଣେ ଏମ୍.ଏଲ୍.ଏ. ବଡ଼ ନା ଜଣେ କ୍ରିକେଟିୟର ବଡ଼ ?

ମନୋ — ନୋ ଡାଉଟ୍ ଏ କ୍ରିକେଟିୟର ଇଜ୍ ଗ୍ରେଟର ଦାନ ଏମ୍.ଏଲ୍.ଏ ।

ରୋଜା — ତା' ସ୍ତ୍ରୀ ରତ୍ନା ଗୋଟେ ଫେସନ୍ ଶୋ' କରିବ, ମୁଁ ପାରିବିନି ?

ମନୋ — ହ୍ୱାଏ ନଟ୍ ! ନିଶ୍ଚୟ ପାରିବେ । ନହେଲେ ଆପଣଙ୍କର, ମାନେ ଆମର, ଆଉ ବିଶେଷ କରି ଏ ବିବେକ ଦାସର, ଇଜ୍ଜତ ରହିବଟି ?

ବିବେକ — ବଜେଟ୍ ଶୁଣିଲୁଣି ?

ମନୋ — ତୋ ଭଳି ଜଣେ କ୍ରିକେଟିୟର ମୁହଁରେ ବଜେଟ୍‌କୁ ନେଇ ଭୟ ? ନା, ନିହାତି ଅସୁନ୍ଦର । ଆରେ, ଆଗକୁ ପରା ୱାର୍ଲଡକପ୍, ଆରେ ତୁ ଗୋଟେ ଦେଶର କ୍ୟାପ୍ଟେନ୍ । ଏଣେ କୋକାକୋଲା କହୁଛି, ଗୋଟେ ୱିକେଟ୍‌କୁ ଲକ୍ଷେ, ପେପ୍‌ସୀ ଗୋଟେ ଫିଫ୍‌ଟିକୁ ଦୁଇଲକ୍ଷ, ଥମ୍‌ସଅପ୍ କହୁଛି, ଗୋଟେ ସେଞ୍ଚୁରିକୁ ପାଞ୍ଚଲକ୍ଷ । ଏମାନଙ୍କ ଦେଖାଦେଖି କିଏ କହୁଛି ଗୋଟେ ଚଉକାକୁ ତିନିହଜାର ତ କିଏ କହୁଛି ଗୋଟେ ଛକ୍‌କାକୁ ପାଞ୍ଚହଜାର, କିଏ କହୁଛି ଗୋଟେ କ୍ୟାଚ୍‌କୁ ପଚିଶହଜାର ତ ଗୋଟେ ରନ୍‌ଆଉଟ୍‌କୁ ଲକ୍ଷେ...

ରୋଜା — ବାସ୍ ତିନିକୋଟି, ଆଉ କେତେ କି ?

ବିବେକ — ତଥାପି କେତେ ଛକା ପିଟିଲେ କେତେ ସେଞ୍ଚୁରି କଲେ ଆଉ କେତେ ୱିକେଟ୍ ନେଲେ ତିନିକୋଟି ଟଂକା ମିଳିବ ! (ଚନ୍ଦ୍ର ଆସନ୍ତି ।)

ଚନ୍ଦ୍ର — ଆଦୌ ଛକା ନ ପିଟିଲେ, ୱିକେଟ୍ ନନେଲେ ଆଉ ମେଚ୍ ନ ଜିତିଲେ ବି ମୁଁ ଦେବି ତିନିକୋଟି ଟଂକା । ଚାହିଁଲେ ଅଗ୍ରିମ ନେଇପାର ।

ଅନ୍ୟମାନ ଆପଣ ଦେବେ ?

ଚନ୍ଦ୍ର ଓ ୟେସ୍... ଗୋଟେ ମେଚ୍ ହାରିଗଲେ କ୍ୟାପ୍ଟେନ୍ ହିସାବରେ ପାଇବ ପଚାଶ ଲକ୍ଷ ।

ବିବେକ ହାରିଗଲେ ପଚାଶ ଲକ୍ଷ ?

ରୋଜା ଓ ମନୋ : ତା'ହେଲେ ଜିତିବ କାହିଁକି ?

ଚନ୍ଦ୍ର ଗୋଟେ ୱିକେଟ୍ ନନେଲେ ପଚିଶ ଲକ୍ଷ ।

ବିବେକ ୱିକେଟ୍ ନନେଲେ ପଚିଶ ଲକ୍ଷ !

ମନୋ ଓ ରୋଜା : ତା'ହେଲେ ୱିକେଟ୍ ନବ କାହିଁକି ?

ଚନ୍ଦ୍ର ଗୋଟେ କ୍ୟାଚ୍ ହାତରୁ ଛାଡ଼ିଦେଲେ ପନ୍ଦର ଲକ୍ଷ ।

ବିବେକ ଗୋଟିଏ କ୍ୟାଚ୍ ଛାଡ଼ିଦେଲେ ପନ୍ଦର ଲକ୍ଷ !

ମନୋ ଓ ରୋଜା : ତା'ହେଲେ କ୍ୟାଚ୍ ଧରିବ କାହିଁକି ?

ଚନ୍ଦ୍ର ଆଉ ଫାଇନାଲ୍ ମେଚରେ ସମଗ୍ର ଟିମ୍‌କୁ ନିଷ୍କ୍ରିୟ, ମାନେ ଚୁପ୍ କରିଦେଲେ କୋଟିଏ ଟଂକା ପାଇବ ।

ବିବେକ ତା' ମାନେ...

ଚନ୍ଦ୍ର ହାରିବା ପାଇଁ, ବିଶେଷ କରି ସମଗ୍ର ଟିମ୍‌ଟାକୁ ଚୁପ୍ କରିଦେବା ପାଇଁ କେତେ ନବ, କେତେ ?

ବିବେକ ନା ନା, ମୁଁ ପାରିବିନି ।

ଚନ୍ଦ୍ର ତମ ଜୀବନରେ ଆଉ ୱାର୍ଲ୍ଡକପ୍ ଆସିବ କି ନା ସନ୍ଦେହ ।

ମନୋ ୱାର୍ଲ୍ଡକପ୍ ଆସିଲେ ବି କ୍ୟାପ୍ଟେନସିପ୍ ମିଳିବ କି ନା ସନ୍ଦେହ ।

ରୋଜା କ୍ୟାପ୍ଟେନସିପ୍ ମିଳିଲେ ବି ଏ ଚାନ୍ସ ମିଳିବ କି ନା ସନ୍ଦେହ ।

ବିବେକ ତେବେ, ତେବେ କ'ଣ ?

ଚନ୍ଦ୍ର ଜୀବନରେ ସୁଯୋଗ ଥରେ ଆସେ...

ମନୋ ତୋ' ପାଇଁ ଆସୁକି ନ ଆସୁ...

ରୋଜା ମୋ ପାଇଁ ତ ଆସିଛି...

| | |
|---|---|
| ବିବେକ | ନା ନା, ମୁଁ...(ଅସହାୟ ହୁଏ) |
| ଚନ୍ଦ୍ର | ମୁଁ ଯାହା କହୁଛି, ସେଇଆ କର । (ଡାହାଣ କାନ୍ଧରେ ହାତ ଚାପନ୍ତି) । |
| ମନୋ | ଆଭେଇ ଏ ଚାନ୍ସ (ବାମ କାନ୍ଧରେ ହାତ ଚାପନ୍ତି) । |
| ରୋଜା | ପ୍ଲିଜ୍ ବିବେକ, ପ୍ଲିଜ୍ (କୋଟ୍‌ରେ ବୋତାମ ଲଗାନ୍ତି । ଅନ୍ଧାର ହୁଏ ଏବଂ ଏକ ସ୍ୱତନ୍ତ୍ର ଆଲୋକରେ ବିବେକ ଏକାକୀ କହିବସେ ।) |
| ବିବେକ | ବାସ୍ କ୍ରିକେଟ୍ ପଲାସୀରେ ମୁଁ ମିର୍ଜାଫର ବନିଗଲି, ଚୁପ୍‌ଚାପ୍ ବିଶ୍ୱକପ୍‌କୁ ବିଦେଶରେ ବିକିଦେଇ ସ୍ୱଦେଶକୁ ଫେରି ଦେଖେ ତ, ଯେଉଁମାନେ ଦିନେ ଫୁଲହାର ପିନ୍ଧେଇ ନଚଉଥିଲେ, ସେହିମାନେ ମୋ ବେକରେ ଜୋତାମାଳ ପିନ୍ଧାଇ ମୋର ଛଣମୂର୍ତ୍ତିକୁ ଦେଶର ଛକରେଛକରେ ପୋଡୁଛନ୍ତି । 'ବିବେକ ଦାସ ହାୟ ହାୟ' ଧ୍ୱନିରେ ମୁଁ ବାଦୁଡ଼ି ଭଳି ଦିନରେ ମଧ ଘରେ ପଶିଗଲି... |
| | (ପଛପାଖ କୋନ୍‌କୁ ଆଲୋକ ଆସିଲାବେଳକୁ ବାହାରୁ ବିବେକର ମୁର୍ଦ୍ଦାବାଦ୍ ଶୁଭୁଥାଏ । ଭିତରେ ବିବେକ ମୁହଁପୋତି ବସିଥାଏ । ଗୌର ରାଗରେ ଜର୍ଜ୍ଜରିତ ହୋଇ ପଶିଆସନ୍ତି ।) |
| | (ଅନ୍ତରାଳରୁ ଧ୍ୱନି)କ୍ରିକେଟ - କଳଙ୍କ ବିବେକ ଦାସ - ହାୟ ହାୟ । |
| ଗୌର | ବିବେକ, ବିବେକ, କୋଉଠି ଅଛୁ ? ଆରେ ବିବେକ । ତୁ ଏଇଠି ବସିଛୁ, ଅଥଚ ମୁଁ ଏତେ ଡାକୁଛି, ତୋତେ ଶୁଭୁନି ? କେମିତି ଶୁଣିବୁ ? ତୋ'ର ସେ ମୁହଁ କ'ଣ ଆଉ ଅଛି ? ଆରେ ହେ, ଏ ଲୋକମାନେ ଯାହା କହୁଛନ୍ତି, ଏ ଖବରକାଗଜ ଯାହା ଲେଖୁଛି, ଏଗୁଡ଼ା କ'ଣ ସତ ? ତୁ ଲାଞ୍ଚ ନେଇ ଜାଣିଜାଣି ମେଚ୍ ହାରିଲୁ,ଏଁ ? ଚୁପ୍ ରହୁଛୁ କାହିଁକି, ମୋ କଥାର ଜବାବ ଦେ । ଆରେ ଖେଳାଳି ଜିତିବାପାଇଁ ଖେଳେ ଆଉ ତୁ ଭୀରୁ କାପୁରୁଷ, ହାରିବାପାଇଁ ଖେଳିଲୁ । ଧିକ୍ ବିବେକ, ଧିକ୍ । ଶତ ଧିକ୍ ତୋତେ । ତୁ ଏତେ ବଡ଼ ଦେଶଟାକୁ ଧୋକା ଦେଇଦେଲୁ ? ତୋର ଲକ୍ଷ ଲକ୍ଷ ପ୍ରଶଂସକଙ୍କ ସହିତ ବିଶ୍ୱାସଘାତକତା କଲୁ ? ତୁ ଲାଞ୍ଚ ନେଇ ଖେଳଜଗତକୁ ଅପବିତ୍ର କରିଦେଲୁ ? ତୁ ମୋ ପୁଅ ହୋଇ ଶେଷରେ ଦେଶଦ୍ରୋହୀ ହେଲୁ ? |

ବିବେକ	ମୋତେ .... ମୋତେ କ୍ଷମା କରିଦିଅ, ବାପା ।

ଗୌର	କ୍ଷମା ? କାହାକୁ କ୍ଷମା ମାଗୁଛୁ ? ତୋତେ କ୍ଷମା ଦବ କିଏ ! ଯଦି କ୍ଷମା ମାଗିବାର ଇଚ୍ଛା ଅଛି, ଚାଲ୍ ମୋ ସହିତ, ଯେଉଁମାନଙ୍କ ନିକଟରେ ଅପରାଧ କରିଛୁ, ସେହି କୋଟି କୋଟି ଜନତାଙ୍କ ଆଗରେ ହାତଯୋଡ଼ି ମଥାପୋତି କ୍ଷମା ମାଗିବୁ ! ଚାଲ୍, ଚାଲ୍ ମୋ ସାଂଗରେ (ହାତ ଧରି ଟାଣିବା ସମୟରେ ରୋଜା ଆସନ୍ତି) ।

ରୋଜା	ନା, ସେ ଯାଇପାରିବେନି ?

ଗୌର	ଯାଇପାରିବେନି ? କାହିଁକି ?

ରୋଜା	ସେ ପଦାକୁ ଯାଇ ହାତ ଯୋଡ଼ିଲେ ଆମ ମାନସମ୍ମାନ ରହିବ ତ ?

ଗୌର	ଲୋକେ ଯାହା କହୁଛନ୍ତି, ଖବରକାଗଜରେ ଯାହା ବାହାରୁଛି, ସେଥିରେ ତମ ମାନସମ୍ମାନ ରହୁଛି ତ ?

ରୋଜା	ସେଗୁଡ଼ାକୁ ତ କାଉଣ୍ଟର କରିବା ପାଇଁ ଡାଡି କୋର୍ଟକୁ ଯାଇଛନ୍ତି ।

ଗୌର	ଡାଡି ? ମାନେ ତମ ବାପା ? ଚନ୍ଦ୍ରଶେଖର ମହାନ୍ତି ? ଯିଏ ଜୁଆ ଖେଳରେ ନିଜର ସର୍ବସ୍ୱ ହରେଇସାରି ଶେଷରେ ମୋର ଏ ବିବେକଟାକୁ ଜୁଆର ପଶାପାଲିରେ ଲୋଟେଇଦେଲେ, ସିଏ ଆଜି କୋଉ ମୁହଁ ନେଇ କେଉଁ ନ୍ୟାୟ ପାଇଁ ଆଉ କାହାର ବିଚାର ପାଇଁ କୋର୍ଟକୁ ଯାଇଛନ୍ତି ?

ରୋଜା	କ'ଣ ହେଲା ? ଆପଣ ଏକଥା କହିବାକୁ ସାହସ କରିପାରୁଛନ୍ତି ? ପୁଣି ମୋ' ସାମ୍ନାରେ ! ଆପଣ ପରା ଦିନେ ତାଙ୍କରି ହୁକୁମରେ ଉଠ୍‌ବସ୍ ହେଉଥିଲେ ? ତାଙ୍କରି ଡାଇନିଂ ଟେବୁଲ ପୋଛି ପେଟ ପୋଷୁଥିଲେ ?

ବିବେକ	ରୋଜା !

ରୋଜା	ଓଃ, ତମେ ଚୁପ୍‌କର । ପଚାର ତମ ଫାଦରଙ୍କୁ, ବିବେକ ଦାସଙ୍କୁ ଛାଡ଼ିଦେଲେ କି ପରିଚୟ ଅଛି ତାଙ୍କର ? କେବଳ ବିବେକ ଦାସର ବାପା ବୋଲି ଏମିତି ଏକ ପ୍ରାସାଦରେ ରହିବାର ସୁଯୋଗ ପାଇଛନ୍ତି କେବଳ ବିବେକ ଦାସର ବାପା ବୋଲି, ଚନ୍ଦ୍ରଶେଖର ମହାନ୍ତି ଭଳି

ଜଣେ ଇଣ୍ଡଷ୍ଟ୍ରିଆଲିଷ୍ଟ ସହିତ ବଂଧୁ ବାନ୍ଧିବାର ସୁଯୋଗ ପାଇଛନ୍ତି - ଆଉ କେବଳ ବିବେକ ଦାସର ବାପା ବୋଲି ମୋତେ ରୋଜା ବୋଲି ଡାକିପାରୁଛନ୍ତି ।

ବିବେକ　　ରୋଜା, ଏମିତି କ'ଣ କହୁଛ ?

ରୋଜା　　ମୁଁ କ'ଣ ମିଛ କହୁଛି ?

ଗୌର　　ଆରେ ହଁ ସତକଥା, ମୁଁ କେବଳ ବିବେକ ଦାସର ବାପା, ଏଇ ପରିଚୟ ନେଇ ତ ଏ ସଂସାରରେ ବଂଚୁଛି । ହେଲେ, ଆଉ ତ ପାରିବିନି । ଏଭଳି ଜଣେ ପୁଅର ବାପା ହୋଇ ଆଉ ଦଣ୍ଡେ ବି ବଂଚିପାରିବିନି । ମୋ ବିବେକ ଇଏ ନୁହେଁ, ମୁଁ ମୋ ବିବେକକୁ ହଜେଇଦେଇଛି । ମୁଁ ଯାଉଛି, ଆଗ ମୋ ହଜିଲା ବିବେକକୁ ଖୋଜିଆଣିବି । ତାକୁ ନେଇ କୋଉ କୁଡ଼ିଆରେ ସିନା ବଂଚିବି, ଏଠି ନୁହେଁ, ବିବେକ । (ଯାଉଥିଲେ) ।

ବିବେକ　　ବାପା ।

ଗୌର　　ନା ବାବା, ତମେ ତମର ପରିଚୟ ଫେରେଇନିଅ । ମୋର ଲୋଡ଼ା ନାହିଁ ସେ ପରିଚୟ । (ଚାଲିଗଲେ) ।

ରୋଜା　　ହୁଁ, ଛୋଟଲୋକମାନେ ବଡ଼ ହୋଇଗଲେ, ଏମିତି ପ୍ରାଧାନ୍ୟ ଜାହିର କରନ୍ତି ।

ବିବେକ　　ଆଉ ବଡ଼ଲୋକମାନେ ଛୋଟ ହୋଇଗଲେ ?

ରୋଜା　　ମାନେ ?

ବିବେକ　　ଶଶୁରଙ୍କୁ କେମିତି ସମ୍ମାନ ଦିଆଯାଏ, ତମେ ଜାଣିନ ?

ରୋଜା　　ଯିଏ ସମ୍ମାନ ପାଇବାକୁ ଅଯୋଗ୍ୟ, ତାକୁ ସମ୍ମାନଦେଲେ ନିଜର ଅସମ୍ମାନ ହୁଏ ।

ବିବେକ　　ରୋଜା । (ପାଖେଇଗଲେ) ।

ରୋଜା　　କ'ଣ ? (ମାଡ଼ିଆସନ୍ତି)

ବିବେକ　　ଯାଅ, ବାପାଙ୍କ ଗୋଡ଼ ଧରି କ୍ଷମା ମାଗିବ ।

| | |
|---|---|
| ରୋଜା | ଗୋଡ଼ ଧରିବି ? ମୁଁ, ପୁଣି ତମ ବାପାଙ୍କର ? ତମ ମୁଣ୍ଡ ଠିକ୍ ଅଛି ତ ? ଯିଏ ଦିନେ ମୋ ଗୋଡ଼ ଧରିବାକୁ ପଛଉନଥିଲା, ତା'ଗୋଡ଼ ଧରିବି ମୁଁ ? |
| ବିବେକ | (ଚାପୁଡ଼ା ମାରି) ରୋଜା ! |
| ରୋଜା | କ'ଣ ହେଲା ? ତମେ... ୟୁ ଲୋ'ମ୍ୟାନ୍, ମୋ ଉପରକୁ ହାତ ଉଠେଇଲ ? |
| ବିବେକ | ଏ ହାତ ଆହୁରି ଆଗରୁ ଉଠିବାର ଥିଲା । ଏ ହାତ ସେଇଦିନ ଉଠିବାର ଥିଲା, ଯେଉଁଦିନ ତମେ ମୋର ଅଗ୍ନିବର୍ଷୀ ବେଟ୍‌କୁ ନିଜର ଓଢ଼ଣି ତଳେ ଚାପି ରଖିଦେଲ, ଏ ହାତ ସେଇଦିନ ଉଠିବାର ଥିଲା, ଯେଉଁଦିନ ତମେ ମୋ ହାତକୁ ମଦବୋତଲ ବଢ଼େଇଦେଇଥିଲ । ଏ ହାତ ସେଇଦିନ ଉଠିବାର ଥିଲା, ଯେଉଁଦିନ ତମେ ମୋତେ ଟଂକା ପଛରେ ଦଉଡେଇ ଅବଶ କରିଦେଲ । |
| ରୋଜା | ୟୁ...ବିବେକ ଦାସ (ଭିତରକୁ ଯାଉଥିଲେ) । |
| ବିବେକ | ନାଇଁ, ଭିତରକୁ ଯାଇପାରିବନି । ଆଗ ବାପାଙ୍କ ଗୋଡ଼ ଧରିବ, ବାପା କ୍ଷମାଦେଲେଯାଇ ଭିତରକୁ ପଶିବ । ଯାଅ, ବାପାଙ୍କୁ କ୍ଷମା ମାଗ । |
| ରୋଜା | କ୍ଷମା ? (ହସିଲେ) |
| ବିବେକ | ନହେଲେ ଗେଟ୍ ଆଉଟ୍, ଆଇ ସେ ଗେଟ୍ ଆଉଟ୍... |
| ରୋଜା | ହୁଁ, ତମେ ବାହାରିଯିବାକୁ କହିବା ଆଗରୁ ମୁଁ ବାହାରିଯିବାର ବନ୍ଦୋବସ୍ତ କରିସାରିଛି । ଏଇ ରହିଲା ଡିଭୋର୍ସ୍ ପେପର୍ସ । |
| ବିବେକ | ଡିଭୋର୍ସ (ବିଚଳିତ ହୋଇପଡ଼ନ୍ତି) । |
| ରୋଜା | ତମ ପାଖରେ ଆଉ ଅଛି କ'ଣ ? ପରିଚୟଟା ଯାହା ଥିଲା, ତାହା ତ ହଜିଗଲାଣି, ଏବେ ତମଭଳି ଜଣେ କଳଙ୍କିତ କ୍ରିକେଟିୟରର ହାତ ଧରି ମୁଣ୍ଡ ତଳକୁ କରି ଚାଲିବା ଅପେକ୍ଷା ଏକା ଏକା ଚାଲିବାରେ ଗୌରବ ଅଛି, ଗୌରବ । (ଟମ୍‌ଟମ୍ ହୋଇ ଚାଲିଯାଏ) । |

(ବିବେକ ତା'ର ଯିବା ବାଟକୁ ଚାହିଁଥାଏ । 'ବିବେକ ଦାସ ହାୟ ହାୟ' ଧ୍ୱନି ବଢ଼ିଯାଇ କମିଯାଏ । ବିବେକ ହଠାତ୍ ଉତ୍ତେଜିତ ହୋଇଉଠନ୍ତି ।)

ବିବେକ ହଁ ହଁ ଯାଅ, ବାହାରିଯାଅ । ମୋ'ଘରେ ଥାଇ ମୋ' ବାପାକୁ କହିବ ଛୋଟଲୋକ ? ଚାକର ? ଯାହାର ରକ୍ତରୁ ମୋର ଏ ରୂପବୈଭବ, ମୋର ଏ ଶକ୍ତି-ସାମର୍ଥ୍ୟ, ଯଶ-ଗୌରବ, ସିଏ ଛୋଟଲୋକ ? ଆଉ ତୋ' ବାପା ଚନ୍ଦ୍ରଶେଖର ମହାନ୍ତି.... ମଦ୍ୟପ, ଜୁଆଡ଼ି, ଭ୍ରଷ୍ଟାଚାରୀ, ଯିଏ ମୋତେ ତଳକୁ ଖସେଇଖସେଇ ଏ ପାପପଙ୍କରେ ବୁଡ଼େଇଦେଲା, ସିଏ ? ସିଏ କ'ଣ ? (ଗୌରମୋହନ ଆସନ୍ତି) ।

ଗୌର ବିବେକ ଇଏ କ'ଣ ... !

ବିବେକ ବାପା, ମୋତେ ଏଥରକ କ୍ଷମା କରିଦିଅ ବାପା, ମୁଁ ସତ କହୁଛି ବାପା, ତମ ପାଦଛୁଇଁ କହୁଛି ବାପା, ମୋ ବୋଉର ରାଣ ଖାଇ କହୁଛି ବାପା, ମୁଁ ପୁଣି ଖେଳିବି । ମୋ ଦେଶ ପାଇଁ ଖେଳିବି, ମୋ ବଂଧୁଶୁଭେଚ୍ଛୁମାନଙ୍କ ପାଇଁ ଖେଳିବି, ତମ ପାଇଁ, ମୋ ବାପାଙ୍କ ପାଇଁ ମୁଁ ପୁଣିଥରେ ବେଟ୍ ଧରିବି - ଛକା ପରେ ଛକା ପିଟିବି ସେଞ୍ଚୁରି କରିବି, ମୋ ଦେଶ ପାଇଁ ୱାର୍ଲଡକପ୍ ଜିତିବି...ତମେ...ତମେ ଏମିତି କାନ୍ଦୁଛ !

ଗୌର ବିବେକରେ, ଏବେ ଟି.ଭି. କ'ଣ କହିଲା, ଜାଣୁ ? ତୋତେ ଆଜୀବନ ଖେଳରୁ ବାସନ୍ଦ କରାଯିବ...ତୋ ଅର୍ଜୁନ ପୁରସ୍କାର ଫେରାଇ ନିଆଯିବ - ତୋତେ...ଜେଲ୍ ଯିବାକୁ ହେବ ।

ବିବେକ ବାପା ! ନ, ନା ବାପା ।

(ବସିପଡ଼ନ୍ତି - ଅନ୍ଧାର)



## ଶେଷଦୃଶ୍ୟ

(କିଛିଦିନ ପରେ କୌଣସି ଏକ ସଂଧ୍ୟା । ଆଲୋକ ଆସିଲାବେଳକୁ ଦେଖାଯାଏ, ଚନ୍ଦ୍ର ଲୁଚି ଲୁଚି ସେହି ପଛପାଖ ଢୋକ୍‌ରେ ବିବେକର ଘର ଭିତରକୁ ଆସନ୍ତି । ତାଙ୍କୁ ଦେଖି ଭିତରୁ ରାଗରେ ଆସନ୍ତି ଗୌରମୋହନ) ।

ଗୌର : ଆପଣ ... ? ଆପଣ କୁଆଡ଼େ ?

ଚନ୍ଦ୍ର : ସସ୍ । ଧୀରେ କୁହ, ମୋ ପଛରେ ପୁଲିସ ।

ଗୌର : ଚୋର ପଛରେ ପୁଲିସ ରହିବେନି ତ, ରହିବ କିଏ ?

ଚନ୍ଦ୍ର : ସମୁଦି ।

ଗୌର : ସେ ସମ୍ପର୍କ ବହୁଦିନରୁ ତୁଟିଗଲାଣି । ଯାଆନ୍ତୁ, ବାହାରିଯାଆନ୍ତୁ ।

ଚନ୍ଦ୍ର : ମୋ କଥା ଟିକିଏ ଶୁଣ, ସମୁଦି ।

ଗୌର : ଆଉ ମୁଁ କିଛି ଶୁଣିବିନି । ଆପଣଙ୍କୁ ଧକ୍‌କା ଦେଇ ବାହାର କରିଦେବା ଆଗରୁ ଆପଣ ନିଜ ସମ୍ମାନ ରଖି ଏଠୁ ଚାଲିଯାଆନ୍ତୁ । ଯାଆନ୍ତୁ, କହିଲି ପରା, ବାହାରିଯାଆନ୍ତୁ ।

ଚନ୍ଦ୍ର : ମୋତେ ଏମିତି ଅସମୟରେ ଘରୁ ବାହାରକରିଦେବାଟା....

ଗୌର : ମୋର ଏ କାମ ବହୁ ଆଗରୁ କରିବାର ଥିଲା । ମୁଁ ଯଦି ସେଦିନ ଆପଣଙ୍କୁ ମୋ ଘରୁ ଏମିତି ତଡ଼ିଦେଇଥାନ୍ତି, ଯୋଉଦିନ ଆପଣ ରୋଜା ପାଇଁ ହାତ ପାତିବାକୁ ଆସିଥିଲେ, ତା'ହେଲେ ମୋର ଦେବତାତୁଲ୍ୟ ବିବେକ ଆଜି ଏମିତି ନର୍କଯନ୍ତ୍ରଣା ଭୋଗୁନଥା'ନ୍ତା । ଯାଅ,

ବାହାରିଯାଅ, ଯାଅ କହୁଛି...ଗେଟ୍ ଆଉଟ୍ । (ଚିତ୍କାର କରି ଉଠନ୍ତି । ଚନ୍ଦ୍ର ନିରାଶାରେ ଫେରିପଡ଼ନ୍ତି । ବିବେକ ଭିତରୁ ବାହାରି ଆସେ ଓ ସାମ୍ନାରୁ ଆସନ୍ତି ରୋଜା ଓ ମନୋରଂଜନ) ।

ଚନ୍ଦ୍ର : ଆରେ ମା', ଏ ମ୍ୟାଚ୍ ଫିକ୍ସିଙ୍ଗ୍ ମାମଲାରେ ସି.ବି.ଆଇ. ପୁଲିସ ମୋ' ପଛରେ ଛାଇପରି ଗୋଡ଼େଇଛନ୍ତି । ତେଣୁ ଗୋଟେ ଜାଗାରେ କ'ଣ ରହିପାରୁଛି ! ଆଜି ବମ୍ବେ ତ କାଲି ଦିଲ୍ଲୀ । ଆଜି ରାତିଟା ଏଇଠି କଟେଇ କାଲି ହାଇଦ୍ରାବାଦ ଯିବି ବୋଲି ଭାବିଥିଲି-ହେଲେ...(ଗୌରଙ୍କୁ ଚାହାନ୍ତି) ଏଠି ତୁ... ?

ରୋଜା : ମୁଁ ଆପଣଙ୍କୁ ନ ଜଣାଇ ଗୋଟେ ଡିସିସନ୍ ନେଇନେଇଛି ।

ଚନ୍ଦ୍ର : ଡିସିସନ୍ ? କି ଡିସିସନ୍ ?

ରୋଜା : ମୁଁ ବିବେକକୁ ଡିଭୋର୍ସ୍ କରି ମନୋରଂଜନଙ୍କୁ ମ୍ୟାରେଜ୍ କରିଛି ।

ଗୌର : ମନୋରଂଜନ (ବିସ୍ମୟରେ ଚାହାନ୍ତି)।

ବିବେକ୍ : ରୋଜା ? (ଅବିଶ୍ୱାସ୍ୟ ଆଖିରେ ଦେଖନ୍ତି) ।

ଚନ୍ଦ୍ର : Oh Bravo bravo my child. You have taken a brilliant decission (ଦୁହେଁ ହସି ହସି ପାଦଧୂଳି ନିଅନ୍ତି) My blessings are always with you.

ବିବେକ : ମନୋରଂଜନ ! ମୋ ସ୍ତ୍ରୀକୁ ବିବାହ କରି ମୋ' ଘରକୁ ଆସିଛୁ, କ'ଣ ମୋତେ ବଧେଇ ଜଣେଇବାକୁ ?

ମନୋ : ଓଃ, ରିଲାକ୍ସ ବିବେକ, ରିଲାକ୍ସ ।

ବିବେକ : ଯା, ବାହାରିଯା, ମୋ ଘରୁ ।

ମନୋ : (ହସି) କ'ଣ କହିଲୁ ? ତୋ' ଘର ? ଏଇଟା କ'ଣ ତୋ' ଘର ?

ଗୌର : ଆଉ ?

ମନୋ : ତୋର ହୁଏତ ମନେନାହିଁ ବିବେକ, ଆୟକର ଫାଙ୍କିବା ପାଇଁ...

ଚନ୍ଦ୍ର : ଆରେ ହଁ ତ, ମୋର ବି ତ ମନେନଥିଲା । ସେତେବେଳେ ଏ ଘରଟାକୁ ମନୋରଂଜନ ନାଁରେ ରେଜିଷ୍ଟ୍ରି କରାଯାଇଥିଲା ।

ମନୋ : ଡକୁମେଣ୍ଟ୍ସ ଦେଖିପାରୁ, ଡକୁମେଣ୍ଟ୍ସ ।

ଗୌର : ବିବେକ (ଭାଙ୍ଗିପଡ଼ନ୍ତି) ।

ବିବେକ : ହଁ ବାପା (ଭାଙ୍ଗିପଡ଼ନ୍ତି) ।

ରୋଜା : (ଡକୁମେଣ୍ଟ୍ସ ନେଇଯାଇ) ବାସ୍, ଘରଟା ତେବେ କାହାର ?

ଚନ୍ଦ୍ର : ଆଉ ଏ ଶହେ ଟଙ୍କାର ନୌକର ଗୌରମୋହନ... ଗଉରା ମୋତେ ଘରୁ ବାହାରକରିଦଉଛି !

ରୋଜା : ଯାଆନ୍ତୁ ଡାଡି, ଆପଣ ଯେଉଁଠି ଯେମିତି ରହୁଥିଲେ, ସେଇଠି ଠିକ୍ ସେମିତି ରହିବେ (ଚନ୍ଦ୍ର ହସିହସି ଯାଆନ୍ତି) ।

ବିବେକ : ମନୋରଂଜନ, ଏ ଘର ତା'ହେଲେ ତୋର ? ତୁ ପରା ମୋ ବଂଧୁ, ପୁଣି ପିଲାଦିନର ବଂଧୁ ? ତୁ... ଶେଷରେ.....

ଗୌର : ହଇରେ ମନୋରଂଜନ : ବଂଧୁ ପରା ବଂଧୁ ପାଇଁ ଜୀବନ ପର୍ଯ୍ୟନ୍ତ ଦେଇଦିଏ, ତୁ କ'ଣଟା ଦେଲୁ ? ତା'ରି ଟଙ୍କାରେ ଛିଡ଼ାହୋଇ ତାକୁ ବେକ ପର୍ଯ୍ୟନ୍ତ ପାପପଙ୍କରେ ବୁଡ଼େଇଦେଲୁ ? ତା' ସ୍ତ୍ରୀକୁ ନେଲୁ, ଶେଷରେ ତା' ଘର ଖଣ୍ଡିକ ବି ? ଆରେ, ତୁ ଟା ମଣିଷ ନା ପଶୁରେ ?

ମନୋ : (ହସି) ମଉସା, ଆମ ଦି'ଜଣଙ୍କର ନାଁ ପଛରେ ଗୋଟେ ଫିଲୋସଫିକାଲ ରିଲେସନ୍ ଅଛି । ତା' ନା ବିବେକ; ହେଲେ, ମୋ ନାଁ ପରା ମନ...

ଗୌର : ମନ ଆଉ ବିବେକ (ମନ ହସିହସି ରୋଜାକୁ ନେଇ ଭିତରକୁ ଯାଉଥାଏ) ।

ଗୌର : ବିବେକ ?

ବିବେକ : ନା ବାପା । ତମେ କ'ଣ ଭାବୁଛ ମୁଁ ଭାଙ୍ଗିପଡ଼ିଛି ?

ଗୌର : ନା ନା, ତୁ ଭାଙ୍ଗିଯିବୁ କାହିଁକି, ମୁଁ ପରା ଅଛି, ଆରେ ତୁ ସିନା ମୋତେ ଗଉରାରୁ ଗୌରମୋହନ କରିଥିଲୁ, ମୁଁ ତୋ ପାଇଁ ପୁଣି ଗଉରା ହୋଇଯିବି । ମାଟି ତାଡ଼ିବି, ଘର କରିବି, କୁଡ଼ିଆ ଖଣ୍ଡେ ହଉ । ଆମେ ବାପପୁଅ ରହିଯିବା - ତୁ ଜମା ଚିନ୍ତାକରନା ।

ବିବେକ : ନା ନା ବାପା, ମୁଁ ଠିକ୍ ଅଛି (ଆଖିରୁ ଲୁହ ବୋହୁଥାଏ) ।

ଗୌର		ଆରେ ବାପା, ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି । ଆ', ପୁଣି ଦମ୍ଭଧରି ଛିଡ଼ାହେବା - ଆ' ବିବେକ, ଆ' । (ଟାଣିଆଣନ୍ତି, ଅନ୍ଧାର ହୁଏ । ପୁଣି ରାତିଅଧରେ ଆଲୋକ ଆସିଲାବେଳକୁ ଦେଖାଯାଏ, ବାହାରେ କିଏ କଲିଂବେଲ ମାରୁଥାଏ । ଭିତରୁ ଆସି ମନୋରଂଜନ ଦ୍ୱାର ଖୋଲେ । ବିବେକ ଆହତ ଅବସ୍ଥାରେ ଭିତରକୁ ଆସେ) ।

ମନୋ	: କିଏ ? ବିବେକ, ତୁ ? ରାତିଅଧରେ ?

ବିବେକ	: ମୋତେ ପୁଲିସ ଗୋଡ଼େଇଛି, ଏ ପଟେ କ୍ରିକେଟପ୍ରେମୀ ଦର୍ଶକମାନେ ଟେକାପଥର ପକେଇ ମୋତେ ଖଣ୍ଡିଆଖାବରା କରିସାରିଲେଣି । ସେମାନେ ହାତରେ ପାଇଲେ ମୋତେ ବାଡ଼େଇବାଡ଼େଇ ମାରିପକେଇବେ । ମୋତେ କୋଉଠି ଲୁଚେଇ ଦେ' ।

ମନୋ	: ଏ ଅବସ୍ଥାରେ ତୋ'ର କ'ଣ ବଂଚିବା ଉଚିତ ?

ବିବେକ	: ମୋତେ ଆଜି ରାତିଟା କୋଉଠି ଲୁଚେଇ ଦେ', ମୁଁ କାଲି ସକାଳେ ଚାଲିଯିବି । ପ୍ଲିଜ୍ ମନୋରଂଜନ, ପ୍ଲିଜ୍....

ମନୋ	: ଠିକ୍ ଅଛି । ତୋ'ର ସବୁ ବ୍ୟାଙ୍କ୍ ଏକାଉଣ୍ଟ ମୋ' ନାଁକୁ ଟ୍ରାନ୍ସଫର ପାଇଁ ମୁଁ ଗୋଟେ ଉଇଲ୍ କରିରଖିଛି, ତୁ ସେ ଉଇଲ୍‌ରେ ଦସ୍ତଖତ କରିଦେ'...

ବିବେକ	: ବ୍ୟାଙ୍କ୍ ଆକାଉଣ୍ଟ୍ ? ମିନୋରଂଜନ !

ମନୋ	: ଏ ସୁଯୋଗ ଛାଡ଼ିଦେଲେ ମୋତେ ସେସବୁ ମିଳିବନି - ନେ' (ଉଇଲ୍ ବାହାରକରି ଦେଲେ) ।

ବିବେକ	: ଯା ହଉ, ତୋ' ମୋ' ବଂଧୁତାର ନିଦର୍ଶନ ସବୁଦିନ ପାଇଁ ରହିଯିବ ।

ମନୋ	: ଧନ୍ୟବାଦ ! ଏଇ ନେ', ଏଇ ଠିକଣା ନେଇ ଭିତରେ ପଶିଯା-ଯା ଲୁଛକ୍ ।

ବିବେକ	: ଧନ୍ୟବାଦ । (ଯାଏ, ମନୋରଂଜନ ଉଇଲ୍ ଦେଖି ହସେ । ରାତି ପାହିଯାଏ । ମନୋରଂଜନ ଭିତରକୁ ପଶିଯାଏ । କିଛି ସମୟ ପରେ ଗୌର 'ବିବେକ' 'ବିବେକ' ଡାକି ଭିତରେ ପଶେ । ଏଣେତେଣେ ଖୋଜେ) ।

| | | |
|---|---|---|
| ଗୌର | : | 'ବିବେକ' 'ବିବେକ' । କୁଆଡ଼େ ଆଉ ଗଲା ପିଲାଟା ? |
| | | (ଚନ୍ଦ୍ର ଆସନ୍ତି) । |
| ଚନ୍ଦ୍ର | : | କିଏ ? କିଏ ତୁ ? ଗୌରମୋହନ ? ଗଉରା ? ତୁ ପୁଣି ଏଠି ! |
| ଗୌର | : | ବାବୁ, ମୋ ବିବେକକୁ ଖୋଜୁଛି । |
| ଚନ୍ଦ୍ର | : | ଏଠି ବିବେକ ନାହିଁ । |
| ଗୌର | : | ବାବୁ । ସମସ୍ତେ କହୁଛନ୍ତି, ମୋ ବିବେକ ଏଇ ଘର ଭିତରେ ଅଛି । |
| ଚନ୍ଦ୍ର | : | ପୁଣି ସେ ଘର ଉପରେ ଆଖି ? |
| ଗୌର | : | ତମକୁ ନେହୁରା ହଉଛି ବାବୁ । |
| ଚନ୍ଦ୍ର | : | ଗଲୁ....ଯା' ବାହାର୍, ବାହାର୍ ଏଠୁ (ଗୌର ଚାଲିଯାଏ) ହୁଁ, ବିବେକକୁ ଯେମିତି ଆମେ ପକେଟରେ ନେଇ ବୁଲୁଛୁ ! |
| | | (ଏହି ସମୟରେ ରୋଜା ଭିତରୁ ପାଟିକରି ଆସେ) । |
| ରୋଜା | : | ଚମ୍ପା ! ରାମୁ ! ନରିଆ ! କୁଆଡ଼େ ମରିଗଲ ସବୁ ! |
| ଚନ୍ଦ୍ର | : | ଆରେ, କ'ଣ ହୋଇଛି ? |
| ରୋଜା | : | ଏ କୁକ୍ ସରଭେଣ୍ଟ୍ ସବୁ ଗଲେ କୁଆଡ଼େ ? ଦିନ ଆସି ନଅଟା ବାଜିଲାଣି, ଚା'କପେ ମିଳୁନି... |
| ଚନ୍ଦ୍ର | : | ଆରେ ସତରେ, ମୁଁ ବି ତ ଏଯାଏ ଚା ପିଇନି । |
| ରୋଜା | : | କୁଆଡ଼େ ଗଲା ସେ ଚମ୍ପା ? ଚମ୍ପା, ଚମ୍ପା (ମନୋ ଆସେ) । |
| ମନୋ | : | କ'ଣ ହେଇଛି ? ଏମିତି ଚିଲାଉଛ କାହିଁକି ? |
| ରୋଜା | : | ଚିଲେଇବିନି ? ଏ କୁକ୍ ସରଭେଣ୍ଟମାନଙ୍କର ଟିକିଏ ଦାୟିତ୍ୱ ନାହିଁ ! ଦିନ ଆସି ନଅଟା ବାଜିଲାଣି, ଚା' କପେ କରିପାରୁନାହାନ୍ତି । |
| ମନୋ | : | ଚା' କପେ କରିବାପାଇଁ କୁକ୍‌ଟେ କ'ଣ ନିହାତି ଦରକାର ? ନିଜ ହାତରେ କ'ଣ ଚା' କପେ କରିହବନି ? |
| ରୋଜା | : | ନିଜ ହାତରେ ! ମୁଁ କେବେ ଚା' କରିବାର ଦେଖିଛ ? |
| ମନୋ | : | ଦେଖିନଥିଲେ ଏବେ ଦେଖିବାକୁ ବାଧ ହେବି । କାରଣ କୁକ୍ ସରଭେଣ୍ଟମାନଙ୍କୁ ମୁଁ ଏଠୁ ଛୁଟି କରିଦେଇଛି, ସବୁଦିନ ପାଇଁ । |

ଚନ୍ଦ୍ର : କ'ଣ ହେଲା ?

ରୋଜା : ତମର ହୋସ୍ ଅଛି ତ ?

ମନୋ : ହୋସ୍ ତ ନଥିଲା, ହୋସ୍ ଆସିଗଲାପରେ ଛୁଟି କରିଦେଲି ।

ରୋଜା : ଏ ଘରର ଯାବତୀୟ କାମ, ଏମିତିକି ରନ୍ଧାବଢ଼ା ହେବ କେମିତି ?

ମନୋ : ମୋ ବାପା କହୁଥିଲେ, ଭାରତୀୟ ନାରୀମାନେ ଚୁଲି ଫୁଙ୍କି ଲୁହବୁହାଇ ଛ' ତିଅଣ ନଅଭଜା କରି ସାରା ପରିବାରକୁ ପରଷିବାରେ ଆନନ୍ଦ ପାଇଥାନ୍ତି । ତମ ବାପା କ'ଣ ତମକୁ ଏକଥା କହିନାହାନ୍ତି ?

ଚନ୍ଦ୍ର : ମନୋରଂଜନ ! ତମେ କାହାକୁ କ'ଣ କହୁଛ ? ତମେ ଜାଣ, ରୋଜା କାହା ଝିଅ !

ମନୋ : ତମ ଡାଡିଙ୍କୁ କହିଦିଅ ରୋଜା, ତମେ ସିନ୍ଦୂର ପିନ୍ଧିସାରିଲାପରେ ଜଣକର ସ୍ତ୍ରୀ ହୋଇସାରିଛ । ଆଉ ସୁଖରେ ରହିବା ପାଇଁ ସ୍ୱାମୀ ସହିତ, ତମ ଭାଷାରେ ତମ ଲାଇଫ୍‌ପାର୍ଟନର୍‌ର ସହିତ, ଜୀବନକୁ ଶେୟାର କର, ନହେଲେ...

ରୋଜା : ନ ହେଲେ ?

ମନୋ : ଏଇ ରହିଲା ଡିଭୋର୍ସ୍ ପେପର୍ସ୍ (ଦେଖାନ୍ତି) ।

ଚନ୍ଦ୍ର ଓ ରୋଜା : ଡିଭୋର୍ସ୍ !

ମନୋ : ଯିଏ ବିବେକ ଭଳିଆ ପ୍ରତିଭାବାନକୁ ପଦିଏ କଥାରେ ଡିଭୋର୍ସ କରି ଆସିପାରିଲା, ସେ ଯେ କୋଉ ମୁହୂର୍ତ୍ତରେ ମୋତେ ଡିଭୋର୍ସ କରିଥାଆନ୍ତା, କିଏ କହିପାରିବ । ତେଣୁ ଏତେବଡ଼ ଅପମାନ ପାଇବା ଆଗରୁ ନିଜ ରାସ୍ତା ସଫା କରି ରଖିବା ଉଚିତ । ଆଉ ସେଇଥିପାଇଁ ଆମର ବିବାହ ଦିନ ହିଁ ତୁମ ଅଂଲକ୍ଷ୍ୟରେ ମୁଁ ଏ ଡିଭୋର୍ସ୍ ପେପର୍ସ୍ ପ୍ରସ୍ତୁତ କରେଇନେଇଥିଲି ।

ଚନ୍ଦ୍ର : ମନୋରଂଜନ ! କି ସାଂଘାତିକ ତମେ !

ମନୋ : ନହେଲେ ବିବେକ ଭଳି ଘରକଣରେ ବସି କାନ୍ଦୁଥାନ୍ତି ।

ରୋଜା : ମନୋରଂଜନ, ତମ କଥା ଉପରେ ଭରସା ରଖି ମୁଁ ବିବେକକୁ ଛାଡ଼ିଲି ।

ମନୋ : ମୋ ନାଁ କ'ଣ, ଜାଣିଛ ରୋଜା ? ମନୋରଂଜନ । ସଂକ୍ଷେପରେ ମୋତେ ମନ କହନ୍ତି, ମନ । ଏଇ ମନକୁ କବିମାନେ ପ୍ରଜାପତି ସହିତ ତୁଳନା କରିଥିବାର ପଢ଼ିଥିବ । ବାସ୍, ମୁଁ ସେହି ପ୍ରଜାପତି । ଫୁଲକୁ ଆକାଶରେ ଉଡ଼ିବାର ସ୍ୱପ୍ନଦେଖାଇ ତାକୁ ଲୁଟ୍ କରି ନିଜେ ଉଡ଼ିଯିବା ମୋର ଧର୍ମ । ତେଣୁ ବିବେକର ସମସ୍ତ ସମ୍ପତ୍ତି ମୋ ହାତକୁ ଆସିଯିବା ପରେ ମୋର ଆଉ ତମ ସହିତ ଆଡ୍‌ଜଷ୍ଟ କରିବା ଦରକାର କ'ଣ ? ବରଂ ତମେ ତମ ଡାଡିଙ୍କ ସହିତ ଏ ଘରେ ରହିବା ପାଇଁ ମୋ' ସହିତ ଆଡଜଷ୍ଟ କର । (ଚନ୍ଦ୍ରକୁ) କ'ଣ, ମୁଁ ଠିକ୍ କଥା କହୁନି ?

ଚନ୍ଦ୍ର : ଅବଶ୍ୟ, ମନୋରଂଜନ ।

ରୋଜା : ଉଚିତ କଥା କହୁଛନ୍ତି ?

ଚନ୍ଦ୍ର : ନାଇଁ, ମୁଁ କ'ଣ କହୁଥିଲିକି...

ରୋଜା : ଏଇଠି, ଏଇ ମନୋରଂଜନ ସହିତ ରହିବାପାଇଁ, ମୁଁ ଆଡ୍‌ଜଷ୍ଟ କରିବି, କମ୍ପ୍ରମାଇଜ୍ କରିବି ?

ମନୋ : ନା ନା, ମୁଁ ବାଧ କରୁନି...ତମ ଖୁସି (ଭିତରକୁ ଯାଏ) ।

ଚନ୍ଦ୍ର : ତୁ ଚିନ୍ତା କରନା ରୋଜା, ମୁଁ ଅଛି । ଏ ମ୍ୟାରେଜ୍ ଯାଉ, ତୁ ଥାର୍ଡ୍ ମ୍ୟାରେଜ୍ କରିବୁ ।

ରୋଜା : ଥାର୍ଡ୍ ମ୍ୟାରେଜ୍ ? ଡାଡି, ଆପଣ ମୋତେ କ'ଣ ଭାବୁଛନ୍ତି ? ମୁଁ କ'ଣ ଗୋଟେ କଣ୍ଢେଇ ? ଖାଲି ମ୍ୟାରେଜ୍ ପରେ ମ୍ୟାରେଜ୍ ଆଉ ଡିଭୋର୍ସ୍ ପରେ ଡିଭୋର୍ସ୍ କରିଚାଲୁଥିବି ? ମୋ ମମି ଥିଲେ କ'ଣ ମୋତେ ଏମିତି ନିଜ ସ୍ୱାର୍ଥ ପାଇଁ ନଚେଇଥାଆନ୍ତା ! ମୁଁ ଶୁଣିଥିଲି, ଆପଣ ଜୁଆ ଖେଳନ୍ତି, କିନ୍ତୁ ଶେଷରେ ମୋତେ ନେଇ ଜୁଆ ଖେଳିଦେଲେ ।

ଚନ୍ଦ୍ର : ରୋଜା ।

ରୋଜା : ଆପଣ ପରା ମୋ ଡାଡି ? ମମି ମଲାପରେ ବାପା, ମା', ସବୁ କିଛି ! ମୋ ଜୀବନ ଗଢ଼ିବାରେ, ସଂସାର ବସାଇବାରେ, କ'ଣ କରିଛନ୍ତି ? କି ଉପଦେଶ ଦେଇଛନ୍ତି ? କି ତ୍ୟାଗ କରିଛନ୍ତି ? ଆଜି

ଶେଷବେଳେ କହୁଛନ୍ତି କ'ଣନା, ମନୋରଂଜନ ସହିତ ମୁଁ ଆଡ୍‌ଜଷ୍ଟ୍ କରିବି, କମ୍ପ୍ରମାଇଜ୍ କରିବି ! କାରଣ ଆପଣଙ୍କ ହାତରେ କାଣି କଉଡ଼ିଟିଏ ନାହିଁ । ମୋତେ ମନୋରଂଜନ କଥାରେ ଉଠ୍‌ବସ୍ କରାଇ ତା'ଠୁଁ ଟଙ୍କା ନେଇ ଜୁଆ ଖେଳିବେ, ମଦ ପିଇବେ, କ୍ଲବ୍ ଯିବେ । କାହିଁ, ବିବେକ ସହିତ ଆଡ୍‌ଜଷ୍ଟ କରିବାକୁ, କମ୍ପ୍ରମାଇଜ୍ କରିବାକୁ ତ କେବେ କହିନାହାନ୍ତି ! ବିବେକକୁ କପେ ଚା' ତିଆରି କରି ପିଆଇବାକୁ କେବେ ତ କହିନାହାନ୍ତି !

ଚନ୍ଦ୍ର : ରୋଜା ।

ରୋଜା : ବାସ୍ ଡାଡି, ବାସ୍ । ବହୁତ ହୋଇଗଲା... ଦରକାର ନାହିଁ ଆପଣଙ୍କର ଆଡ୍‌ଭାଇସ୍ । ମୁଁ ଯଦି ମୋ' ଜୀବନ ପାଇଁ କାହା ସହିତ ଆଡ୍‌ଜଷ୍ଟ କରିବି, କମ୍ପ୍ରମାଇଜ୍ କରିବି, ତା'ହେଲେ ସେ ହେଉଛି ଏକମାତ୍ର ଜଣେ...ସ୍ୱାଭିମାନୀ ବିବେକ । ମୋତେ ଖୋଜିବନି ଡାଡି, ମୁଁ ଯାଉଛି, ମୋ ବିବେକକୁ ଖୋଜିବାକୁ । ବିବେକ, ବିବେକ ।

ଚନ୍ଦ୍ର : ରୋଜା, ତୁ ଝିଅ ହୋଇ ମୋତେ ଆଜି ଢେର୍ କଥା ଶିଖେଇଲୁ । ମୁଁ ଏ ବିଶ୍ୱାସଘାତକ ମନୋରଂଜନକୁ ବିଶ୍ୱାସ କରି ମସ୍ତବଡ଼ ଭୁଲ୍ କରିଛି । କିନ୍ତୁ ମନେରଖ୍ ମନୋରଂଜନ, ମୁଁ ତୋତେ ଛାଡ଼ିବିନି । ମୁଁ ଯାଉଛି, ବିବେକକୁ ଖୋଜିଆଣି ତା'ରି ଆଗରେ ତୋ' ଅସଲ ମୁଖା ଖୋଲିଦେବି । ତୋତେ ଏ ସମ୍ପତ୍ତି ଭୋଗକରିବାକୁ ଦେବିନି ମୁଁ (ଚାଲିଯାଆନ୍ତି – ମନୋରଂଜନ ହସିହସି ଆସେ) ।

ମନୋ : ବିବେକକୁ ଖୋଜିବେ ଏମାନେ ? ବିବେକ ପରା ମୋ ଠିକଣାରେ ବନ୍ଦୀ । ଦେଖେ ବିବେକକୁ । ବିବେକ ବିବେକ (ଡାକିଡାକି ଭିତରକୁ ଯାଏ । ଏଣେତେଣେ ଖୋଜେ । ଶେଷରେ ବିବେକକୁ ନପାଇ ଗୁଡ଼ାଏ ଭିଜିଟିଙ୍ଗ୍ କାର୍ଡ୍ ଧରିଆସେ ।)

ମନୋ : ବିବେକ ! ତୁ ଶେଷରେ ଏଇ ଆଡ୍ରେସ ଧରେଇଦେଇ ଫେରାର ହେଇଗଲୁ ! (ଫ୍ଲାସ୍‌ବ୍ୟାକ୍ ସରିଯାଏ – ଫ୍ରିଜ୍)

ବିବେକର ସ୍ୱର : ହଁ, ସମସ୍ତେ ବିବେକକୁ ଖୋଜିବାର ଦେଖି ଆତ୍ମସନ୍ତୋଷ ଲାଭ କଲି ସିନା, ସେମାନେ ମୋତେ ପାଇବା ଆଗରୁ ମୁଁ ହଜିଯିବାର ନିଷ୍ପତ୍ତି ନେଇ, ଏଇ ଇଣ୍ଟରନେଟ୍‌ରେ ମୋ ଅବଶେଷକୁ

ରଖିଦେଇଗଲି । ମୋତେ ଖୋଜିଲେ ମୁଁ ଏଇ ଆଡ୍ରେସ୍‌ରେ ଉପଲବ୍ଧ ହେବି । W.W.W.ବିବେକ ଡଟ୍ କମ୍ ।

ସମସ୍ତେ : 'ବିବେକ' ।

ବିବେକ : ମଣିଷର ମନ ଓ ବିବେକ ଭିତରେ ଏ ଖେଳ ଚାଲିଛି ତ କେଉଁ ଅନାଦିକାଳରୁ, ଆଉ ଚାଲିଥିବ ଅନନ୍ତକାଳ ପର୍ଯ୍ୟନ୍ତ । ମଣିଷ ଜୀବନ ଜୀବନ ରୂପକ ବେଲ୍ ଏଠି 'W' ଚିହ୍ନିତ ଷ୍ଟାମ୍ ଉପରେ ପଦ୍ମପତ୍ରର ଜଳପରି ଟଳଟଳ । ଏଣେ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟର ଛଅବଲ୍‌ଭରା ଓଭରଟି ନେଇ ମନ ବୋଲିଂ ପାଇଁ ତତ୍ପର । କେବଳ ବିବେକ ହାତର ବେଟ୍ ଖଣ୍ଡିକ ଯାହା ଭରସା । ବିବେକଟି କରିବ କ'ଣ । ତାକୁ ଘେରିରହିଥିବା ତିନୋଟି 'W'କ'ଣ ଛାଡୁଛନ୍ତି ? ପ୍ରତିମୁହୂର୍ତ୍ତରେ ମନର ବଲ୍‌କୁ ଦେହରେ ବାଡ଼େଇ ଉପୁଡ଼ିଯିବାରେ ବ୍ୟଗ୍ର । ମଣିଷଜୀବନର ଏ ଇନିଂସ୍ ସମ୍ଭାଳିବ କିଏ ? ମଣିଷ ତ ?

(ବାରମ୍ବାର ପ୍ରତିଧ୍ୱନିତ ହୁଏ । ଧୀରେଧୀରେ ଯବନିକା ନଇଁଆସେ) ।



## 'ସାଥୀ'ର ଚରିତ୍ରମାନେ

- ସୂତ୍ରଧର
- ଗଂଗା
- ଯମୁନା
- ଚଢା
- ସଂଜୟ
- ମାନସ୍
- ଦରୁଆନ୍

# ସାଥୀ

(ନାଟକ ଯଦିବା ସାହିତ୍ୟ ପରିସରଭୁକ୍ତ, ତଥାପି ସାହିତ୍ୟର ଅନ୍ୟ ବିଭାଗ ପରି କେବଳ ପୁସ୍ତକ ଆକାରରେ ପ୍ରକାଶ କରିଦେଲେ ଏହା ପୂର୍ଣ୍ଣାଙ୍ଗ ସାହିତ୍ୟର ମର୍ଯ୍ୟାଦାପ୍ରାପ୍ତ ହୋଇନଥାଏ । ନାଟକଟି ପୂର୍ଣ୍ଣାଙ୍ଗପ୍ରାପ୍ତି ହେବାକୁ ହେଲେ ମଂଚରେ ପରିବେଷିତ ହେବା ନିହାତି ପ୍ରୟୋଜନ । ତେଣୁ ନାଟକଟେ ପାଇଁ ମଂଚର ଆବଶ୍ୟକତା ବୈଦିକ ଯୁଗରୁ ପ୍ରତିପାଦିତ । ପ୍ରଥମେ ରାଜସଭା, ପଥପ୍ରାନ୍ତ ପ୍ରସେନିୟମ ଥିଏଟର ଆଦିରେ ମଂଚସ୍ଥ ହେଉହେଉ ଅପେରା, ଚଳଚ୍ଚିତ୍ର, ରେଡିଓ, ଦୂରଦର୍ଶନକୁ ମଂଚ ଭାବରେ ଗ୍ରହଣ କରି ନାଟକ ମଂଚସ୍ଥ ହେବାରେ ଲାଗିଲା । କିନ୍ତୁ ଜୀବନରେ କଥା କହୁଥିବା ସଂସ୍କୃତିର ପବିତ୍ରତା ପରଂପରାର ଗାଥା ଗାଉଥିବା ନାଟକ ବ୍ୟବସାୟିକ ବିଫଳତା ନାମରେ ଅବକ୍ଷୟମୁଖୀ ହେବାରେ ଲାଗିଲା । ମଂଚନାଟକର ପୁନରୁଦ୍ଧାର ପାଇଁ ନବନାଟ୍ୟ ଆନ୍ଦୋଳନ ଆଦି ନାଁରେ କେତେ ନା କେତେ ଆନ୍ଦୋଳନ ପରୀକ୍ଷାନିରୀକ୍ଷା ଚାଲିଲା - ଏବେ ବୈଷୟିକ ଜ୍ଞାନକୌଶଳକୁ ପ୍ରୟୋଗ କରି ସାହିତ୍ୟ (ନାଟକ)ର ପୁନରୁଦ୍ଧାର କଲେ କେମିତି ହୁଅନ୍ତା - ଏମିତି ପ୍ରୟାସ ଆରମ୍ଭ ହୋଇ ସାରିଛି ଦୃଶ୍ୟଭିତ୍ତିକ ପତ୍ରିକା ମାଧ୍ୟମରେ - ସେହି ସି.ଡି.କୁ ଏକ ମଂଚଭାବରେ ଗ୍ରହଣକରି ଏମିତି ନାଟକ ଗୋଟେ ପ୍ରଯୋଜନା କଲେ ସହଜରେ ଅଳ୍ପ ଖର୍ଚ୍ଚରେ ସୁନ୍ଦର ସୁରୁଚିପୂର୍ଣ୍ଣ ନାଟକଟେ ଅବଶ୍ୟ ପ୍ରଯୋଜିତ କରିହୁଅନ୍ତା - ସେହି ସି.ଡି. ପାଇଁ ଏ ନାଟକ ଅବଶ୍ୟ ସାହିତ୍ୟ ପର୍ଯ୍ୟାୟଭୁକ୍ତ ।

ସୂତ୍ରଧର — ଯଦିବା ଏକା ହୋଇ ଜନ୍ମହେବା ଓ ଏକା ହୋଇ ମରିବା ବିଧିନିର୍ଦ୍ଦିଷ୍ଟ, ତଥାପି ବଂଚିବା ପାଇଁ ତ ସାଥୀଟିଏ ଲୋଡ଼ା । ଯେମିତି ଗଂଗାର

ଜନ୍ମ ଯମୁନା ପାଇଁ, ଯମୁନାର ଭାଗ୍ୟ ଭାବନାର ବୋଝକୁ ସମୁଦ୍ର ପର୍ଯ୍ୟନ୍ତ ବୋହିନେବାପାଇଁ, କିନ୍ତୁ ଭୋଗ୍ୟ ଭାବନାରେ ବିକାରଗ୍ରସ୍ତ ଯମୁନା, ବସ୍ତୁବାଦୀ ସଭ୍ୟତାରେ ଆକ୍ରାନ୍ତ ଯମୁନା, ଅପସଂସ୍କୃତିର ଆବର୍ଜନାମୟ ଯମୁନା, ସେ କ'ଣ ଯାଇପାରିବ ସମୁଦ୍ର ପର୍ଯ୍ୟନ୍ତ - ଗଂଗା କ'ଣ ତାକୁ ସାଥୀ ଭାବରେ ସଂଗରେ ନେଇପାରିବ ?

## ପ୍ରଥମ ଦୃଶ୍ୟ

(ସ୍ଥାନ : ନରଣପୁର ଗାଆଁର ଛକ, ବରଗଛ ମୂଳରେ ପୁରୁଣା ସାଇକେଲ ରିପେୟାରିଂ ଦୋକାନ । ଦୋକାନୀ ଆଲାମଚନ୍ଦ୍ର ବସି ରବରଟ୍ୟୁବ୍ ଘଷୁଥାଏ, ଜଣେ ପମ୍ପ ଦେଉଥାଏ । ଆସେ ଗଂଗା, ନୂଆ ସାଇକେଲ ଓ ହାତରେ ଗୋଟେ କେରିଏର ଧରି-

ଗଂଗା — ଚନ୍ଦ୍ରା ଓ ଚନ୍ଦ୍ରା !

ଚନ୍ଦ୍ରା — କିରେ ଗଂଗା ! କ'ଣ ହେଲା, ନୂଆ ସାଇକେଲ କିଣିଲୁକି ?

ଗଂଗା — ନୂଆ କାହିଁକି ହବ, ବରଷେ ହୋଇଗଲାଣି ପରା !

ଚନ୍ଦ୍ରା — ବରଷେ ?

ଗଂଗା — ଆଉ ?

ଚନ୍ଦ୍ରା — ହଉ, ହେଲା କ'ଣ ?

ଗଂଗା — କେରିଏର ନଥିଲା, ଭଲଲାଗିଲାନି, ତେଣୁ କେରିଏରଟା କିଣି ଆଣିଛି, ଟିକିଏ ଫିଟିଂ କରିଦିଅନ୍ତୁନି ?

ଚନ୍ଦ୍ରା — ହଇରେ ବୋକା, ଆଜିକାଲି ଲୋକେ ଆଉ କେରିଏର ଲଗଉଛନ୍ତି ନା, ଯିଏ ଲଗେଇଛି ବରଂ ଖୋଲିଦଉଛନ୍ତି - ତୁ କ'ଣନା -

ଗଂଗା — କାହିଁକି ?

ଚନ୍ଦ୍ରା — କେରିଏର୍ ଥିଲେ ତୁ କ'ଣ ଏକା ଯାଇପାରିବୁ ? ଯିଏ ଦେଖିବ ସିଏ ବସିପଡ଼ିବ, କାହାକୁ ମନା କରିବୁ ଆଉ ମନା କଲେ ବି ଅସୁବିଧା, ରାଗରୁଷ । ନାନା କଥା ।

ଗଂଗା	ବୁଝିଲୁନା ଚଚ୍ଚା, ମୋତେ ଏକା ଯିବାକୁ ଜମା ଭଲଲାଗେନି - ସାଂଗରେ ଜଣେ ଥିବ, ଗପସପ କରୁଥିବ, ବାଟ ଜଣାପଡ଼ିବନି । ଆଉ ରଡରେ ବସିଲେ ତାକୁ ବାଧିବ । ତେଣୁ କେରିଏରଟା ଆଣିଛି, ଲଗେଇଦେ ତ ।

ଚଚ୍ଚା	ହଉ, ତୁ କହୁଛୁ ଯେତେବେଳେ, ଲଗେଇଦଉଛି - ହେଲେ ମନେରଖିଥା, ପଛରେ ଫେଏର୍ ନିଜେ ଆସି କହିବୁ - ଚଚ୍ଚା, ଏ କେରିଏରଟା ଖୋଲିଦେ ।

ଗଂଗା	ହଉ ହଉ, ତୁ ଲଗା, ପଛରେ ମୁଁ କହିଲେ ତୁ ସେତେବେଳେ ମୋତେ କହିବୁ, ଲଗା ଲଗା ।

ଚଚ୍ଚା	ହଉ, ତୋ ଇଚ୍ଛା । (ଲଗେଇବାକୁ ଆସିବାରୁ ଅନ୍ଧାର)



## ଦ୍ୱିତୀୟ ଦୃଶ୍ୟ

ସ୍ଥାନ — ଲତାଗହଳିଆ ଗ୍ରାମ୍ୟରାସ୍ତା - ଅତ୍ୟାଧୁନିକ ନହେଲେ ବି ଆଧୁନିକ ଗଂଗା ମନଖୁସିରେ ପେଡ଼େଲ ମାଡ଼ି ସାଇକେଲ ଚଳଉଥାଏ । ଏଣିକି ତେଣିକି ଚାହୁଁଥାଏ । ମନେ ମନେ ଗୀତ ଗାଉଥାଏ - ଦେଖୁଥାଏ କାଳେ କିଏ ଆସିବ ତା' ସାଇକେଲ ଯିବା ପାଇଁ ଅନୁରୋଧ କରିବ ।

ଗଂଗା — ଆଜି କ'ଣ କେହି ଆସୁନାହାନ୍ତି ? ମୁଁ କେରିଏର୍ ଲଗେଇଛି ତ କେହି ଆସିବେନି - କେରିଏର୍ ନଥିଲାବେଳେ ଉଲ୍ଟା ପଡ଼ିବେ ।

## ତୃତୀୟ ଦୃଶ୍ୟ

ପୁଣି ସାଇକେଲ ଚଲାଏ, ଏମିତି ଯାଉ ଯାଉ କିଛି ବାଟ ଗଲାପରେ ଗୋଟିଏ ଛକରେ ହଠାତ୍ ତା' ସାମ୍ନାକୁ ଦୌଡ଼ିଆସେ ଝିଅଟେ । ଯମୁନା ।

ଯମୁନା ଗଂଗାଭାଇ ଗଂଗାଭାଇ ।

ଗଂଗା (ଏଣେତେଣେ ଚାହେଁ) କିଏ ?

ଯମୁନା (ସାମ୍ନାରେ ଛିଡ଼ାହୋଇ) ଗଂଗାଭାଇ !

ଗଂଗା କିଲୋ ଯମୁନା, ତୁ ? ଆଜି କ'ଣ ଏମିତି ଶାଢ଼ି ପିନ୍ଧି...

ଯମୁନା ଆଜି ପରା ମୋ ଜନମଦିନ ।

ଗଂଗା ଜନମଦିନ ?

ଯମୁନା ହଁ, ମୋତେ ଆଜି ଷୋହଳ ପୂରି ସତର ପଶିଲା ତ ତେଣୁ ଶାଢ଼ି ପିନ୍ଧିଛି ।

ଗଂଗା ଷୋହଳ ପୂରି ସତର ପଶିଲା, ତା'ମାନେ...(କ'ଣ ଭାବେ) ହଉ କୁଆଡ଼େ ବାହାରିଛୁ ?

ଯମୁନା ନାଇଁ... ଶାଢ଼ି ପିନ୍ଧିପକେଇଲି ତ ବାହାରେ ବୁଲିବାକୁ ଇଚ୍ଛା ହେଲା...

ଗଂଗା ଏଠି ଏ ଗାଆଁଭୂଇଁରେ କ'ଣ ଅଛି ଦେଖିବୁ, କୋଉଠି ବୁଲିବୁ ? ଚାଲୁନୁ, ସହର ଆଡ଼େ ବୁଲିଆସିବା ।

ଯମୁନା	ସହର...ହେଲେ...ଯିବି କେମିତି ?

ଗଂଗା	କାହିଁକି, ଆସୁନୁ ମୋ' ସାଇକେଲ୍‌ରେ ପଳେଇବା ।

ଯମୁନା	ତୋ' ସାଇକେଲ୍‌ରେ... ?

ଗଂଗା	ଏଇ ଦେଖୁନୁ, ନୂଆକରି କେରିଏର ଲଗେଇଛି, କେହି ବସିନାହାନ୍ତି, ଫାଷ୍ଟ୍ ତୁ ବସିବୁ । ଆ..

ଯମୁନା	ନୂଆ କେରିଏର୍...(ଦେଖେ)

ଗଂଗା	ଆ, ବସ୍ (ଯମୁନା ବସିବାକୁ ଉଦ୍ୟମ କରେ - ଅଂଧାର)



## ଚତୁର୍ଥ ଦୃଶ୍ୟ

ଗଂଗା ଯମୁନାକୁ ସାଇକେଲରେ ବସାଇ କେତେ ଖାଲଢିପ, ବାଙ୍କ, ଛକ ପାରିହୋଇ ମନଖୁସିରେ ଯାଉଥାଏ - ଗୀତ ବି ଗାଉଥାଏ ।

ମନ-ପାରାରେ ।

ଦେ ଦେ ଦେ

ମୋତେ ଧରାରେ - ମନ-ପାରା

(ଏହି ସାଇକେଲ ଯାତ୍ରା ସମୟରେ ମନରେ ତା'ର ଭାସିଯାଉଥାଏ ଯମୁନାକୁ ନେଇ କେତେ ସ୍ୱପ୍ନ, କେତେ କଳ୍ପନା, ଯମୁନା ସହିତ ବାହାଘର, ସୁନ୍ଦର ଟାଇଲିଘର ଭିତରେ ସଂସାର । କଳି ଓ କଳ୍ପନାର ଫେଣ୍ଟାଫେଣ୍ଟି ସଂସାର ଭିତରେ ଗୋଟିଏ ଦୋଳିରେ ଉଭୟେ ବସି ଝୁଲୁଥାନ୍ତି, ଗୀତଟେ ଆସେ । ହଠାତ୍ ଦୋଳିଟା ଛିଣ୍ଡିପଡ଼େ, ଭାବନା ଭାଂଗିଯାଏ ଓ ସାଇକେଲ ପହଞ୍ଚିଯାଏ ଗୋଟିଏ ଛକ ଉପରେ, ଯେଉଁଠି ଗ୍ରାମ୍ୟ ରାସ୍ତା ମିଶିଯାଇଛି ଚିକ୍‌କଣ ପିଚୁରାସ୍ତା ସହିତ ।

ଗଂଗା — ଏଇଟା ନୂଆସାହି ଛକ ।

ଯମୁନା — (ରାସ୍ତାକୁ ଦେଖି) ଆହା ...ଏ ରାସ୍ତାଟା କେତେ କଳା ଆଉ କେଡ଼େ ଚିକ୍‌କଣ ହୋଇଛି ମ !

ଗଂଗା — ଆଉ, ଦୂରରୁ ଦେଖିଲେ ତୋର ଏ ଲମ୍ବା ବେଣୀ ଭଳିଆ ଦିଶିବ ।

ଯମୁନା — (ଲାଜେଇ) ଏ ପଟେ...

ଗଂଗା — ଏପଟେ ସହର ଆଉ ସେପଟେ ସମୁଦ୍ର । ତୁ କୁଆଡ଼େ ଯିବୁ ?

| | |
|---|---|
| ଯମୁନା | ସହରଟା ଭାରି ସୁନ୍ଦର ନା.. ? |
| ଗଂଗା | ଚାଲୁନ୍ତୁ, ନିଜ ଆଖିରେ ଦେଖିଆସିବୁ । |
| ଯମୁନା | ତୁ ମୋତେ ଏତେ ବାଟ ବୋହି ନେଇପାରିବୁ ? |
| ଗଂଗା | ତୁ ଯେତେବାଟ କହିବୁ, ମୁଁ ସେତେବାଟ ବୋହିନେବି । |
| ଯମୁନା | ତୋତେ କଷ୍ଟ ହେବନି ? |
| ଗଂଗା | ଆଲୋ, ଗଂଗାର ଜନ୍ମ ତ ଯମୁନା ପାଇଁ । ଯମୁନା ଯେତେ ଜଳ ଢାଳିଲେ ବି ଗଂଗା ତ ତାକୁ ସମୁଦ୍ର ପର୍ଯ୍ୟନ୍ତ ନବନା, ଆ । |
| | (ସଂଜୟ ନାମକ ଯୁବକଟିଏ ମୋଟରସାଇକେଲରେ ଆସିଛି ।) |
| ସଂଜୟ | କୁଆଡ଼େ ଯିବ ? |
| ଯମୁନା | ସହର |
| ଗଂଗା | ହଁ ହଁ, ସହର ଯିବା । |
| ସଂଜୟ | କ'ଣ, ଏଇ ସାଇକେଲ୍‌ରେ ? |
| ଗଂଗା | ହଁ, ସାଇକେଲରେ ନୂଆ କେରିଏର ଲଗେଇଛି । |
| ସଂଜୟ | (ହସିଉଠେ) ନୂଆ କେରିଏର ? ଏ ଲୁହା ରଡ୍ ଉପରେ ବସି ସହର ଯିବ ? ଛି ଛି ସହର ଯଦି ଯିବ, ଆସ ଏ ମୋଟରସାଇକେଲରେ ବସି ଯିବ - କେତେ ସୁନ୍ଦର ଗଦି ପଡ଼ିଛି । ଫୁର୍‌ରକିନା ଚଢ଼େଇ ପରି ଉଡ଼ିଯିବ । ଆସ । |
| ଗଂଗା | ନା ନା, ସେ ପଡ଼ିଯିବ, ବସିପାରିବନି । |
| ସଂଜୟ | ତୋ'ର କ'ଣ ଗଲା ! |
| ଯମୁନା | (ଲୋଭିଲା ଆଖିରେ ମୋଟରସାଇକେଲକୁ ଦେଖେ) |
| ଗଂଗା | ନା ନା ଯମୁନା, ମୋଟରସାଇକେଲ ଭାରି ଜୋର୍‌ରେ ଚାଲେ, ତୁ ବସିପାରିବୁନି । |
| ଯମୁନା | ଏ ଗଦି ଭାରି ନରମନା ? |
| ସଂଜୟ | ଖୁବ୍ ନରମ । ବସିଲେ ଆହୁରି ନରମିଯାଏ, ଆଉ ଚାଲିଲେନା |

ସବୁଠୁ ନରମ ଲାଗେ - (ଗଂଗା ମୋଟରସାଇକେଲକୁ ଓ ତା' କେରିଏରକୁ ଦେଖୁଥାଏ)

ଯମୁନା ବସିଲେ ଆହୁରି ନରମ ହୋଇଯିବ ?

ସଂଜୟ ବସୁନ ।

ଗଂଗା ନାଇଁ ନାଇଁ ଯମୁନା, ବସ୍‌ନା ପଡ଼ିଯିବୁ ।

ଯମୁନା ଓ ହ ରହନା ।

ସଂଜୟ ଚାଲିଲେ ଆହୁରି ନରମ ଲାଗିବ ।

ଯମୁନା ଚଲାନା (ସଂଜୟ ଗଡ଼ ଜିଣିବା ଶୈଳରେ ଷ୍ଟାଟ୍ କରି ପଳାଏ)

ଗଂଗା (ବିସ୍ମୟରେ) ଯମୁନା ।

ଯମୁନା ମୁଁ ଆଗରେ ଅଛି, ତୁ ଆ ।

ଗଂଗା : (କେବଳ ତଟସ୍ଥ ହୋଇ ଚାହିଁଥାଏ ଯମୁନାର ଯିବା ବାଟକୁ । ଯମୁନା ଅଦୃଶ୍ୟ ହେବାପରେ ସାଇକେଲକୁ ଚାହେଁ । କେରିଅରକୁ ଦେଖେ । ତା'ର ନମନୀୟତାକୁ ପରଖେ, ଶେଷରେ ବିଧାମାରି ଭାଂଗି ଦେବାଭଳି କଚାଡ଼ିଦିଏ ।)

(ଅନ୍ଧାର)

## ପଞ୍ଚମ ଦୃଶ୍ୟ

ମୋଟର ସାଇକେଲଟା ରାସ୍ତାରେ ଯାଉ ଯାଉ ଖରାରେ ଅତିଷ୍ଠ ହୋଇ ଗୋଟେ ଗଛମୂଳରେ ଅଟକେ, ସେତେବେଳକୁ ସଂଜୟ ଯମୁନାକୁ ବିଭିନ୍ନ ଦୋକାନରୁ ଆଧୁନିକ ଡ୍ରେସ୍ ଅର୍‌ନାମେଣ୍ଟ୍‌ସ କିଣିଦେଇ ସଂପୂର୍ଣ୍ଣ ଆଧୁନିକା ଭାବରେ ସଜେଇଦେଇଥାଏ ।

ଯମୁନା — ଓଃ କି ଖରା : (ବିପରୀତ ଦିଗରୁ ଆସି ଏକ ସୁନ୍ଦର କାର ଅଟକେ)

ସଂଜୟ — ଏ ଗଛମୂଳରେ ଶୀତଳଛାଇ । ଆସ, କିଛି ସମୟ ଏ ଗଛମୂଳରେ ଅଟକିଯିବା ।

ମାନସ — (କାର୍ ଭିତରୁ) କାହିଁକି, ଏ କାର ଭିତରକୁ ଆସୁନ, ଛାଇ ତ ପାଇବ, ଏ.ସି. ଅଛି, ଆରାମରେ ବସିବ ।

ଯମୁନା — କାର୍‌ରେ ଏ.ସି. ଅଛି ?

ସଂଜୟ — ଆମକୁ ଆମ ଗଛଛାଇ ଭଲ ।

ମାନସ — (ହସି) ଗଛଛାଇ, ଏବେ ଅଛି ଏବେ ନାହିଁ । ତା'ଛଡ଼ା, ଗଛ ସିନା ଖରାରୁ ରକ୍ଷା କରିଦବ । ଆକାଶକୁ ଦେଖିଲାଣି, କେମିତି କଳାହାଣ୍ଡିଆ ମେଘ ଘୋଟିଗଲାଣି, ଥରେ ବର୍ଷିବାକୁ ଆରମ୍ଭକଲେ ନ ଭସେଇ ଛାଡ଼ିବନି । ଆଉ ଏ ଇଣ୍ଡିକା, ଖରାବର୍ଷା ଶୀତ କାକର, କାହାକୁ ଖାତିର୍ ନାହିଁ ।

ସଂଜୟ — ହେଲେ, ତମେ ତ ସମୁଦ୍ରଆଡ଼େ ଯାଉଛ, ଆମେ ସହର ଯିବୁ ।

ମାନସ — ସହର, ସେଠି ଅଛି କ'ଣ ? ଖାଲି ହୋ-ହଲ୍ଲା, କୋଳାହଳ, ଧୂଳିଧୂଆଁ ମିଶା ପବନ, ନର୍ଦ୍ଦମାର ପୂତିଗଂଧମୟ ପରିବେଶ - ଇସ୍ !

କି ବାଙ୍କେ ଜାଗା । ସମୁଦ୍ରକୂଳ, ଝାଉଁବଣ, ଦିଗ୍‌ବଳୟବ୍ୟାପୀ ଜଳପ୍ଲାବନ, ଉଚ୍ଚଉଚ୍ଚ ବାଲିପାହାଡ଼, ଆଃ କି ସୁନ୍ଦର ।

ଯମୁନା — ସେଠି ହୋହଲ୍ଲା ନାହିଁ ?

ମାନସ — ନିର୍ଜନତା - ସଂପୂର୍ଣ୍ଣ ନିର୍ଜନ ।

ଯମୁନା — ଧୂଳିଧୂଆଁମିଶା ପବନ ନାହିଁ ?

ମାନସ — ଜଳକଣାମିଶା ଥଣ୍ଡାପବନ ।

ଯମୁନା : ଆଉ ପୂତିଗଂଧମୟ ନର୍ଦ୍ଦମା ?

ମାନସ — ନା, ସେଠି ଖାଲି ପବିତ୍ର ଜଳ, ଗଂଗାପରି ।

ଯମୁନା — ଗଂଗାପରି ପବିତ୍ର ?

ମାନସ — ଆସ, (ଡୋର୍ ଖୋଲେ)

ସଂଜୟ — ନା ଯମୁନା, ଯାଅନା । ସେ ଅଚିହ୍ନାଲୋକ ।

ମାନସ — କାର୍‌ରେ ବସି ଏତେ ରାସ୍ତା ଯିବା ବାଟରେ ଚିହ୍ନା ହୋଇଯିବନି ? ଆସ ।

ଯମୁନା — ଆସ, ଦେଖାହେବ । (କାର୍‌ରେ ବସେ, କାର୍ ଷ୍ଟାଟ୍ ହୁଏ, ସଂଜୟ ସେମିତି କାର୍‌କୁ ଓ ନିଜ ଗାଡ଼ିକୁ ଦେଖେ । ଗଂଗା ପହଞ୍ଚେ, ଗଂଗାକୁ ହାତ ହଲେଇଦେଇ କାର୍ ଚାଲିଯାଏ)

ଗଂଗା — ମୋ ଯମୁନା ?

ସଂଜୟ — ଶାଗୁଣା ନେଇଗଲା - (ଗାଡ଼ି ଷ୍ଟାର୍ଟ୍ କରି ପଳାଏ)

ଗଂଗା — ଶାଗୁଣା.... (କାର୍‌କୁ ଦେଖେ, ସାଇକେଲ୍ ଚଢ଼େ, ଜୋରରେ ଚଳାଏ କାର୍ ସହିତ ପାରେନି । ପେଡେଲ ମାରି ଥକିପଡ଼େ । ତା' ଆଖିରେ ଭାସିଯାଏ କେତୋଟି ଦୃଶ୍ୟ)

(ଗୋଟିଏ ଦରୁଆନ୍ ଥିବା ଗେଟ୍ ନିକଟରେ ଗଂଗା ପହଞ୍ଚେ, ଦରୁଆନକୁ ଅନୁରୋଧ କରେ ଭିତରକୁ ଯିବାପାଇଁ ।)

ଦରୁଆନ୍ — ନା ନା, ତମେ ଭିତରକୁ ଯାଇପାରିବନି ।

| | |
|---|---|
| ଗଂଗା | ବାବୁ ଆଜ୍ଞା, ଭିତରେ ମୋ ଯମୁନା ଅଛି, ମୋତେ ଛାଡ଼ିଦିଅ । ତାକୁ ଥରେ ଦେଖାକରି ଚାଲିଯିବି । |
| ଦରୁଆନ୍ | ଯମୁନା ? ମାନେ ଯମୁନା ମାଡାମ୍ ? (ଯମୁନା ଆସେ, ଦୂରରୁ ଥାଇ କହେ) |
| ଯମୁନା | କ'ଣ ହୋଇଛି ? |
| ଦରୁଆନ୍ | ମାଡାମ୍, ଏ ଲୋକ ଜଣକ ଆପଣଙ୍କୁ ଖୋଜୁଛି । |
| ଯମୁନା | କିଏ ? |
| ଗଂଗା | ଯମୁନା, ମୁଁ ମୁଁ ... |
| ଯମୁନା | ତୁ ? ତୁ କିଏ ? |
| ଗଂଗା | ମୋତେ ଚିହ୍ନିପାରୁନୁ ? ମୁଁ ଗଂଗା, ଗଂଗା । |
| ଯମୁନା | ଗଂଗା ? କୋଉ ଗଂଗା ? ମୁଁ କୋଉ ଗଂଗାକୁ ଜାଣେନି । |
| ଗଂଗା | ତୁ... ତୁ.... । |
| ଦରୁଆନ୍ | ଯା ଯା ଭାଗ୍ । (ଠେଲି ଠେଲି ବାହାରକରିଦିଏ । ଭାବନା ଭାଂଗିଯାଏ । ଗଂଗାର ସାଇକେଲ ଝୁଣ୍ଟିପଡ଼େ । ଗୋଟେ ପୋଖରୀହୁଡ଼ାରେ । ସାମ୍ନାରେ ଥୁଣ୍ଟାଗଛଟିଏ । ଯମୁନା ଆଲୁରୁବାଲୁରୁ କେଶ ଓ ଅଯନ୍ ଚେହେରାରେ ବାସନ ମାଜି ପୋଖରୀଘାଟରୁ ଆସୁଥାଏ । (ସାମ୍ନାସାମ୍ନି ହୁଅନ୍ତି) |
| ଗଂଗା | ଯମୁନା... |
| ଯମୁନା | ଗଂଗାଭାଇ, (ହାତରୁ ବାସନ ଖସିପଡ଼ି ଗଡ଼ିଗଡ଼ିଯାଏ) ମୋ ଜୀବନ... |
| ଗଂଗା | ଆଉ ଚିନ୍ତା କରନା । ମୁଁ ଆସିଗଲିଣି - ଆ, ସାଂଗହୋଇ ଯିବା ସମୁଦ୍ର ଦେଖିବା..ଆଉ ସହର ଯିବାନି-ସେ ସହର ଭଲ ନୁହେଁ । |
| ଯମୁନା | ତୋ' ସାଇକେଲ ? ତା' କେରିଏର ? |
| ଗଂଗା | ହଁ ଲୋ ଯମୁନା, ମୁଁ ସେହିଦିନ ରାଗିଯାଇ ମୋ ସାଇକେଲରୁ କେରିଏରଟା ଖୋଲିପକେଇଛି..ତଥାପି...ତୁ କହିଲେ ଆଉଥରେ ଲଗେଇଦେବି । |

ଯମୁନା : ଲାଭ କ'ଣ ? ସମୁଦ୍ର ତ ଆଉ ବେଶି ବାଟ ନୁହେଁ । ତା'ଛଡ଼ା, ମୋ ଦେହଟାକୁ ଏମାନେ କ'ଣ ରଖିଛନ୍ତି ? ହଁ ଗଂଗାଭାଇ, ଦେଖି ତୋ ଯମୁନା ଦେହରେ କୁଡ଼କୁଡ଼ ଆବର୍ଜନା । ପୂତିଗଂଧମୟ ନର୍କ କୁଣ୍ଡରେ ପରିଣତ ହୋଇଯାଇଛି । ଏ ଦେହକୁ ନେଇ ମୁଁ ତୋର ପବିତ୍ର ଦେହରେ ମିଶେଇପାରିବିନି । ତୁ ଚାଲିଯା ଗଂଗାଭାଇ, ସମୁଦ୍ର ଆଉ ବେଶି ଦୂର ନୁହେଁ। ଯା ଚାଲିଯା...

ଗଂଗା : (ଯମୁନା ଉପରୁ ଦୃଷ୍ଟି ଫେରାଇ ସମୁଦ୍ରର ଉତ୍ତାଳ ତରଂଗକୁ ଭାବେ, ସାଇକେଲ ଚଢ଼େ । ଗୋଟିଏ ଆଳାପର ରାଗିଣୀରେ ଦିଗରୁ ଦିଗନ୍ତ, ସୀମାରୁ ସୀମାନ୍ତ ପାରିହୁଏ ।

ସୂତ୍ରଧର : ଯଦିଓ ଗଂଗା ସହିତ ଯମୁନାର ମିଳନ ବିଧିନିର୍ଦ୍ଦିଷ୍ଟ, ତଥାପି ଏ ଭୋଗବାଦୀ ଦୁନିଆରେ ବସ୍ତୁସର୍ବସ୍ୱ ମଣିଷ ସ୍ୱର୍ଗୀୟ ମଧୁ ଛାଡ଼ି ନର୍କର ସୁରାପାନରେ ମଗ୍ନ ।

(ସାଇକେଲ ଝୁଣ୍ଟିପଡ଼େ – ଶ୍ମଶାନର ଉଚ୍ଚ ପିଣ୍ଡି ଉପରେ ଗଡ଼ିପଡ଼େ – ଗଂଗାର ସାଇକେଲ କଚାଡ଼ି ହୋଇପଡ଼େ ଅନତିଦୂରରେ । ଭାସିଆସେ ସେହି ଚିରନ୍ତନୀ ସଂଗୀତ ।

ଆସିଛି ଏକା, ଯିବି ମୁଁ ଏକା
ସାଥୀର ଲୋଡ଼ା ନାହିଁ ।
ସାଥୀ ତ ସିଏ ଜୀବନ ଦିଏ
ଜୀବନ ସାଥୀ ପାଇଁ ।
ଶେଷ ହୁଏ ଆରମ୍ଭର ଲକ୍ଷ୍ୟ ନେଇ । ....



୧୯୮୮ ଜୁଲାଇ 'ଝଙ୍କାର'ରେ ପ୍ରକାଶିତ
'ସମ୍ପର୍କ'ର ଚରିତ୍ରମାନେ

- ସୂତ୍ରଧର
- କେଳା (ପୁରୁଷ)
- ସର୍ପ (ନାରୀ)
- ପୁରୁଷ (ପୁତ୍ର)

# ସମ୍ପର୍କ

ବିସ୍ତାରିତ ସମୁଦ୍ର । ସେଇଠୁ ଏକ ଲମ୍ବାରାସ୍ତା ଲମ୍ବିଆସିଛି ସୀମାନ୍ତ ପର୍ଯ୍ୟନ୍ତ । ମଂଚର ଦୁଇକୋଣରେ ଅର୍ଥାତ୍ ରାସ୍ତାର ଦୁଇପାର୍ଶ୍ୱରେ ଦୁଇଟି ଅଳ୍ପଉଚ୍ଚ ମଣ୍ଡପ । ରାସ୍ତାର ଶେଷ (ଆରମ୍ଭ ବି କୁହାଯାଇପାରେ) ପ୍ରାନ୍ତରେ ଏକ ଭଂଗା ନୌକାରେ ସୂତ୍ରଧର ନାମକ ପ୍ରାଣୀଟିଏ ଆବିର୍ଭୂତ ହେଲାବେଳକୁ ସମ୍ମୁଖ ମଣ୍ଡପରେ ସ୍ୱଳ୍ପାଲୋକରେ ଫ୍ରିଜ୍ ଥାଆନ୍ତି କେଳାପୁରୁଷ ଓ ସର୍ପନନ୍ଦିନୀ, କିନ୍ତୁ ସୂତ୍ରଧରଙ୍କ ସଂଳାପରେ ସେମାନେ ଏକ ବୃତ୍ତାକାର ପରିଧିରେ ଘୂରିବୁଲିଲେ–

ସୂତ୍ରଧର (ଅଳ୍ପ ହସି) ଏ ଏକ ସଂପର୍କର ସଂକେତ ମାତ୍ର ।
ଏ ସମ୍ପର୍କ କେବଳ ରକ୍ତ ଓ ମାଂସର ।
ଆମ୍ଭାକୁ ଏଠି କେହି ଦେଖିନି କି ଚିହ୍ନିନି ।
ଆମ୍ଭା ଏକ ମୃତ-ଶବ
ସ୍ୱାର୍ଥପାଇଁ ସଂପର୍କ ଏଠି ବେଶ୍ ଲୋକଦେଖାଣିଆ ।
ନଦୀ ମିଶେ ସମୁଦ୍ରରେ ।
ନାରୀ ମିଶେ ପୌରୁଷରେ
ପୁରୁଷ କହେ ନାରୀ ଏକ ସର୍ପ
ଆଉ ନାରୀ
ପୁରୁଷକୁ କେଳାଭାବରେ ସଜେଇଦିଏ ।
ଏଠି ସର୍ପ ହାତରେ ଡମ୍ବରୁ

ପୁରୁଷ ପାଦରେ ଘୁଙ୍ଗୁରୁ

କିନ୍ତୁ

ପୁରୁଷର ଡମ୍ବରୁ ତାଳରେ ନାରୀ ଏଠି ନାଚେନା

କେବଳ ପଦ୍ମତୋଳାକୁ ଉପଭୋଗ କରେ ।

ସଂପର୍କର ସଂଜ୍ଞା କ'ଣ ଏଭଯା ?

(ଏ ପ୍ରଶ୍ନ ବାରମ୍ୱାର ପ୍ରତିଧ୍ୱନିତ ହୁଏ)

(ସୂତ୍ରଧରଙ୍କ ଉପରୁ ଆଲୋକ କମିଯାଇ ଉଭୟ ଚରିତ୍ର ଉପରେ ଆଲୋକ କେନ୍ଦ୍ରୀଭୂତ ହୁଅନ୍ତେ)

ପୁରୁଷ (କେଳା) ମୁଁ ପୁରୁଷ..କେଳାପୁରୁଷ

ନାରୀ ମୁଁ ସର୍ପ ରାଜନନ୍ଦିନୀ

ପୁରୁଷ ମୋ ହାତରେ ଡମ୍ବରୁ

ପାଦରେ ଘୁଙ୍ଗୁରୁ

କଣ୍ଠରେ ପଦ୍ମତୋଳା ଓ ପେଡ଼ିରେ ଗଦ-ମହୌଷଧି

ସର୍ପ ମୋର ଅଂଗରେ ସୌନ୍ଦର୍ଯ୍ୟ

ଆଖିରେ କଟାକ୍ଷ

ଓଠରେ ମଧୁ

ଗନ୍ଧଭରା ଜୁଡାରେ ମଣିମୟ ମୁକୁଟ ।

(ଏକ ଛନ୍ଦାୟିତ ନାରୀ-ମୁଦ୍ରା ତୋଳନ୍ତେ)

ପୁରୁଷ ଆଶ୍ଚର୍ଯ୍ୟ ! ସର୍ପର ପୁଣି ନାରୀବେଶ ?

ନାରୀ ମୁଁ ବହୁରୂପୀ ।

ମୋର ଡେଣା ଅଛି, ଫଣା ଅଛି, ପଣତ ବି ଅଛି ।

ପୁରୁଷ କିନ୍ତୁ ମୋ ଗର୍ବ, କେବଳ ପୌରୁଷକୁ ନେଇ ।

ନାରୀ ମୋର ଦର୍ପ, ସୌନ୍ଦର୍ଯ୍ୟକୁ ନେଇ ।

ପୁରୁଷ ପୌରୁଷ-ପ୍ଲାବନରେ ସୌନ୍ଦର୍ଯ୍ୟର ଦର୍ପବନ୍ଧ ଭାଂଗିଯାଏ ।

| | |
|---|---|
| ନାରୀ | ମୋ ହୃଦୟ ଏକ ପାନ୍ଥଶାଳା । |
| ପୁରୁଷ | ମୋ ହୃଦୟ ଏକ ନିଷିଦ୍ଧ ଇଲାକା । |
| ନାରୀ | ଏଠି ଅଛି ଛଳନା, ଅଭିନୟ, ପ୍ରତାରଣା ଓ ପ୍ରବଞ୍ଚନାର ଅନେକ ବାଲିଘର । |
| ପୁରୁଷ | ଏହା ଏକ ଶୂନ୍ୟ ପ୍ରାନ୍ତର<br>ଏଠାରେ ମନ୍ଦିର ତୋଳାଯାଇପାରେ, ଉଦ୍ୟାନ ବି ତୋଳାଯାଇପାରେ<br>ଆଉ ଆବଶ୍ୟକ ହେଲେ<br>ଏକ ଆଗ୍ନେୟଗିରି ବି ମୁଣ୍ଡଟେକିପାରେ । |
| ନାରୀ | ମୁଁ ତୁମକୁ ଘୃଣାକରେ (ମୁହଁ ବୁଲାଇ - ଫ୍ରିଜ୍) |
| ପୁରୁଷ | ମୁଁ କ'ଣ ଭଲପାଏ ? (ମୁହଁ ବୁଲାଇ - ଫ୍ରିଜ୍) |
| ସୂତ୍ରଧର | (ଆବିର୍ଭାବ) ନା, ସୃଷ୍ଟିର ସାମ୍ବିଧାନିକ ପରିଧି ଉପରେ ଘୂରିବାକୁ ତୁମେ ବାଧ୍ୟ, କାରଣ ତୁମର ଜନ୍ମ ପ୍ରକୃତିର ପତାକା ତଳେ । ତେଣୁ ସୃଷ୍ଟିର ବୀଜମନ୍ତ୍ର ଜପିବାକୁ ତୁମେ ବାଧ୍ୟ । |
| ପୁରୁଷ | ମୋର ପୌରୁଷ ଅଛି । |
| ନାରୀ | ମୋର ସୌନ୍ଦର୍ଯ୍ୟ ଅଛି । |
| ସୂତ୍ରଧର | ଅବଶ୍ୟ ।<br>କିନ୍ତୁ ଜୀବଜଗତର ସାମ୍ବିଧାନିକ ଧାରା ଅନୁସାରେ ପୌରୁଷର ନାଲିଆଖି ଆଗରେ ପ୍ରକୃତିର ମସ୍ତକ ଅବନତ ହୁଏ ଏବଂ ସୌନ୍ଦର୍ଯ୍ୟ-ଶାୟକର ପ୍ରଚଣ୍ଡ ଆଘାତରେ ପୌରୁଷର ଗାମ୍ଭୀର୍ଯ୍ୟ ମଧ୍ୟ ପରାସ୍ତ ହୁଏ । |
| କେଳା ଓ ସର୍ପ | : ବାସ୍ତବିକ ମୁଁ ଅପରାଧୀ<br>ମୁଁ କ୍ଷମା ଚାହେ । |
| ସୂତ୍ରଧର | ଅପରାଧ ଅବଶ୍ୟ କ୍ଷମଣୀୟ (ଅନ୍ତର୍ହିତ ହେଲେ) |
| ସର୍ପ | ହେ କେଳାପୁରୁଷ !<br>ତୁମ ପୌରୁଷର ଡମ୍ବରୁ ନାଦରେ ମୁଁ ମୁଗ୍ଧ ହେଲି । |

ତୁମ ପଦ୍ମତୋଳାରେ ମୋ ଦର୍ପ ଚୂର୍ଣ୍ଣ ହେଲା ।

ତେଣୁ ଆଜିଠାରୁ ମୁଁ ତୁମ ନିକଟରେ ବାଧ ରହିଲି ।

କେଳା ହେ ନାଗରାଜନନ୍ଦିନୀ ।

ତୁମ ସୌନ୍ଦର୍ଯ୍ୟଦର୍ପଣରେ ମୋ ପ୍ରତିବିମ୍ବ ଦେଖି ପ୍ରୀତ ହେଲି

ତୁମକୁ ନେଇ ମୋର ଅନେକ ସ୍ୱପ୍ନ ।

ସର୍ପ ତୁମ ଇଚ୍ଛା ପ୍ରକାଶ କର, ପୁରୁଷ ।

କେଳା ଏହି ଦେଖ, ଏ ସୁନ୍ଦର ସୁସଜ୍ଜିତ ପେଡ଼ିଟିଏ

ଆସ, ଏ ସୁକୋମଳ ଶଯ୍ୟାରେ ଶୟନ କରି

ମୋ ରଚିତ ସ୍ୱପ୍ନକୁ ଉପଭୋଗ କରିବ

ଆଉ ମୁଁ

ସେହି ପେଡ଼ିଟିକୁ ମୁଣ୍ଡରେ ବୋହି, ସର୍ପ-ପୋଷକର ଗର୍ବ ଧରି

ସାରା ବିଶ୍ୱରେ ଅନେକ ନୃତ୍ୟଗୀତ ପ୍ରଦର୍ଶନ କରିବି ।

ସର୍ପ ସତରେ, ସେ ନିବୁଜ ପେଡ଼ିଟି କି ସୁନ୍ଦର ।

ଏ ଦୁଙ୍କା ଆଚ୍ଛାଦିତ ସର୍ପ ମନ୍ଦିରଠାରୁ ତାହା କେତେ ସୁକୋମଳ ।

କେଳା (ପେଡ଼ି ଦେଖାଇ) ଆସ

ସର୍ପ କିନ୍ତୁ... ?

କେଳା ଭୟ କରୁଛ ?

ସର୍ପ ଏ ଶ୍ୱେତ ସୀମନ୍ତରେ ତୁମର ସେ ପେଡ଼ି ମଧ୍ୟକୁ ଯିବା..

କେଳା ଦୋଷାବହ ।

ସର୍ପ ମୋତେ ହୁଏତ ନଷ୍ଟଚରିତ୍ରର କଳା ପିନ୍ଧି ପସ୍ତେଇବାକୁ ପଡ଼ିପାରେ ।

କେଳା : ତା'ହେଲେ କ'ଣ ଫେରିଯିବି ?

ସର୍ପ ନା, ଏ ସମାଜ ପାଇଁ ମୁଁ ସ୍ୱୟଂବରା ସାଜିବି ।

କେଳା ମୁଁ କିନ୍ତୁ ଶିବଧନୁ ଭାଂଗିପାରିବିନି କି ସେ ଘୂର୍ଣ୍ଣାୟମାନ ମତ୍ସ୍ୟର ଚକ୍ଷୁଭେଦ କରିପାରିବିନି ।

| | |
|---|---|
| ସର୍ପ | ତଥାପି ତୁମକୁ ସ୍ୱୟଂବରର ସମ୍ମୁଖୀନ ହେବାକୁ ପଡ଼ିବ । |
| କେଳା | ନା, କାରଣ ମୁଁ ଏକ ଦୁର୍ଲ୍ଲଭ ପୁରୁଷ । |
| ସର୍ପ | ମୋ ରୂପ କ'ଣ କଦର୍ଯ୍ୟ ? |
| କେଳା | ମୋ ପାଇଁ ଅନେକ ରୂପସୀ ଧାଡ଼ିବାନ୍ଧିଛନ୍ତି । |
| ସର୍ପ | (ଅଟ୍ଟହସି) ଦେଖିପାରୁଛ, ମୋ ମସ୍ତକରେ ଖଚିତ ଉଜ୍ଜ୍ୱଳ ମଣିକୁ ? |
| କେଳା | (ମଣିଦର୍ଶନେ ମୋହଗ୍ରସ୍ତ ହେଲେ) କି ଲୋଭନୀୟ ତୁମ ମସ୍ତକର ମଣି ! |
| ସର୍ପ | ମୂଲ୍ୟବାନ ମଧ୍ୟ । |
| କେଳା | ମୋତେ ସେ ମଣିଟିକୁ ଦେଇପାରିବ ? |
| ସର୍ପ | ଏ ମଣିର ଅନେକ ବିଶେଷତ୍ୱ ଅଛି<br>ଯାହା ଚାହିଁଲେ ତାହା ମିଳିବ । |
| କେଳା | ମୁଁ ରୂପ, ରସ, ଗନ୍ଧ, ଛନ୍ଦ, କିଛି ଚାହେଁନା<br>କେବଳ ସେ ମଣିଟି ବ୍ୟତୀତ । |
| ସର୍ପ | କିନ୍ତୁ ମଣି ବିନିମୟରେ -<br>ମୋ ପାଇଁ ସଂଗ୍ରହ କର ଟୋପାଏ ସିନ୍ଦୂର ଦି'ପଟ ଶଂଖା |
| କେଳା | ସିନ୍ଦୂର... ? ଶଂଖା... ? ଏଇଟା ଯେ ଘୋର ଅରଣ୍ୟ । |
| ସର୍ପ | ତୁମ ଧମନୀର ଅଭ୍ୟନ୍ତର ଖୁବ୍ ଲାଲ୍<br>ଆଉ ବାହୁର ବଳୟ ଖୁବ୍ ଶକ୍ତ । |
| କେଳା | (ଖୁସିରେ) ମୁଁ ସମ୍ମତ । |
| ସର୍ପ | ମୁଁ ପ୍ରୀତ ହେଲି । |
| କେଳା | ଏହି ଦେଖ, ତୁମ ସୀମନ୍ତକୁ ଲାଲ୍ କରିଦେଲି । |
| ସର୍ପ | ମୋ ଜୀବନ ଧନ୍ୟ ହେଲା, ମୁଁ ସୀମନ୍ତିନୀ । |
| କେଳା | ମୁଁ ବିବାହିତ । |
| ସର୍ପ | ଆସ, ବିବାହର ସର୍ତ୍ତ ପଢ଼ିନେବା । |

| | |
|---|---|
| କେଳା | ମୁଁ ଯେ ଶୂନ୍ୟହସ୍ତ...ବେକାର |
| ସର୍ପ | ମୋ ମଥାରେ ମଣି ଅଛି । |
| କେଳା | ସେ ମଣିତଳେ ଆର୍ଥିକ ଆଶ୍ରୟ ପାଇବି ତ ? |
| ସର୍ପ | (ହସି)ଏବେ କୁହ, ମୋତେ ସୁଖରେ ରଖିପାରିବ ? |
| କେଳା | ମୋତେ ସୁଖ ଦେଇପାରିବ ? |
| ସର୍ପ | ମୁଁ ନାଚ ଜାଣେ, କିନ୍ତୁ ନାଚିପାରିବିନି । |
| କେଳା | ମୁଁ ନାଚିବି । |
| ସର୍ପ | ମୁଁ ଗୀତ ଶିଖିଛି, କିନ୍ତୁ ଗାଇପାରିବିନି । |
| କେଳା | ମୁଁ ଗାଇବି । |
| ସର୍ପ | ମୁଁ ଚାହେ ଅନେକ ସ୍ୱପ୍ନ...ଅନେକ ସୁଖ । |
| କେଳା | ତୁମର ଯାବତୀୟ ଗରଳ ପିଇ |
| | ତୁମ ଭାଗ୍ୟରେଖାରେ ଲେଖିଦେବି ଅସୁମାରି ସୁଖସ୍ୱପ୍ନ |
| ସର୍ପ | ଆଉ ଦେଖ, ଏ ମୋର ଅଧର |
| କେଳା | ଖୁବ୍ ରଂଗମୟ ମଧୁମୟ |
| ସର୍ପ | ଆଉ ସେ ଅଧର ଯୁଗ୍ମର ସନ୍ଧିସ୍ଥଳରେ ? |
| କେଳା | ସତେ ଅବା ଖଣ୍ଡ ଖଣ୍ଡ ହୀରା |
| ସର୍ପ | ନା, ସେ ମୋର ଦାନ୍ତ ଏବଂ ବିଷଦାନ୍ତ |
| କେଳା | ବିଷଦାନ୍ତ ? |
| ସର୍ପ | ମଣିର ପ୍ରଭାବରେ ସେ ଆହୁରି ତୀବ୍ର ହୋଇଉଠିଛି । |
| କେଳା | ମୋ ପେଡ଼ିରେ ଗଦ ଅଛି । |
| | ମୁଁ ସେ ବିଷଦାନ୍ତକୁ ଭାଂଗିଦେବି । |
| ସର୍ପ | (ଖୁବ୍ ଜୋର୍‌ରେ ହସିଲା ଏବଂ ସେ ହସରେ କେଳାପୁରୁଷ ସତେ ଯେମିତି ଅବଶ ହୋଇଯାଉଥିଲା) |

ହେ କେଳା-ପୁରୁଷ । ପୁରାଣଯୁଗର ପୌରୁଷ ତୁମେ ହରାଇବସିଛ
ବୈଦୁର୍ଯ୍ୟଖଚିତ ମଣି ମୋହରେ ତୁମ ମନ୍ତ୍ରଶକ୍ତି ଲୁପ୍ତ ହୋଇଛି ।

କେଳା	ବାସ୍ତବିକ ଗଦ ଅଛି, କିନ୍ତୁ ମନ୍ତ୍ର ନାହିଁ ।

ସର୍ପ	ବେଶ୍, ଏବେ କୁହ, ମୋର ବିଷଦାନ୍ତ ଭାଂଗିଦେବ ?

କେଳା	ନା ନା, ତୁମେ ଯେ କୁତ୍ସିତ ହୋଇଯିବ ।

ସର୍ପ	ତୁମେ ସଦାସର୍ବଦା ଡମ୍ବରୁ ବଜେଇ ନାଚିବ ।

କେଳା	ତୁମେ କେବଳ ଫଣା ଟେକି
ମୋ ମୁଣ୍ଡ ଉପରେ ଥାଇ ଉପଭୋଗ କରିବ ।

ସର୍ପ	ସର୍ତ୍ତ ରହିଲା, ନାଚ ବନ୍ଦ୍ ହେଲେ ?

କେଳା	ଡାଇଭୋର୍ସ୍ କରି ଚାଲିଯିବ।

ସର୍ପ	ତା' ପୂର୍ବରୁ ବିଷଦାନ୍ତର ଦଂଶନକୁ ସହିବାକୁ ପଡ଼ିବ ।

କେଳା	କିନ୍ତୁ ମଣି ମିଳିବାରେ ବ୍ୟତିକ୍ରମ ହେଲେ ?

ସର୍ପ	ତୁମର ସେ ପେଡ଼ି ଭିତରୁ ମୋତେ ନିକାଳିଦେବ ।

କେଳା	ନା, ସେ ପେଡ଼ି ଭିତରୁ କିରୋସିନି ଢାଳି ପୋଡ଼ିଦେବି ।

ସର୍ପ	ଆସ ଜୀବନର ବଂଧନକୁ ମାନିନେବା ।

କେଳା	ଜୀବନର ରାଜଦାଣ୍ଡ ଉପରେ ପାଦ ଦେବା ।

ଉଭୟ	ଆମେ ଏ ସଂସାରରେ ବାନ୍ଧିହେଲୁ ! (ଫ୍ରିଜ୍)

ସୂତ୍ରଧର	ଏମାନେ ଏବେ ରାଜଦାଣ୍ଡକୁ ଯିବାପାଇଁ ପ୍ରସ୍ତୁତ ।

ସର୍ପ	କାହିଁକି ?

କେଳା	ମୁଁ ନାଚିବି, ଗାଇବି ।

ସର୍ପ	ମୁଁ କେବଳ ଉପଭୋଗ କରିବି ।

ସୂତ୍ରଧର	ଆଉ ମୁଁ ଏବଂ ସେମାନେ କେବଳ ପଇସା ଫିଙ୍ଗିବେ ।
ଆବଶ୍ୟକ ହେଲେ ତୁମ ରୂପରେଖ ଦେଖି ନାଚିଯିବେ
ଏବଂ ଫଣା ଦେଖି ହୁଏତ ଶଙ୍କିଯିବେ ।

| | |
|---|---|
| ସର୍ପ | (ଖୁସିରେ) ମୁଁ ତା'ହେଲେ ଟିକିଏ ଉଡ଼ିଆସେ । |
| କେଳା | ଉଡ଼ିବ ? |
| ସର୍ପ | ହଁ, ଦେଖୁନା, ମୋର ଏ ଚିତ୍ରିତ ଡେଣା |
| | ତୁମ ରକ୍ତଛିଟା ପଡ଼ି ଆହୁରି ସତେଜ ହୋଇଉଠିଛି । |
| ସୂତ୍ରଧର | ତୁମେ ଯେ ବିବାହିତା । |
| ସର୍ପ | ପେଡ଼ି ଭିତରକୁ ଯିବା ପୂର୍ବରୁ ଗୋଟିଏ ସୁଯୋଗ ଦିଅ । |
| କେଳା | ତୁମେ ଯେ ମୋର ସ୍ତ୍ରୀ ଭୂମିକାରେ |
| ସର୍ପ | ମୁଁ ଥରେ ଆକାଶଟାକୁ ଦେଖିନିଏ । |
| କେଳା | ନା, ଯାଇପାରିବନି । |
| ସର୍ପ | ବିଷଦାନ୍ତ କଥା ମନେନାହିଁ ? |
| କେଳା | ମୋ ହାତରେ ଗଦ ଅଛି । |
| ସର୍ପ | ମଥାମଣିର ମୂଲ୍ୟ କ'ଣ ଭୁଲିଗଲ ? |
| କେଳା | ବାସ୍ତବିକ ସେ ମୂଲ୍ୟବାନ ମଣିକୁ- |
| | ପୌରୁଷ ପ୍ରଲୋଭନରେ ଭୁଲିଯାଇଥିଲି । |
| ସୂତ୍ରଧର | (ହସିଲେ) ନେତ୍ର ମୋର ଧନ୍ୟ ହେଲା (ଅଂଧାରକୁ ଚାଲିଗଲେ) |
| କେଳା | ତୁମେ ସ୍ୱଚ୍ଛନ୍ଦରେ ଉଡ଼ିପାର ପ୍ରିୟେ ? |
| ସର୍ପ | ବେଶ୍, ତୁମେ ଅଂଧଭୂମିକାରେ ଅଭିନୟ କର |
| | ମୁଁ ଡେଣା ଝାଡ଼ି ଉଡ଼ିଆସେ । |
| କେଳା | କିନ୍ତୁ ବିଳମ୍ବ ମୋ ପକ୍ଷେ ହୁଏତ ଅସହ୍ୟ ହୋଇପାରେ । |
| ସର୍ପ | ଏଇ ମଣିଟି ତୁମ ନିକଟରେ ରହିଲା |
| | ମୋର ବିଳମ୍ବିତ ମୁହୂର୍ତ୍ତରେ ତୁମକୁ ସାନ୍ତ୍ୱନା ଦେବ । |
| କେଳା | (ମଣିଟିକୁ ଖୁସିରେ ଦେଖି) |
| | ଏଥର ତୁମେ ଆନନ୍ଦରେ ଉଡ଼ିଯାଅ ସର୍ପନନ୍ଦିନୀ । |
| | (ସର୍ପ ଅତି ଆନନ୍ଦରେ ଡେଣା ଝାଡ଼ି ଉଡ଼ିଗଲା । କେଳାପୁରୁଷ ମଣିଟି |

ଧରି ଦେଖିବାରେ ବ୍ୟସ୍ତ । ଏହି ସମୟରେ ସୂତ୍ରଧର ହସିଲେ ଉପହାସକରି)

କେଳା (ମଣିଟିକୁ ବକ୍ଷରେ ଚାପିଧରି)

ଏହି ମଣି ମୋ ପୌରୁଷର ମୂଲ୍ୟ

କିନ୍ତୁ ସର୍ପ ବିନା କେଳାଜୀବନ ଯେ ଅର୍ଥହୀନ

ଆସ, ଆସ ନାଗକନ୍ୟା ।

ତୁମ ବିନା ପୌରୁଷ ଯେ ବ୍ୟର୍ଥ ହେଲା

(ଡମ୍ବରୁ ବଜାଇ ପଦ୍ମତୋଳା ବୋଲି ନାଚନ୍ତେ

କିଛି ସମୟ ପରେ ସର୍ପ ଏକ ନବବଧୂର ଯାବତୀୟ

ଭୂଷଣ ନେଇ ଆକାଶରୁ ଅବତରଣ କଲା)

କେଳା ହେ ସର୍ପନନ୍ଦିନୀ ! ତୁମର ଏ ବେଶ କାହିଁକି ?

ସର୍ପ (ବ୍ୟସ୍ତରେ) ଏଡ଼ିକି ଆକାଶରେ ଏତେ ପୁରୁଷ !

କେଳା ତୁମର କିଛି ହୋଇନି ତ ?

ସର୍ପ କାହା ହାତରେ ଜାଲ, କାହା ହାତରେ ଫାସ, କାହା ହାତରେ ଗଦ, କିଏ ଗାଉଛି ପଦ୍ମତୋଳା, କିଏ ବାଉଛି ମୋହନବଂଶୀ ।

ମୁଁ ଅଣନିଃଶ୍ୱାସୀ ହୋଇଗଲି ।

କେଳା କଳଙ୍କ କଳାରେ ବୁଡ଼ିଯାଇନ ତ ?

ସର୍ପ ମୁଁ ପରା ଅତ୍ୟାଧୁନିକା ସତୀ

ମୋତେ କ'ଣ କଳଙ୍କ ସ୍ପର୍ଶ କରିପାରିବ ?

ଅତି ସନ୍ତର୍ପଣରେ ମୁଁ ନିଜକୁ ନବବଧୂର ଛଦ୍ମବେଶ ଭିତରେ

ଆତ୍ମଗୋପନ କରି ଉଡ଼ିଆସିଲି ।

କେଳା ଚାଲ, ଖୁବ୍‌ଶୀଘ୍ର ଏଠୁ ଚାଲିଯିବା

ଏ ସ୍ଥାନ ଆଉ ଆମ ପାଇଁ ନିରାପଦ ନୁହେଁ ।

ସର୍ପ ମୁଁ ବି ବ୍ୟସ୍ତ ହୋଇ ପଡ଼ିଛି ।

କେଳା	ଆସ, ଏ ପେଡ଼ି ଭିତରେ ନିରାପଦରେ ଶୋଇପଡ଼ ।
ମୁଁ ତୁମକୁ ନେଇଯିବି ଦୂର ଦିଗ୍‌ବଳୟ ପର୍ଯ୍ୟନ୍ତ
ଯେଉଁଠି ଏ ସ୍ୱାର୍ଥପର ପୁରୁଷର ଛାଇ ସୁଦ୍ଧା ନଥିବ ।

ସର୍ପ	କାହିଁକି ?

କେଳା	ଦିଗ୍‌ବଳୟରେ ମୃତ୍ୟୁ ଅପେକ୍ଷମାଣ

ସର୍ପ	ମୃତ୍ୟୁକୁ କ'ଣ ପୁରୁଷ ଭୟକରେ !

କେଳା	: ଖୁବ୍ ଭୟକରେ ।

ସର୍ପ	କିନ୍ତୁ ମୋତେ ନେଇ ତୁମେ ନାଚିପାରିବ ତ ?

କେଳା	(ହସିଲେ) ମୁଁ ପରା ପୁରୁଷ,
ତୁମ ରୂପର ପସରା ମୁଣ୍ଡେଇ ମୁଁ ଖୁବ୍ ନାଚିପାରେ
ତୁମ ଯୌବନର ଛନ୍ଦପତରେ ମୁଁ ବେଶ୍ ଗାଇପାରେ
ଆସ, ଦେଖ, ଜୀବନ-ସ୍ୱପ୍ନକୁ ଥରେ ଚାଖିନିଅ,
(ସର୍ପ ନାଚିନାଚି ପେଡ଼ିରେ ପଶନ୍ତେ କେଳା ପେଡ଼ିଟିକୁ ମୁଣ୍ଡରେ ରଖି ଡମ୍ବରୁ ବଜାଇ ବୀରଦର୍ପରେ ଘୋଷଣା କଲା)

କେଳା	ହେ ଜଗତବାସୀ ସର୍ବଜନ !
କର୍ଣ୍ଣେ ଶୁଣ ଘୋଷଣା ମୋହର
ମୁଁ ପୁରୁଷପୁଙ୍ଗବ
ବିଷଧର ସର୍ପକୁ ବୋହି-
ଏ ସମାଜର ଛାତି ଉପରେ ନାଚିବାର ଶକ୍ତି ତଥା ଅଧିକାରକୁ
ସାବ୍ୟସ୍ତ କରିବାକୁ ଯାଉଛି ।
ମୁଁ ନାଚି ନାଚି, ଗାଇ ଗାଇ, ଏ ରାଜଦାଣ୍ଡ ପ୍ରକମ୍ପିତ କରିବି
(ନାଚିବା ଭଂଗୀରେ ଫ୍ରିଜ୍ ହୁଅନ୍ତେ ସୂତ୍ରଧର ଆବିର୍ଭୂତ ହେଲେ)

ସୂତ୍ରଧର	ଦେଖ ଦେଖ ବିଶ୍ୱଜନ !
ସେ ଏକ କେଳା-ପୁରୁଷ

କାଳସର୍ପକୁ ମୁଣ୍ଡରେ ଧରି

ଏ ପ୍ରଶସ୍ତ ରାଜଦାଣ୍ଡରେ ନାଚିବାର ଦୁଃସାହସ କରିଛି ।

ତା' ଅଧର ମଦରେ ମତୁଆଲା ହୋଇ ପଦ୍ମତୋଳା ବୋଲୁଛି ।

ତା' ରୂପର ମୋହନ ମନ୍ତ୍ରରେ ଅବଶ ହୋଇ ନାଚିଚାଲିଛି ।

ହାୟରେ ଦୁନିଆ ।

ସର୍ପର ଇଂଗିତରେ କେଳା ଆଜି ନାଚିଚାଲେ-

ଜୀବନକୁ ବିପନ୍ନ କରି । (ସ୍ମିତ ହସରେ ଫ୍ରିଜ୍ ଏବଂ କେଳା ନାଚିଗଲା ଆଗକୁ ଆଗକୁ... ।)

ସର୍ପ — ଏ ! ଦେଖନା, ଏ ରାଜଦାଣ୍ଡ ସନ୍ନିକଟରେ ପ୍ରଖ୍ୟାତ ଶାଢ଼ିହାଉସ୍ ରଂଗିନ, ମନମତାଣିଆ ଶାଢ଼ିରେ ଭରପୂର ଏମ୍ପୋରିୟମ୍, ପ୍ରିୟତମ ! ଏଇଠି କିଛି ଅଭିନୟ ଦେଖାଅ ।

କେଳା — ପ୍ରିୟେ ! ଏଇ ନିଅ ! ତୁମେ ମନଭରି ଡମ୍ବରୁ ବଜାଅ

ମୁଁ ହାଡ଼ଭାଂଗି ଅଭିନୟ କରେ ।

ସର୍ପ — (ଖୁସିରେ) ମୁଁ...ମୁଁ ଡମ୍ବରୁ ବଜାଇବି ?

କେଳା — ତୁମ ହାତରେ ଡମ୍ବରୁ ରହିଲେ ମୁଁ ନିର୍ବିଘ୍ନରେ ନାଚିପାରିବି ।

ସର୍ପ — ତେବେ ଦିଅ ପ୍ରିୟତମ ! (ଡମ୍ବରୁ ନେଲେ)

ସୂତ୍ରଧର — (ହସି) ସର୍ପ ହାତରେ ଡମ୍ବରୁ ...ବିଚରା କେଳା....

ସର୍ପ — (ଡମ୍ବରୁ ବଜାଇ) ନାଚ ପୁରୁଷ ! ନାଚ.. ।

କେଳା — (ଶାଢ଼ି ହାଉସକୁ) ହେ ମହାଜନ ! ଦେଖ

ମୁଁ ଏବେ ରିକ୍ସାବାଲା ଭୂମିକାରେ.. (ଅଭିନୟ)

ମୁଁ ଏବେ ଗାଡ଼ିବାଲା ଭୂମିକାରେ (ସେମିତି ଅଭିନୟ)

ବଜାଅ ପ୍ରିୟେ !

ମୁଁ ଆହୁରି ଅପୂର୍ବ ଭଂଗିମା ତୋଳି

ଏ ରାଜଦାଣ୍ଡକୁ ମୁଖରିତ କରିବି ।

ସର୍ପ (ହସି ହସି ଗଡ଼ିଯାଉଥାଏ)

ସୂତ୍ରଧର ହେ ପୁରୁଷ ! ମୁଁ ତୁମ୍ଭ ଅଭିନୟରେ ମୁଗ୍ଧ ହେଲି
ଏବଂ ତୁମ ମସ୍ତକମଣ୍ଡିତ ସ୍ୱପ୍ନ ସକାଶେ
ଏ ବହୁମୂଲ୍ୟ ବସନ ଉପହାର ଦେଲି ।

କେଳା ବସନ ?

ସର୍ପ (ଆଗ୍ରହରେ) ତା' ହାତ ମୋର ଅଂଗବାସ ।

କେଳା ଆଉ ମୁଁ ?

ସର୍ପ ପୌରୁଷକୁ ଆବୃତ କରି ରଖିବାର ଆବଶ୍ୟକତା ନାହିଁ ।

କେଳା ବେଶ୍, ମୋର ଏ ପ୍ରଥମ ପରିଶ୍ରମର ମୂଲ୍ୟକୁ
ତୁମେ ତୁମ କମନୀୟ ଅଂଗରେ ସଜେଇଦିଅ ।
ସେ ବସନର ନିଗୂଢ଼ ସନ୍ଧିରେ ତୁମର ଅପରୂପ ଲାବଣ୍ୟକୁ
ମୋ ପାଇଁ ସଯତ୍ନେ ସାଇତି ରଖ ।

ସର୍ପ ସତରେ ତୁମେ ପୁରୁଷପୁଙ୍ଗବ ! (ଶାଢ଼ିନେଲେ)

କେଳା ମୋ' ଉଦଣ୍ଡ ନୃତ୍ୟ ଆହୁରି ଦେଖିନା ।

ସର୍ପ ଚାଲ, ଆଗରେ ଅନେକ ରାସ୍ତା ।

କେଳା ହଁ, ଏ ରାଜଦାଣ୍ଡ ଖୁବ୍ ଲମ୍ବା
ଆସ, ଆଗରେ ଅନେକ ମଂଚ, ଅନେକ ଅଭିନୟ...

ସର୍ପ ନାଚ ନାଚ, ମୋ ଡମ୍ବରୁ ପୁଣି ନାଚିଲା
(ନାଚି ନାଚି ହଠାତ୍ ଅଟକିଲେ)

କେଳା ହେ କେଳା-ଘରଣୀ ! ଏଇଠି ମୋ ପାକଶାଳା ।

ସର୍ପ ପାକଶାଳା ?

କେଳା ହଁ, ମୋ ନୃତ୍ୟଗୀତ ପାଇଁ ଏଇଠାରେ ହିଁ ଇଂଧନ ପ୍ରସ୍ତୁତ ହୋଇଥାଏ ।

ସର୍ପ ଓ ବୁଝିଲି, କିନ୍ତୁ ମୁଁ ସେ କଳାଧୂଆଁର ରୁଦ୍ଧ କୋଠରି ଭିତରେ
ସିଝିବାକୁ ଚାହେଁନି - ଆଗକୁ ଚାଲ ।

କେଳା		କିନ୍ତୁ... ?

ସର୍ପ		ହାତରେ ମୋର ଡମ୍ବରୁ, ଦାନ୍ତରେ ବିଷ, ଆଉ ମଥାରେ ମଣି ।

କେଳା		ନା ନା, ଏଇ ଦେଖ

ମୁଁ ପୁଣିଥରେ ଲମ୍ଫ ଦେଲି ରାଜଦାଣ୍ଡ ଉପରକୁ....

(ନାଚି ନାଚି ଚାଲୁଥାନ୍ତି, ସର୍ପ ନିର୍ଦ୍ଦେଶରେ ହଠାତ୍ ଅଟକିଲେ)

ସୂତ୍ରଧର : 'ଅଳଙ୍କାର ସ୍ୱର୍ଣ୍ଣ ଏବଂ ରୌପ୍ୟର'

ସର୍ପ		(ଖୁସିରେ) ଅଳଂକାର ! ମୋ ପାଇଁ ନିର୍ମିତ ।

କେଳା		ମୋ' ପାଇଁ ଅନାବଶ୍ୟକ ।

ସର୍ପ		(ଦ୍ୱିଗୁଣ ଉତ୍ସାହରେ ଡମ୍ବରୁ ବଜାଇଲେ)

କେଳା		କାହିଁକି ପ୍ରିୟେ !

ସର୍ପ		ମୋ ଡମ୍ବରୁ ତାଳରେ ନୃତ୍ୟକର ପ୍ରିୟ !

କେଳା		ଅଳଂକାର ପାଇଁ ଅନେକ ନାଚିବାକୁ ହେବ, ମୁଁ ହୁଏତ...

ସର୍ପ		ମୁଁ କିନ୍ତୁ ଅଳଂକାର-ପ୍ରିୟ

ତୁମେ ଜୀବନ ଦେଇ ନାଚ, ପ୍ରିୟ !

ପଦ୍ମତୋଳାର ତରଂଗ ତୋଳି ସେ ଅଳଂକାରକୁ ଲୁଟ୍ କର ।

କେଳା		ଲୁଟ୍ କରିବି ? ପୁଲିସ ?

ସର୍ପ		(ହସି) ମୋ ପଣତ ତଳେ ତୁମେ ଲୁଚିଯିବ ।

କେଳା		ପୁଲିସର ଆଖି ଖୁବ୍ ଉଜ୍ଜ୍ୱଳ ।

ସର୍ପ		ମୋ ରୂପଲାବଣ୍ୟର ଝଲକରେ ସେ ଅଂଧ ହୋଇଯିବ

ତୁମକୁ ଦେଖିପାରିବନି ।

କେଳା		ମୋତେ କିନ୍ତୁ ଭୟଲାଗୁଛି ।

ସର୍ପ		ଭୟ ? ତୁମେ ପରା ପୁରୁଷ ? ପୁରୁଷର ପୁଣି ଭୟ ?

କେଳା		ପୁରୁଷ ଚୋରିକରିବାକୁ ଭୟକରେ ।

ସର୍ପ		ନାରୀ କିନ୍ତୁ ଅଳଂକାର ପାଇଁ ସବୁକିଛି କରିପାରେ ।

| | |
|---|---|
| କେଳା | ମୁଁ ନିରୂପାୟ । |
| ସର୍ପ | ମନେରଖ, ସେ ଅଳଙ୍କାର ପାଇଁ ମୁଁ ଜୀବନ ହାରିଦେଇପାରେ |
| ସୂତ୍ରଧର | ଖବରଦାର୍ ! ଯଦି ସେ ମୃତ୍ୟୁବରଣ କରେ |
| | ତା'ହେଲେ ଯାବତୀୟ ଅପରାଧ ତୋ' ବେକରେ ଛନ୍ଦିଦେବ |
| | ତୋତେ ଫାଶୀଖୁଣ୍ଟ ପର୍ଯ୍ୟନ୍ତ ଟାଣିନେବ । |
| କେଳା | ନା ନା, ତୁମେ ମନଭରି ଡମ୍ବରୁ ବଜାଅ ପ୍ରିୟେ । |
| | ମୁଁ ଘୁଙ୍ଗୁର ବାନ୍ଧି ଏ ମଂଚକୁ ସ୍ତମ୍ଭୀଭୂତ କରିଦିଏ । |
| ସୂତ୍ରଧର | (କେବଳ ହସିଲେ) |
| ସର୍ପ | ଡମ୍ ଡମ୍ ଡମ୍ ଡମ୍ ଡମ୍ବରୁ ବାଜେ । |
| କେଳା | ଅଳଂକାର ପାଇଁ କେଳା କୁଲି ବେଶ ସାଜେ । |
| | (କୁଲି ଅଭିନୟରେ ସୂତ୍ରଧର ପାଖରେ ହାତପାତିଲେ) |
| ସୂତ୍ରଧର | (ହସିଲେ ଉପହାସ କରି) |
| ସର୍ପ | ଡମ୍ ଡମ୍ ଡମ୍ ଡମ୍ ଡମ୍ବରୁ ବାଜେ । |
| କେଳା | ଅଳଂକାର ପାଇଁ କେଳା ଭିକ୍ଷୁ ବେଶ ସାଜେ । |
| | (ଭିକ୍ଷା କରିବା, ସୂତ୍ରଧର ପୁଣି ବିମୁଖ) |
| ସର୍ପ | ଡମ୍ ଡମ୍ ଡମ୍ ଡମ୍ ଡମ୍ବରୁ ବାଜେ । |
| କେଳା | ଅଳଂକାର ପାଇଁ କେଳା ଶବରୂପ ସାଜେ । |
| | (ପୂର୍ବ ପରଂପରା) |
| ସୂତ୍ରଧର | ଜୀବନର ମୂଲ୍ୟ ଏଠି ଅଳଂକାରଠୁ ଢେର୍ କମ୍ । |
| କେଳା | ଓଃ...କେଡ଼େ ନିର୍ଦ୍ଦୟ ସେ ଆଳଂକାରିକ । |
| ସର୍ପ | ଡମ୍ ଡମ୍ ଡମ୍ ଡମ୍ ଡମ୍ବରୁ ବାଜେ । |
| କେଳା | ବାଧ୍ୟ ହୋଇ କେଳା ଶେଷରେ ଚୋରବେଶ ସାଜେ |
| | (ସୂତ୍ରଧରଙ୍କ ହାତରୁ ଅଳଂକାର ଚୋରିକଲେ) |
| ସୂତ୍ରଧର | (ହସି) ନାରୀ ପାଇଁ ପୁରୁଷ ଶେଷରେ ଚୋରିକଲା !(ଚାଲିଗଲେ) |

| | |
|---|---|
| ସର୍ପ | ଆଃ.. ମୋର ସୁନ୍ଦର ରୂପ । |
| | ସେ ଅଳଂକାର ସମ୍ଭାରରେ ଦାଉଦାଉ ହୋଇ ଜଳୁଛି । |
| କେଳା | ଓଃ, ଅସହ୍ୟ ସେ ଜ୍ୱଳନ ! ମୁଁ କ୍ଷୁଧାର୍ତ୍ତ ତୃଷାର୍ତ୍ତ । |
| ସର୍ପ | ବ୍ୟସ୍ତ କାହିଁକି ? ଆଗରେ ତ ଭୋଜନାଳୟ । |
| ସୂତ୍ରଧର | (ହୋଟେଲ ମୁଦ୍ରା) ହୋଟେଲ ଯାଯାବର । |
| | କିନ୍ତୁ ଶୂନ୍ୟହସ୍ତରେ ପ୍ରବେଶ ନିଷେଧ । |
| ନାରୀ | କାହିଁକି ? ତୁମେ କ'ଣ ନାଚିପାରିବନି ? |
| ପୁରୁଷ | ମୁଁ କ୍ଳାନ୍ତ ହୋଇପଡ଼ିଛି । |
| ନାରୀ | ତୁମେ ନାଚିବାକୁ ବାଧ |
| | କାରଣ ତୁମ ପାଦରେ ଘୁଙ୍ଗୁରୁ |
| | ଆଉ ମୋ ହାତରେ ଡମ୍ବରୁ |
| | ଏବଂ ମୁଁ ମଧ କ୍ଷୁଧାର୍ତ୍ତ |
| ସୂତ୍ରଧର | ହେ କେଳାପୁରୁଷ |
| | ଯେହେତୁ ତୁମେ ବିବାହିତ |
| | ତେଣୁ ସର୍ପକ୍ଷୁଧା ନିବାରଣ ତୁମର ଦାୟିତ୍ୱ । |
| ପୁରୁଷ | ହଁ, ମୁଁ ନାଚିବାକୁ ବାଧ୍ୟ । |
| ନାରୀ | (ଡମ୍ବରୁ ବଜାଇ) ନାଚ ପୁରୁଷ ! ଅନେକ ମୁଦ୍ରାରେ । |
| ପୁରୁଷ | ଏଇ ଦେଖ, ନାଚିଲି ମୁଁ ଭିକାରିର କରୁଣ ଛନ୍ଦରେ । |
| | (ହୋଟେଲ ସାମ୍ନାରେ ଭିକ୍ଷାଥାଳ ଧରନ୍ତେ କିଛି ଖାଦ୍ୟ ମିଳିଲା) |
| ନାରୀ | ଧନ୍ୟ ତୁମେ ପୁରୁଷ ! ତୁମେ ଖାଦ୍ୟସଂଗ୍ରହ କରି ପାରିଛ । |
| ପୁରୁଷ | ନିଅ ସୁନ୍ଦରୀ ! ଭୋଜନ କର । |
| ନାରୀ | ତୁମେ ? |
| ପୁରୁଷ | ଗିଲାସେ ପାଣି ହେଲେ ଚଳିବ । |
| ନାରୀ | ନା, ତୁମକୁ ଖାଇବାକୁ ପଡ଼ିବ । |

ପୁରୁଷ କାରଣ ?

ନାରୀ ନ ଖାଇଲେ ନାଚିପାରିବନି ।

ପୁରୁଷ ମୁଁ ମୃତ୍ୟୁକୁ ଭଲପାଏ ।

ନାରୀ ନା, ଏତେ ଶୀଘ୍ର ମୋର ଏ ବସନଭୂଷଣ ତ୍ୟାଗ କରିପାରିବିନି ।

ପୁରୁଷ ବେଶ୍, ତୁମ ସୀମନ୍ତରେ ସିନ୍ଦୂରକୁ ସାଇତି ରଖିବାପାଇଁ ମୁଁ ବାଧହେଇ କିଛି ଖାଉଛି (ଉଭୟ ଭୋଜନ କଲେ)

ସୂତ୍ରଧର ଦେଖ, ଏ ଗୋଧୂଳିର ଦୃଶ୍ୟ କେତେ ଚମତ୍କାର ।

ରାତ୍ରି ଆଗତପ୍ରାୟ,

ଏଥର ଅନ୍ଧକାରାଛନ୍ନ ଗୁପ୍ତପଥରେ ଚାଲିବାକୁ ପଡ଼ିବ ।

ହେ ପାନ୍ଥ । ଆଗେଇଯାଅ ।

(ସୂତ୍ରଧର ଚାଲିଯାଆନ୍ତେ, ଏମାନେ ତା'ର ନିର୍ଦ୍ଦେଶକୁ ମାନିନେଇ ପୁଣି ଆଗକୁ ଚାଲିଗଲେ)

ପୁରୁଷ ମୁଁ କ୍ଳାନ୍ତ, ମୁଁ ନାଚିପାରିବିନି ।

ନାରୀ ମୋ ହାତରେ ଡମ୍ବରୁ ଏବଂ ମୁଁ କାମଜର୍ଜରିତ ।

ପୁରୁଷ ଆଗରେ ଲମ୍ବାରାସ୍ତା...

ନାରୀ ପିଚୁଡ଼ଲା କଳା ଅଂଧାର ।

ପୁରୁଷ ପାଖରେ ପାନ୍ଥଶାଳା....

ନାରୀ ଦୁଗ୍ଧଫେନନିଭ କୋମଳ ଶଯ୍ୟା ।

ପୁରୁଷ ଉଷ୍ଣ ରୋମାଞ୍ଚକ ପାନୀୟ ।

ନାରୀ ରଜନୀଗନ୍ଧାର ମୋହଗ୍ରସ୍ତ ପବନ ।

ପୁରୁଷ ଜ୍ୟୋସ୍ନା ଝରୁଛି ବାଦଲ ଫାଙ୍କରୁ ।

ନାରୀ ମଳୟ ତୋଳୁଛି ଲମ୍ବା ରାଗିଣୀ ।

ପୁରୁଷ ମଥାମଣି ଚକ୍‌ଚକ୍ କରୁଛି....

ନାରୀ ମୋ' ସିନ୍ଦୂର ?

| | |
|---|---|
| ପୁରୁଷ | ଜଳୁଛି ଏକ ରକ୍ତଗୋଳକ ପରି । |
| ନାରୀ | ମୋ ସୌନ୍ଦର୍ଯ୍ୟ ? |
| ପୁରୁଷ | ତୋଳୁଛି କେତେ ଉତାଳ ତରଂଗ । |
| ନାରୀ | ଆସ ନାଉରି । |
| ପୁରୁଷ | ତୁମ ଗଣ୍ଡପ୍ରଦେଶରେ ଜଳ ଭଉଁରି |
| ନାରୀ | ଅକାତକାତ ପାଣି.... |
| ପୁରୁଷ | ଜଳଚକ୍ର |
| ନାରୀ | ଅଂଧକାର ରାତ୍ରି.... |
| ପୁରୁଷ | ନିର୍ଜ୍ଜନ ପାନ୍ଥଶାଳା.... |
| ନାରୀ | ଭୟକରୁଛ ? |
| ପୁରୁଷ | ମୁଁ ପୁରୁଷ । |
| ନାରୀ | ମୁଁ ସ୍ୱପ୍ନବିଭୋର ଅଭିସାରିକା.... |
| ପୁରୁଷ | ତୁମେ କେବଳ ଡମ୍ବରୁ ପିଟିଚାଲିଥିବ ?<br>ଥରେହେଲେ ନାଚିବନି ? |
| ନାରୀ | ହଁ ହଁ, ନାଚିବି ଏବଂ ନଚେଇବି ମଧ୍ୟ । |
| ପୁରୁଷ | ଆସ ନାଚିବା । |
| ନାରୀ | ହାତକୁ ହାତ.... |
| ପୁରୁଷ | ପାଦକୁ ପାଦ.... |
| ନାରୀ | ବାହୁକୁ ବାହୁ.... (ଏକ ଆକର୍ଷଣୀୟ ମୁଦ୍ରାରେ ଫ୍ରିଜ୍) |
| ସୂତ୍ରଧର | ସେମାନେ ତରପରତ<br>ସେମାନେ ନାଚନ୍ତି ମତ୍ତହସ୍ତୀର ପ୍ରବଳ ଛନ୍ଦରେ<br>ଏ ରାତି ଖୁବ୍ ଲମ୍ବା<br>ଲମ୍ବିଯାଉଛି ଆହୁରି ଆଗକୁ ।<br>ଏ କ'ଣ ? ପୂର୍ବାକାଶ ରଂଗମୟ କାହିଁକି ? |

| | |
|---|---|
| ନାରୀ | ତୁମ ପ୍ରଶ୍ୱାସରେ ଘୂର୍ଣ୍ଣିଝଡ । |
| ପୁରୁଷ | ଏ କ'ଣ ? ନାଗଫାଶ ? |
| ନାରୀ | ତୁମର ପଦ୍ମତୋଳା ମନେନାହିଁ.... |
| | ସଂଜୀବନୀ ଗଦ ତୁମ ଅପହୃତ । |
| ପୁରୁଷ | ଓଃ... ମୁଁ ରକ୍ତାକ୍ତ |
| ନାରୀ | ରକ୍ତ ? ହେ କେଳା-ପୁରୁଷ, |
| | ତୁମ ରକ୍ତ ସତେ କେଡ଼େ ସୁମଧୁର । |
| ପୁରୁଷ | ପାନ କରିବ ? |
| ନାରୀ | ମୁଁ କଣ୍ଠଭରି ପିଇବାକୁ ଚାହେ । |
| ପୁରୁଷ | ପୁରୁଷର ଉଷ୍ଣରକ୍ତ ଚାଖିନିଅ ପ୍ରିୟେ ! |
| ନାରୀ | ସୂର୍ଯ୍ୟ ଉଦୟ ହେବାରେ ବ୍ୟସ୍ତ |
| | ମୋତେ ରକ୍ତ ଦିଅ । |
| ପୁରୁଷ | ପିଇନିଅ ପ୍ରିୟେ ! |
| | ହୁଏତ ସୂର୍ଯ୍ୟାଲୋକରେ ଛନ୍ଦିହୋଇପଡ଼ିବ ? |
| ସର୍ପ | ନା, ଏ ତମସାସିକ୍ତ ମୁହୂର୍ତ୍ତରେ ତୁମ ରକ୍ତ ଆକଣ୍ଠ ପିଇଗଲି । (ଚୋଟ) |
| କେଳା | (ଯନ୍ତ୍ରଣାରେ) ଆଃ (ପଡ଼ିଯାଆନ୍ତେ) |
| ସୂତ୍ରଧର | ଶେଷରେ ସେ ବହୁଚର୍ଚ୍ଚିତ ବିଷଦାନ୍ତ... |
| | ତା'ର ପ୍ରିୟ ପୁରୁଷକୁ କ୍ଷତବିକ୍ଷତ କଲା । |
| ନାରୀ | ୟେ ! କ'ଣ ହୋଇଗଲା ! |
| ସୂତ୍ରଧର | କେବଳ ପରଂପରାର ପୁନରାବୃତ୍ତି ମାତ୍ର.... |
| ନାରୀ | ଆଗରେ ଲାଲ୍‌ଛକ |
| ସୂତ୍ରଧର | ନର୍ସିଂହୋମ୍.... |
| ପୁରୁଷ | ମୋ ରକ୍ତନଦୀରେ ନୀଳବିଷ.... |
| ନାରୀ | ମୋ ସିନ୍ଦୂର ରଂଗହରା.... |

| | |
|---|---|
| ପୁରୁଷ | ମୁଁ ଶ୍ୱାସରୁଦ୍ଧ । |
| ସୂତ୍ରଧର | କିନ୍ତୁ ଏଇ ଦେଖ, ତୁମ ରୂପାନ୍ତରିତ ରକ୍ତ |
| | (ଏକ ପୁରୁଷପୁତ୍ରର ଆବିର୍ଭାବ) |
| ନାରୀ | ଏ କ'ଣ ? ସେ ରକ୍ତ ଏକତ୍ରିତ ହୋଇ |
| | ଏମିତି ପୁରୁଷ ରୂପ ଧାରଣ କରୁଛି କାହିଁକି ? |
| ପୁରୁଷ | ସେ ପୁରୁଷର ଦାୟାଦ । |
| ନାରୀ | ଏ ପୁଣି କ'ଣ ? ତା' ହାତରେ ଶାଣିତ କୃପାଣ ! (ଭୟରେ) |
| ପୁରୁଷ | ସେ ପୁରୁଷପୁତ୍ର । |
| | ଏ ସର୍ପର ଉତ୍କଟ ବିଷଜ୍ୱାଳାରେ ମୁଁ ଚାଲିଯାଉଛି |
| | ମନେରଖ, ପାଦରେ କେବେ ଘୁଙ୍ଗୁରୁ ବାନ୍ଧିବୁନି |
| | କି ସର୍ପ ହାତରେ ଡମ୍ବରୁ ଦେବୁନି । |
| | ଏବଂ ମଥାମଣିର ମରୀଚିକା ପଛରେ ଧାଇଁବୁନି । |
| | ମୋ ପୌରୁଷ ମୁଁ ତୋ ଦେହରେ ରଖିଦେଇଯାଉଛି (ମୃତ୍ୟୁ) |
| ସର୍ପ | ଏ କ'ଣ ହେଲା ! ହେ କେଳା-ପୁରୁଷ । |
| | ମୋ ଦେହରୁ ରଂଗତକ ନେଇ ତୁମେ ଚାଲିଗଲ ! (କାନ୍ଦିଲେ) |
| ସୂତ୍ରଧର | ସେ ଛଳନାମୟୀ କାଳସର୍ପ । |
| | ଅନେକ ପ୍ରବଞ୍ଚନାରେ ପୁରୁଷକୁ ଖଣ୍ଡବିଖଣ୍ଡିତ କରି |
| | ତୁ ଉପଭୋଗ କରିଛୁ |
| | ମୁଁ ଉତ୍‌କ୍ଷିପ୍ତ |
| | ମୁଁ ଉତ୍‌କ୍ଷିପ୍ତ |
| | ତୋତେ ଅଭିଶାପ ଦେଉଛି |
| | ତୁ ସେହି ପୁରୁଷପୁତ୍ର ହାତରେ ବିନାଶ ହେବୁ । (ଚାଲିଗଲେ) |
| ସର୍ପ | ହେ ପୁରୁଷ । ପୁତ୍ର ମୋ'ର ! |
| | ମୁଁ ତୋତେ ଗର୍ଭରେ ଧାରଣ କରି ଜନ୍ମଦେଇଛି |
| | ମୁଁ ମୋ ମାତୃତ୍ୱର ଅଧିକାର ଚାହେଁ |

ପୁତ୍ର		ମୁଁ ପୁରୁଷପୁତ୍ର
		ମାତୃତ୍ୱ ପ୍ରତି ମୋର ଭ୍ରୂକ୍ଷେପ ନାହିଁ
		ତୁମେ ସର୍ପ, ତୁମକୁ ବିଶ୍ୱାସ କରିବା ନିର୍ବୋଧତା ।
ସର୍ପ		ମୁଁ କେଳାପୁରୁଷକୁ ଦଂଶନ କରିଥିବାରୁ ଅନୁତପ୍ତ
		ଆ ପୁତ୍ର । ଏଇ ଦେଖ୍ ମୋର ଜନନୀରୂପ (ରୂପ ବଦଳିଛି)
ପୁତ୍ର		ଆଶ୍ଚର୍ଯ୍ୟ । ଏ କ'ଣ ?
		ସର୍ପ ପୁଣି ଜନନୀ ବେଶରେ ଆବିର୍ଭୂତା ।
ନାରୀ		ସେ ପୁରୁଷ । ମୁଁ ତୋ'ର ଜନନୀ
		ଆ । ବକ୍ଷଭରା ଅମୃତ ତୋ ନିମନ୍ତେ ସାଇତିରଖିଛି ।
		ଅମୃତ ପାନକରି ମୋର ଶାପମୋଚନ କର ।
ପୁତ୍ର	:	ହେ ସର୍ବମଂଗଳମୟୀ ଜନନୀ
		ମୋ' ପାଇଁ ତୁମେ ଅମୃତମୟୀ ।
ନାରୀ		ଅମୃତ ଦେଇ ତୋତେ ମୁଁ ଦେବସଭାରେ ଅଧିଷ୍ଠିତ କରାଇବି ।
ପୁତ୍ର		ହଁ, ମୁଁ ଅମୃତ ପାନକରିବି
ନାରୀ		ଏହି ଦେଖ୍, ତୋ ପାଇଁ ମୋର ଉନ୍ମୁକ୍ତ ଅଙ୍କସ୍ଥାନ। ଆ ପୁତ୍ର ।
ପୁତ୍ର		(ସର୍ପଜନନୀ କୋଳରେ ଅମୃତ ପିଇ)
		ଆଃ । କି ମଧୁମୟ । ଏ ଅମୃତ ।
ସୂତ୍ରଧର		ବିଷପାନ କରି ପୁରୁଷ ଆଜି ନୀଳବର୍ଣ୍ଣ ଶବ
ପୁତ୍ର		ସେହି ଶବକୁ କାନ୍ଧରେ ବୋହି
		ମୁଁ ଅମରତ୍ୱର ଅଧିକାରୀ ।
ନାରୀ		ତୋ ମସ୍ତକରେ ମୁଁ ଅଭୟାଶିଷ ଢାଳିଦେଲି
ପୁତ୍ର		ତଥାପି ମୁଁ କ୍ଷୁଧାର୍ତ୍ତ....
ସର୍ପ		ମୁଁ ମୃତ୍ୟୁପଥର ଯାତ୍ରୀ...
ପୁତ୍ର		ବଂଚିବାର ରାସ୍ତା ମୋର ସୁସ୍ପଷ୍ଟ ।

| | |
|---|---|
| ସର୍ପ | ଦୁର୍ବଳ ବିଷଦାନ୍ତ, ନିଷ୍ପ୍ରଭ ମଣି, ଆଉ ବିକ୍ଷତ ପକ୍ଷନେଇ ବାର୍ଦ୍ଧକ୍ୟ ବନ୍ଦୀଶାଳାରେ ବ୍ୟାଧିଗ୍ରସ୍ତ । |
| ପୁତ୍ର | ମୁଁ ଜନ୍ମିଛି ସତ, |
| | କିନ୍ତୁ ଖାଦ୍ୟହୀନ ବସ୍ତ୍ରହୀନ ଭାବରେ |
| | ଗୋଟିଏ ଶବ ଓ ଅନ୍ୟଏକ ବ୍ୟାଧିଗ୍ରସ୍ତ ଜୀବନକୁ ନେଇ |
| | ମୁଁ କ'ଣ ବଂଚିପାରିବି ? |
| ସର୍ପ | ମସ୍ତକ ମୋର ଯୂପକାଷ୍ଠରେ.... |
| ପୁତ୍ର | ହାତରେ ମୋର ଶାଣିତ କୃପାଣ । |
| ନାରୀ | ମୁଁ ହାତ ଯୋଡ଼ିଲି, ଆଖି ବୁଜିଲି । |
| ପୁତ୍ର | ତା'ପରେ ଅଟ୍ଟହାସ କରି ନିଦ୍ୱର୍ନ୍ଦ୍ୱରେ ଚୋଟ ମାରିଲି |
| | (ପୁରୁଷପୁତ୍ର ସର୍ପକୁ କାଟି ଖଣ୍ଡ ଖଣ୍ଡ କରି |
| | ଖାଇବାକୁ ଲାଗିଲା) |
| ସୂତ୍ରଧର | ବିଷ ପିଇ କେଳାପୁରୁଷ ଆଜି ଏକ ଶବ ଏବଂ ବିଷ ପରେ ଅମୃତକୁ ବାଣ୍ଟିଦେଇ ସର୍ପ-ନନ୍ଦିନୀ ଆଜି ଡିନର ଟେବୁଲର ରଂଗକରା ସୁପ୍ ଓ କଟ୍‌ଲେଟ୍ |
| ପୁତ୍ର | ଆଉ ମୁଁ ପୁରୁଷପୁତ୍ର |
| | ହାତରେ ପୌରୁଷର କୃପାଣ. |
| | ରକ୍ତରେ ବିଷାକ୍ତ ଅମୃତର ସ୍ରୋତସ୍ୱିନୀ |
| ସୂତ୍ରଧର | ଏ ରାଜଦାଣ୍ଡରେ ଚାରିଛକ ଉପରେ |
| | ଏକ ବିଜ୍ଞାପନ ଧରି ଅପେକ୍ଷା କର |
| | ଅନ୍ୟ ଏକ ସର୍ପଦଂଶନକୁ |
| | (ପୁରୁଷପୁତ୍ର କାନ୍ଧରେ କେଳାର ଶବ, ହାତରେ ନାରୀର କେଶ ଓ କୃପାଣ ଧରି ଆଶ୍ଚର୍ଯ୍ୟ ମୁଦ୍ରାରେ ଫ୍ରିଜ୍) |



୨୦୧୧ ମେ' 'ଝଙ୍କାର'ରେ ପ୍ରକାଶିତ

'କସରତ୍ କୁର୍ସି ପାଇଁ'ର ଚରିତ୍ରମାନେ

- ଭାରତ
- କାଲାରାମ୍
- କଣାରାମ୍
- ବକାସ

## କସରତ୍ କୁର୍ସି ପାଇଁ

### ପ୍ରଥମ ଦୃଶ୍ୟ

(ଭାରତର ଯେକୌଣସି ସ୍ଥାନର ସମୟ ବର୍ତ୍ତମାନ । ସମଗ୍ର ମଂଚକୁ ଦୁଇଟି ଅଞ୍ଚଳରେ ବିଭକ୍ତ କରାଯାଉ - ବାମ ଅଞ୍ଚଳ ଓ ଦକ୍ଷିଣ ଅଞ୍ଚଳ । ଆବଶ୍ୟକସ୍ଥଳେ ସମୁଦାୟ ମଂଚକୁ ଗୋଟିଏ ଅଭିନୟକ୍ଷେତ୍ର ଭାବରେ ବ୍ୟବହାର କରାଯାଇପାରିବ । ଚୌକିଟେ ଧରି, ଗୀତ ଗାଇ ନାଚିନାଚି ଭାରତ ଦାସ ନାମକ ଚରିତ୍ରଟେ ଆସେ ।))

ଭାରତ (ଗୀତ) ଦେଖ ଦେଖ, ଦେଖ ହୋ ଭାଇ
କସରତ୍ କେତେ କୁର୍ସି ପାଇଁ
ଦେଖ ଦେଖ, ଦେଖହୋ ଭାଇ ।
ଦେଖ ଦେଖ, ଦେଖ ହୋ ଭାଇ ।
ନେତାମାନେ ନାନା ଭେଲିକି ଦେଖାନ୍ତି
କୁର୍ସି ହାସଲ କରିବା ପାଇଁ ।
କୁର୍ସିଟା କାହୁଁ ଅଇଲା
ମୋ' ହାତରେ କିଏ ଥୋଇଲା,
ତା' ଉପରେ ଯିଏ ବସିଲା
ସିଏ ମୋ'ର ଲହୁ ଶୋଷିଲା,
ପାଞ୍ଚ ବରଷରେ ଭୋଟ୍ ନାଆଁରେ
ମୋ'ଠାରୁ କୁର୍ସି ନିଏ ଛଡ଼େଇ ।

ଦେଖ ଦେଖ, ଦେଖହୋ ଭାଇ...

(ଭାରତ ଚୌକିଟାକୁ ତଳେ ଥୋଇ ଝାଡ଼ିଝୁଡ଼ି ଦେଇ କହିବାକୁ ଆରମ୍ଭ କଲା ।)

ଭାରତ — ଆସିଗଲା, ଏ କୁହୁକ କୁର୍ସି ପୁଣି ମୋ' ହାତକୁ ଆସିଗଲା । ଦୀର୍ଘ ପାଞ୍ଚ ବର୍ଷ ପରେ ଏ କୁର୍ସି ପୁଣିଥରେ ମୋ' ହାତକୁ ଫେରିଆସିଛି । ଏଥର କାହାରିକୁ ଦେବିନି ! କେଡ଼େ ସୁନ୍ଦର କୁର୍ସିଟାକୁ କି ହାଲ୍ କରିଛନ୍ତି । ଜମାରୁ ଦେବିନି । ଦେଖିବି, ପରୀକ୍ଷା କରିବି, ମନ ମାନିଲେଯାଇ ଦେବି । (କାଳାରାମ ଆସନ୍ତି ହସି ହସି)

କାଳାରାମ — ନମସ୍କାର ଦାସେ ଆପଣ ! ଆଉ କେମିତି ଅଛନ୍ତିରେ !

ଭାରତ — କିଏ ! ତମେ କିଏ ବାବୁ ?

କାଳାରାମ — ଆଏଁ ! କ'ଣ ହେଲା ! ମୋତେ ଚିହ୍ନିପାରୁନୁ ? ଏତେ ଶୀଘ୍ର ଭୁଲିଗଲୁ ! ହାୟ ହାୟ ! ମୁଁ ପରା କାଳାରାମ୍ ।

ଭାରତ — କାଳାରାମ ? କୋଉ କାଳାରାମ ? ମୁଁ ତ କୌଣସି କାଳାରାମକୁ ଚିହ୍ନେନି ।

କାଳାରାମ — ଚିହ୍ନନି ? କିରେ, ମୁଁ ପରା କାଳାରାମ ସିଂ, ତୁ ଗତ ଥର ମୋତେ ଏ ଚୌକିରେ ବସେଇନଥିଲୁ ?

ଭାରତ — ଓ ହଁ, ହଁ, ଆଚ୍ଛା, ଆଚ୍ଛା, ଚୌକିରେ ବସିଲାପରେ ତମେ ପରା କାଲ ହୋଇଯାଇଥିଲ, ମୋ' କଥା ଶୁଣିପାରିଲନି ।

କାଳାରାମ — ନା ନା, କଥା କ'ଣକି, ଭୋଟ୍‌ରେ ଜିତିଗଲାପରେ ଏ କର୍ମୀମାନଙ୍କ ଉତ୍ପାତ ଆଉ ଉଦଣ୍ଡ ନୃତ୍ୟ ଏବଂ ଜୟଧ୍ୱନି ଶୁଣି କାନଟା କେମିତି ଭାଁ ଭାଁ ହୋଇଗଲା । ତେଣୁ କିଛିଦିନ ପାଇଁ ଶୁଣିପାରିଲିନି । ତା'ପରେ ଠିକ୍ ହୋଇଗଲା - ଏବେ ତ ପୂରାପୂରି ଠିକ୍ ।

ଭାରତ — ହଉ, କୁଆଡ଼େ ଆଇଲ ?

କାଳାରାମ — ଆଁ ! ଇଏ କି କଥା ! ତୁ କ'ଣ ଜାଣିନୁ ? ତୋ' କଥା ଅନୁସାରେ ପାଞ୍ଚବର୍ଷ ପୂରିଗଲା, ତୋ' ଚୌକିଟା ତୋତେ ଫେରେଇଦେଲି, ଏଥର ଚୌକିଟା କାହାକୁ ଦଉଛୁ ?

ଭାରତ — କାହାରିକୁ ଦେବିନି, ମୁଁ ମୋ' ନିଜ ପାଖରେ ରଖିବି ।

କାଳାରାମ — ନ ନା, ତା' କେମିତି ହେବ ? ଏହାଦ୍ୱାରା ସମ୍ବିଧାନର ଅବମାନନା ହେବ । ସମ୍ବିଧାନରେ ଲେଖା ଅଛି, ଚୌକି ସିନା ତୋ'ର, ହେଲେ, ତୁ ତାକୁ ପାଖରେ ରଖିପାରିବୁନି, କାହାକୁ ନା କାହାକୁ ଦବାକୁ ପଡ଼ିବ । ଦବାକୁ ପଡ଼ିବ ଯେତେବେଳେ, ମୋତେ ତ ଦବୁ, ଆଉ ଦବୁ କାହାକୁ ? ମୋ'ଛଡ଼ା ତୋ' ଚୌକିର ଯତ୍ନ ଆଉ ନବ କିଏ ?

ଭାରତ — ସେଟା ମୋ' ଇଚ୍ଛା, ସେଥିରେ ତମର କ'ଣ ଅଛି ?

କାଳାରାମ — ନାଇଁ ନାଇଁ, କଥା କ'ଣକି, ଏଡ଼େ ସୁନ୍ଦର ଚୌକିଟା, ଯଦି ବାଜେ ଲୋକ ହାତରେ ପଡ଼ିଯାଏ, ତା'ହେଲେ ଇଜ୍ଜତ କଥା, ପଛ ଚୌକିଟା ରହିବ କି ନା ସନ୍ଦେହ । ସେଥିପାଇଁ ମୁଁ କ'ଣ କହୁଥିଲିକି...

ଭାରତ — ଚୌକିଟା ତମକୁ ଦେଇଦେବି ?

କାଳାରାମ — ବାସ୍ ।

ଭାରତ — କାରଣ ତମେ ଜଣେ ଭଲ ଲୋକ ?

କାଳାରାମ — ତୁ ତ ଜାଣୁ ।

ଭାରତ — ଭଲ ଲୋକ ? ତମକୁ ଲାଜ ନାହିଁ ବୋଲି ସରମ ବି ନାହିଁ ନା ?

କାଳାରାମ — କିରେ, କାହିଁକି ? ତୁ କ'ଣ ଜାଣିନୁ, ଚୌକି ମାଗିବା କାଳରେ ଲାଜସରମକୁ ତ୍ୟାଗ କରିବାକୁ ପଡ଼ିଥାଏ ।

ଭାରତ — ହଁ, ସେକଥା କହୁନ । ହେଲା, ତମଭଳି ନିଲଜ୍ଜ ଲୋକକୁ ମୁଁ ଚୌକି ଦେଇ ଭୁଲ୍ କରିବିନି ।

କାଳାରାମ — ହେଲା, ତୋ' କଥାରେ ମୁଁ ନିଲଜ୍ଜ, ହେଲେ, ପାଞ୍ଚବର୍ଷ ଭିତରେ ତୋ' ଚୌକିରେ ଟିକିଏ ମଳି ବି ଲଗେଇଦେଇନି ।

ଭାରତ — ନା, ମଳି କାହିଁକି ଲଗେଇବ, ଖାଲି କଳଙ୍କଗୁଡ଼ା ନେସିଦେଇଛ ।

କାଳାରାମ — କଳଙ୍କ ? ଛି, ଛି, ମୁଁ ଫେଏରେ କଳଙ୍କ ଲଗେଇବି ? କିରେ, ତୁ କାହାକୁ କି କଥା କହୁଛୁ !

ଭାରତ — ତମକୁ, ତମକୁ କଳଙ୍କ କଥା କହୁଛି । ଶୁଣିବ ?

କାଳାରାମ    ଓ ହ ହ, ଥାଉରେ ବାବା, ଥାଉ । ତୁ ଜାଣିଛୁ, ମୁଁ ଜାଣିନି ? ମୁଁ ଜାଣିଛି, ଏ ଲୋକଗୁଡ଼ାଙ୍କୁ ଜଣେଇ କି ଲାଭ ପାଇବୁ ? ହଁ ଶୁଣ୍, ମୋତେ ତ ଚୌକିଟା ଦବୁ ।

ଭାରତ    କାହିଁକି ?

କାଳାରାମ    ମୋ'ଛଡ଼ା ଆଉ କିଏ ଅଛି, ଯିଏ ତୋ'ର, ତୋ' ଚୌକିର ଯତ୍ନ ନେଇପାରିବ !

ଭାରତ    କାହିଁକି ! କଣାରାମ, କୁଜାରାମ, ପେଟୁରାମ୍, ମୋଟୁରାମ୍, ଛୋଟୁରାମ୍, ଏମିତି କେତେ ଅଛନ୍ତି । ଯାହାକୁ ଇଚ୍ଛା ହବ, ତାକୁ ଦେଇଦେବି ।

କାଳାରାମ    ଆଗରୁ କ'ଣ ଏମାନଙ୍କୁ ଦେଇନୁ ? କେତେଥର ତ ଦେଇଛୁ, ଦେଖିଛୁ, ପରୀକ୍ଷା କରିଛୁ । ହେଲେ, ହେଇଛି କ'ଣ ? ପାଇଛୁ କ'ଣ ? ତୋ' ଚୌକିଟା ପରା ବନ୍ଧାପକାଇଦେଇଥିଲେ,ମୁଁ ବସିଲାପରେ କେତେ କଷ୍ଟରେ ମୁକୁଳେଇଲି !

ଭାରତ    ସେମାନେ ବି ସେଇକଥା କହୁଛନ୍ତି, ତମେ କାଳେ ଚୌକିଟାକୁ ନେଇ ବିକିବାର ମସୁଧା କରୁଥିଲ, ସେମାନେ ଜାଣିପାରି ଚୌକିଟାକୁ ରକ୍ଷା କରିଦେଲେ ।

କାଳାରାମ :    ମିଛ କଥା, ସୁଦ୍ଧୁ ମିଛ କଥା, ଡାହା ମିଛ କଥା ।

ଭାରତ    ମିଛ ହଉ କି ସତ ହଉ, ତମକୁ ଆଉ ଏ ଚୌକିଟା ଦେବିନି, ଜମା ଦେବିନି । ହେଲା ?

କାଳାରାମ    କିରେ ! ମୋ' ଉପରେ ଏମିତି ରାଗୁଛୁ କାହିଁକି ?

ଭାରତ    ମୋତେ ରଗେଇଲେ ମୁଁ ରାଗିବନି ?

କାଳାରାମ    ଏଥ୍, ମୋ' ବାପାଟା ପରା, ମୋ' ସୁନାଟା ପରା, ମୋ' ଧନଟା ପରା, ମୋ' କଥାଟା...

ଭାରତ    ଆଉ କିଛି କୁହନି, ଜମା ଶୁଣିବିନି । (ଏହି ସମୟରେ କଣାରାମ୍ ଆସନ୍ତି)

କଣାରାମ୍ ସାବାସ୍ ଭାରତ, ସାବାସ୍, ଏତେଦିନ ପରେ ଗୋଟେ ଚମତ୍କାରିଆ ଫଏସଲା ଶୁଣେଇଲୁ...

ଭାରତ ମୁଁ ତ ସବୁବେଳେ ଏମିତି ଚମତ୍କାରିଆ ଫଏସଲା ଇ ଶୁଣେଇଥାଏ ।

କଣାରାମ୍ : ଗତଥର ଟିକିଏ ଗଡ଼ବଡ଼ କରିଦେଲୁ, ପରକଥାରେ ପଡ଼ିଗଲୁ, ଚୌକିଟା ମୋତେ ଦେଲୁନି । ହେଲେ, କ'ଣ ହେଲା ? ଚୌକିର ଅବସ୍ଥା ଦେଖିଲୁଣି, କେମିତି ହେଇଛି ? ରଂଗ ବି ଟିକିଏ ଦେଇପାରିଲେନି, କେମିତି ଦେବେ ! ନିଜ ପେଟ ପୂରି ବଳିଲେ ତ ?

କାଳାରାମ ଏ କଣାରାମଟା ସତରେ କଣା । ଏଟାକୁ ଦିନରେ ବି ଦିଶୁନି ।

କଣାରାମ ଏ କାଳାରାମ୍, ନାଆଁକୁ ନେଇ ପଲ୍‌ଟିସ କରନା, ସିଧା ଆଚରଣବିଧିରେ ପକେଇଦେବି । ହଁ, ମୁଁ କଣାରାମ ସାହୁ, ପଲ୍‌ଟିସ କରି କରି ଟନ୍ଧା ହେଇଗଲିଣି ।

କାଳାରାମ ଆହାହାହା, ଦେଖାନା ଆଚରଣବିଧି । ଏମିତି କେତେ ବିଧି ଦେଖିଛି ।

କଣାରାମ ଆ ହା ହା କେଡ଼େ ସୁନ୍ଦର ଚୌକିଟାର କି ଅବସ୍ଥା କରିଛରେ ! ଦେଖିଲେ ଦିହ ସହୁନି ।

କାଳାରାମ ଆ ହା ହା, କୁମ୍ଭୀର ଆଖିରେ ଲୁହ । ଛି ଛି ଛି, ତୋତେ ଟିକିଏ ଲାଜଲାଗୁନି ? ଆହୁରି..

କାଳାରାମ କଥା କହୁଚୁ, ତମେ ପରା ଯା'ର ହେଣ୍ଡଲ୍ ଭାଙ୍ଗିଦେଇଥିଲ, ଗୋଡ଼ ଭାଙ୍ଗିଦେଇଥିଲ, ମୁଁ ନେଲାପରେ ଫରେନ୍‌ରୁ ଟଂକା ଧାର୍ ଆଣି ସେଗୁଡ଼ା ରିପାୟାର କରିଛି ।

କଣାରାମ ଆଉ ଯା' ଉପରେ ମୁଁ ଯେଉଁ ଗଦି ପକେଇଥିଲି ? ସେଇଟା ଗଲା କୁଆଡ଼େ ? ଘରେ ନେଇ ପଲଙ୍କରେ ପକେଇ ଶୋଉଛ ?

କାଳାରାମ ଚୌକିଟାକୁ ପଲିସ୍ କରିଛି କିଏ ?

କଣାରାମ ପଲିସ୍‌ଟା କରିଦେଇ ବାହାଦୂରି ଦେଖଉଛ, ସେଥିପାଇଁ ଅର୍ଥ ବରାଦ କରିଥିଲା କିଏ ? ବଜେଟ୍ କରିଥିଲା କିଏ ? ମୁଁ ତ ?

ଭାରତ ଏଁ ! କ'ଣ ହେଲା, ମୋ' ଲୁହଲହୁରେ ତିଆରି ଏ ଚୌକିରେ ବସି ତମେ ମଜଲିସ୍ କରୁଛ ! ଏଇଥିପାଇଁ ତମେ ମୋତେ ଫୁସୁଲେଇଫାସଲେଇ ପାଞ୍ଚବର୍ଷରେ ଥରେ ଚୌକିଟାକୁ ନେଇଯାଉଛ । ଆରେ... ! ଆଉ ଦେବିନି, ନା ଦେବିନି, ଜମା ଦେବିନି ।

କାଳାରାମ ଏ ଭାରତ, ତୁ ତା' କଥା ଛାଡ଼୍, ଚୌକିଟା ମୋତେ ଦେଇଦେ' ! ମୁଁ ତୋତେ ଗୋଟେ ସୁନ୍ଦର, ଅତିସୁନ୍ଦର, କଳା ଘୋଡ଼ା ଦେବି ।

କଣାରାମ କଳାଘୋଡ଼ା ? ଛି ଛି, ମୁଁ ମୁଁ ତୋତେ ଗୋଟେ ସୁନ୍ଦର ଦାନ୍ତବାଲା ହାତୀ ଦେବି ।

କାଳାରାମ ମୁଁ ତୋତେ ଗୋଟେ ପଟାଗାଡ଼ିଆ ବାଘ ଦେବି ।

କଣାରାମ ମୁଁ ତୋତେ ଗୋଟେ ଝାମ୍ପୁରାକେଶିଆ ସିଂହ ଦେବି ।

କାଳାରାମ ମୁଁ ତୋତେ ମହୁଲି ମଦ ଦେବି, ଫ୍ରିରେ ଫ୍ରିରେ ।

କଣାରାମ ମୁଁ ତୋତେ ହାଣ୍ଡିଆ ଦେବି, ହାଣ୍ଡିଆ ଏକଦମ୍ ଫ୍ରି ।

କାଳାରାମ ମୁଁ ତୋତେ ମାଂସ ଦେବି, ମାଂସ - ହରିଣମାଂସ, ଖାସିମାଂସ, କୁକୁଡ଼ାମାଂସ ।

କଣାରାମ ମୁଁ ତୋତେ, ମୁଁ ତୋତେ, ଛେନାଗୁଡ଼ ଦେବି ।

କାଳାରାମ କଦଳୀ ଦେବି, କଦଳୀ । (ଏହି ସମୟରେ ପିସ୍ତଲ ଫୁଟେଇ ପଶିଆସେ ଆତଙ୍କବାଦୀ ବକାସ୍ । ସମସ୍ତେ ଚମକିଉଠନ୍ତି ଭୟରେ ।)

ସମସ୍ତେ କିଏ ! କିଏ !

ବକାସ୍ ମୁଁ ବକାସ୍ ।

ସମସ୍ତେ ବକାସ୍ ?

ଭାରତ କି କାସ୍ ?

ବକାସ୍ ବକାସ୍ ।

ଭାରତ ବକାସ୍ ? ଏ ବକାସ୍ କିଏ ? ବକାସୁର ଜୋଇଁ କି ?

ବକାସ୍ — ଏ ଚୁପ୍ । ମୁଁ ବକାସ୍ ।

କାଳାରାମ୍ — ବକାସ୍ ? କିଏ ? ସାମ୍ବାଦିକ କି ?

କଣାରାମ — ନା ନା, ଫିଲମ୍‌ବାଲା ହେଇଥିବ।

ବକାସ୍ — ଚୁପ୍ । ମୁଁ ବକାସ୍ ।

କାଳାରାମ — ହଁ, ବକାସ୍ ଯେ, ତମେ କୋଉଠୁ ଆସିଛ ? ଜଙ୍ଗଲରୁ ନା ପାକିସ୍ତାନରୁ ?

ବକାସ୍ — ଏୟ୍ । ମୋ' ସାଂଗରେ ଥଟ୍ଟା । ମୋ' ଦେହରେ ସୁଇସାଇଡ୍ ବମ୍ ଲାଗିଛି । ଖାଲି ରିମୋର୍ଟ୍ ଚିପିଲେ ଶେଷ୍ ।

ଭାରତ — ମୋ' ବୋଉଲୋ !

ବକାସ୍ — ଏୟ୍ କୁର୍ସିବାଲା । ଗୋଟେ ଗୁଳିରେ ତୋ' ଖପୁରି ଉଡ଼େଇଦେବି (ପିସ୍ତଲ ବାହାର କରି)

ଭାରତ — ନା, ଥାଉ ଥାଉ ବକାସୁର ।

ବକାସ୍ — ଚୁପ୍ !

କାଳାରାମ୍ — ହେଲା, ଭାଇ ବକାସୁର ।

ବକାସ୍ — ମୁଁ ବକାସ୍ ।

କାଣାରାମ — ହେଲା, ତମେ ବକାସ ଯେ; ହେଲେ, ସେ ବକାସ୍‌ଟା କିସ ?

ବକାସ୍ — ମୁଁ ବକାସ୍, ମୋତେ ଓଲଟେଇଦେଲେ ମୁଁ ହୋଇଯାଏ କାସବ୍ ।

କାଳାରାମ — ଓ, ତମକୁ ଓଲଟେଇଦେଲେ ତମେ ହେଇଯିବ କାସବ !

କଣାରାମ — ସେକଥା କହୁନ, କେତେବେଳୁ ଆମେ ତମକୁ ଓଲଟେଇ ସାରନ୍ତୁଣି । ଆ'. ଭାଇ, ଧର୍ ।

କାଳାରାମ୍ — ହଁ ଧର୍ । (ଦୁହେଁ ବକାସ୍‌କୁ ଓଲଟେଇବାକୁ ଉଦ୍ୟତ ହୁଅନ୍ତି ।)

ବକାସ୍ — ଚୁପ୍ । ମୁଁ ବକାସ୍, ଟେରୋରିଷ୍ଟ ବକାସ୍, ଆତଙ୍କବାଦୀ । (ସମସ୍ତେ ଡରିଯାଆନ୍ତି)

ଭାରତ ଏଁ ଏଁ ଏଁ, କ'ଣ କହିଲ, ଆତଙ୍କବାଦୀ ? ମୋ' ବୋଉଲୋ ! (ହୋସ୍ ଚାଲିଯାଏ)

ବକାସ୍ (ହସି) ମୋ ନାଁ ଶୁଣି ତା' ହୋସ୍ ଗାଏବ ।

କାଳାରାମ ଏ ବକାସ୍ ଭାଇ.....

ବକାସ ଚୁପ୍ ! ମୋ'ର କେହି ଭାଇ ନାହାନ୍ତି କି ମୁଁ କାହାର ଭାଇ ନୁହେଁ ।

କଣାରାମ ହେଲା, ବକାସ୍ ବାବୁ, ତମର କ'ଣ ଦରକାର ?

ବକାସ୍ : ହଁ, ଏବେ ଲାଇନ୍‌କୁ ଆସ, ମୋର ତ ବହୁତ କିଛି ଦରକାର । ପ୍ରଥମେ ସେ କୁର୍‌ସିଟା ନେବି, ତା' ଉପରେ ବସିସାରିଲାପରେ ମୋର ଅଧେ ଇଚ୍ଛା ପୂରଣ ହୋଇଯିବ ।

କାଲାରାମ ମାଇଲାରେ ! ଇଏ ବି ସେଇ କୁର୍‌ସି ପଛରେ ପଡ଼ିଛି ।

କଣାରାମ କଥା କ'ଣକି ବକାସବାବୁ, କୁର୍‌ସିଟା ତ ତା'ର; ଆଉ ସିଏ ତ ଏବେ ବେହୋସ୍, ତା'ର ହୋସ୍ ନ ଆସିଲେ କୁର୍‌ସି ଦବ କେମିତି ?

ବକାସ୍ ମୋତେ ଜବରଦସ୍ତ ନେଇଆସେ ।

କାଲାରାମ ନା, ନା, ସେଟା କେମିତି ହେବ ? ଏଟା ପରା ମେଜିକ୍‌ଚେୟାର, ସିଏ ନିଜେ ନ ଦେଲେ ତାକୁ କେହି ନେଇପାରିବେନି । ନ ଦେଲେ ତାକୁ କେହି ନେଇପାରିବେନି । ନେଲେ ବି କିଛି କାମଦବନି - ତା' ଉପରେ ବସିହବନି ।

ବକାସ୍ ତା'ହେଲେ ତାକୁ ଶୀଘ୍ର ହୋସ୍ କର, ନ ହେଲେ ତମକୁ ବେହୋସ୍ କରିଦେବି ।

କଣାରାମ୍ ନା ନା, ତମେ କାହିଁକି ତୁଚ୍ଛାଟାରେ କଷ୍ଟ କରିବ ! ଆମେ ନିଜେ ନିଜେ ବେହୋସ୍ ହେବା ଶିଖିଛୁ ।

କାଲାରାମ ହଁ ହଁ, ଆମପାଇଁ ଚିନ୍ତାକରନି । ଆପଣତମେ ଚାହିଁଦେଲାମାତ୍ରେ ଆମେ ହୋସ୍ ହରେଇଦବୁ ।

ବକାସ୍ ତମ କଥା ପରେ, ଆଗ ତାକୁ ହୋସ୍‌କୁ ଆଣ ।

ଉଭୟେ ଆଜ୍ଞା ଆଜ୍ଞା ।

| | |
|---|---|
| କଣାରାମ | ଆରେ ବାପା ଭାରତ, ଉଠ୍‌ରେ ବାପା, ଉଠ୍ । |
| କାଲାରାମ | ଉଠ୍‌ରେ ଧନ, ଉଠ୍ (ଉଭୟେ ଭାରତକୁ ଉଠେଇବାକୁ ଉଦ୍ୟମ କରନ୍ତି ।) |
| | (ଭାରତର ହୋସ୍ ଆସେ, ସେ ଏଣେତେଣେ ଚାହେଁ) |
| ଭାରତ | କାହିଁ ? କାହିଁ ସେ ଆତଙ୍କବାଦୀ ? |
| ବକାସ୍ | ଏୟ୍, ଇଆଡ଼େ ଚାହାଁ, ମୁଁ ଏଇଠି ଅଛି । |
| ଭାରତ | ଆଏଁ ! ତମେ ଅଛ ! (ପୁଣି ବେହୋସ୍) |
| କଣାରାମ | ଆରେ ! ଇଏ ତ ପୁଣି ବେହୋସ୍ ହୋଇଗଲା ! |
| କାଲାରାମ | ବକାସ୍ ସାରଙ୍କୁ ଦେଖି ତା'ର ହୋସ୍ ରହୁନି । |
| ବକାସ୍ | ଠିକ୍ ଅଛି, ମୁଁ ଏପଟେ ଲୁଚିଛି । ତାକୁ ଶୀଘ୍ର ହୋସ୍ କରା ନ ଗଲେ ତୁମକୁ ଆଉ ବେହୋସ୍ କରିବିନି, ଏକଦମ୍ ଶେଷ କରିଦେବି । |
| ଉଭୟେ | ନା,. ନା, ହଁ, ହଁ... |
| କାଲାରାମ. | ଆରେ ଭାରତ, ଉଠ୍‌ରେ ଉଠ୍ । |
| କଣାରାମ୍ | ଉଠ୍‌ରେ ଭାରତ, ଉଠ୍ । ସେ ବକାସ୍ ପଳେଇଲାଣି । (ପାଣି ସିଞ୍ଚନ୍ତି, ହୋସ୍ ଆସେ) |
| ଭାରତ | (ଉଠିପଡ଼ି) ଏଁ ! ହଁ କାହିଁ ? କାହିଁ ସେ ଆତଙ୍କବାଦୀ ? |
| କଣାରାମ | ଏ, ସିଏ କ'ଣ ଆଉ ଅଛି, କେତେବେଳୁ ପଳେଇଗଲାଣି । |
| କାଲାରାମ | ପଳେଇବନି ? ତାକୁ ଯୋଉ ଚଟକଣାଟା ବସେଇଲି... |
| କଣାରାମ | ଚଟ୍‌କଣା ? ମୁଁ ତ ଚାହିଁଦେଲାମାତ୍ରେ ସେ ଛୁ' । |
| କାଲାରାମ୍ | ଆଃ, ତୁ ତା'ହେଲେ ଦେଖିନୁ, ମୁଁ ଚଟକଣାଟେ ମାରିବାରୁ ସେ ଡରରେ ପଳେଇଲା । |
| ବକାସ୍ | (ବାହାରିଆସେ) କ'ଣ ହେଲା ? |
| ଭାରତ | ଏଁ, ପୁଣି ଆତଙ୍କବାଦୀ ? (ହୋସ୍ ଚାଲିଗଲା) |
| କଣାରାମ | ଓ ହ, ପୁଣି ହୋସ୍ ଚାଲିଗଲା । |

| | |
|---|---|
| ବକାସ୍ | ମୁଁ କିଛି ଶୁଣିବିନି, ସେ କୁର୍ସି ନେଇକି ଯିବି । |
| କାଳାରାମ | ଏଇ ତ, ତମେ କିଛି ବୁଝୁନ ଆତଙ୍କବାଦୀ ସାର୍ । ଯାହାର କୁର୍ସି, ସେ ତ ବେହୋସ୍ । |
| କଣାରାମ୍ | ତମେ ସେ କୁର୍ସି ନବ କେମିତି ? |
| ବକାସ୍ | ତାକୁ ଶୀଘ୍ର ହୋସ୍ କରାଓ । |
| କଣାରାମ୍ | ଯେତେ କଲେ କ'ଣ ହେବ, ତମକୁ ଦେଖିଲାମାତ୍ରେ ତ ସେ ହୋସ୍ ହରେଇଦଉଛି । |
| କାଳାରାମ | ତେଣୁ ତମେ ଗୋଟେ କାମ କର । |
| ବକାସ୍ | କ'ଣ ? |
| କାଳାରାମ୍ | ତମେ କୋଉଠି ଲୁଚିକରି ରୁହ, ମୁଁ ତାକୁ ବୁଝେଇସୁଝେଇ ତା' ଠୁଁ କୁର୍ସିଟା ନେଇଆସି ତମକୁ ଦେଇଦେବି । |
| କଣାରାମ | ନା ନା, ସେ ପାରିବନି । ମୁଁ ନେଇଆସି ତମକୁ ଦେଇଦେବି । |
| କାଳାରାମ | ନା ନା, ସେ ପାରିବନି । |
| ବକାସ୍ | ଓହୋ, ଯିଏ ଦଉଛ ଦିଅ, ଶୀଘ୍ର ଦିଅ । |
| ଉଭୟେ | ହେଲା, ଆପଣ ଆଗ ଗଲେ... |
| ବକାସ୍ | ଠିକ୍ ଅଛି, ହେଲେ, ଡେରି କଲେ ମୁଁ ତମକୁ ଉଡ଼େଇଦେବି । |
| ଉଭୟେ | ନା ନା, ଜମା ଡେରି ହବନି । (ବକାସ୍ ଲୁଚିଯାଏ) |
| କାଳାରାମ | ଆରେ ଭାରତ, ଉଠ୍‌ରେ ଉଠ୍... । |
| କଣାରାମ୍ | ମୁଁ ସେ ଆତଙ୍କବାଦୀକୁ ଘଉଡ଼େଇଦେଇଛି । (ବକାସ୍ ପୁଣି ଫେରିଆସେ) |
| ବକାସ୍ | ଏୟ୍, ମୋତେ ତୁ ଘଉଡ଼େଇଦେଇଛୁ ? |
| କାଳାରାମ | ଏଇ ତ, ଆପଣ ଜମା ଧୈର୍ଯ୍ୟ ଧରୁନାହାନ୍ତି ! ମୁଁ ପରା ମିଛ କହୁଛି । |
| ବକାସ୍ | ମିଛ ? |
| କଣାରାମ୍ | ତାହା ମିଛ । |

| | |
|---|---|
| ବକାସ୍ | ଓ, ଏଇଟା ତା'ହେଲେ ମିଛ ? ହଉ (ପୁଣି ବାହାରକୁ ଯାଏ) |
| କଣାରାମ | ଆରେ ଭାରତ, ସେ ବକାସ୍‌କୁ ମୁଁ ଫକାସ୍ କରିଦେଇଛି । |
| କାଲାରାମ୍ | ଆଉ ବକାସ୍ ତ ବକାସ୍, ତା' ବାପ ବି ଆସିପାରିବନି । (ବକାସ୍ ଆସେ) |
| ବକାସ୍ | ଏୟ୍ ବାପ, ଉଠଉଛୁ ନା ସିଧା ଫାଡ଼ିଦେବି ? |
| କଣାରାମ | ଏଇ ତ, ଏଟା ପରା ମିଛ । |
| କାଲାରାମ | ମିଛରେ ବାପକୁ ଉଠେଇହବ । |
| ବକାସ୍ | ହଉ, କୁର୍ସି ପାଇଁ ବାପ ଗୋସବାପ, ଯାହାକୁ ଉଠଉଛ ଉଠାଅ । (ବାହାରକୁ ଗଲାପରେ) |
| କଣାରାମ | ବାପ ଭାରତ, ଉଠ ! ବକା ପଳେଇଲାଣି । |
| ଭାରତ | (ଉଠି) କାହିଁ ? ସେ ବକାସ୍ କାହିଁ ? |
| କଣାରାମ୍ | ସିଏ କ'ଣ ଆଉ ଅଛି ? ଗୋଟେ ଚାପୁଡ଼ାରେ ପରା ବାଲ୍‌ଟିଏ ପାଣି ପିଇଗଲା । |
| କାଲାରାମ | ମୁଁ ତାକୁ ଗୋଟେ ଘୁଷି ମାଇଲି, ତା' ଆଖିରୁ ପରା ଜୁଳୁଜୁଳିଆପୋକ ଖସିପଡ଼ିଲା । |
| କଣାରାମ | ତା'ପରେ ଉଠେଇଲି ଚପଲ, ଆଉ ସମ୍ଭାଳେ କିଏ ? ଲାଙ୍ଗୁଡ଼ ଯାକି ହୁ । |
| ଭାରତ | ଯା'ହଉ, ତମେଆପଣ ମୋତେ ରକ୍ଷା କରିଦେଲ । |
| କାଲାରାମ | ଆଉ ମୁଁ ? ମୁଁ ପରା ତୋ' କାଲାରାମ ଦାଦା, ମୁଁ ତୋତେ ରକ୍ଷା କରିବିନି ? |
| କଣାରାମ | ଆରେ, ତୁ ଜମା ଚିନ୍ତାକରନା, ମୁଁ ଅଛି, ମୁଁ - ତୋ'କଣାରାମ ଭାଇ । ତୋ'ର କେହି କିଛି କରିପାରିବେନି । |
| ଭାରତ | ହେଲେ, ବକାସ୍‌ର ପାଟି ଶୁଭୁଛି ନା କ'ଣ ? |
| କାଲାରାମ | ହଁ, ବକାସ୍ କ'ଣ ସଂପୂର୍ଣ୍ଣ ରୂପେ ପଳେଇଛି । |

| | |
|---|---|
| କଣାରାମ | ନା ନା, ଏଇଠି କୋଉଠି ଛପିରହିଛି, ସୁବିଧା ପାଇଲେ ମାଡ଼ିଆସିବ । |
| ଭାରତ | ଏଁ ! ମାଡ଼ିଆସିବ ? ତେବେ କ'ଣ କରିବା ? |
| କାଲାରାମ | ତୁ ତ କୁର୍ସିଟା ମୋତେ ଦଉନୁ, ମୁଁ ତା' ଉପରେ ବସିଲେ ସିନା ହୁକୁମ୍ କରିବି, ଆଉ ମୁଁ ହୁକୁମ ଦେଲେ ସିନା ସୈନ୍ୟମାନେ ଆସିବେ, ଆତଙ୍କବାଦୀକୁ ଧରିବେ । |
| କଣାରାମ | ନା ନା, ସିଏ ପାରିବନି । ତୁ କୁର୍ସିଟା ମୋତେ ଦେଲୁ, ମୁଁ ହୁକୁମ କରୁଛି । |
| କାଲାରାମ | ନା ନା, ମୋତେ ଦେ' । |
| ଭାରତ | ଏଇ ତ, ତମେ ସବୁବେଳେ ଏ କୁର୍ସି ପାଇଁ କସ୍‌ରତ୍ କଲ । ସେଇ ସୁଯୋଗରେ ଆତଙ୍କବାଦୀ, ମୋ' ଉପରେ ଅତ୍ୟାଚାର କରୁଛନ୍ତି । |
| କଣାରାମ୍ | ତୁ ତ ବୁଝୁନୁ, କୁର୍ସିରେ କାହାକୁ ନା କାହାକୁ ବସିବାକୁ ପଡ଼ିବ । ନ ବସିଲେ ହୁକୁମ ଦବ କିଏ ? ଆଉ ହୁକୁମ ନ ଦେଲେ ଆତଙ୍କବାଦୀକୁ ଧରିବା କେମିତି ? |
| ଭାରତ | ଆରେ ଭାଇ, ଯିଏ ହେଲେ ଜଣେ ବସିପଡ଼ି ସେ ଆତଙ୍କବାଦୀଟାକୁ ବିଦାକର । |
| କାଲାରାମ | ହେଲା ହେଲା, ମୁଁ ବସୁଛି । |
| କଣାରାମ୍ | କାହିଁକି ? କାହିଁକି ? ତୁ କ'ଣ ଭାରତ ପଇଡ଼ା ? ମୁଁ ବସିବି । |
| କାଲାରାମ | ଦେଖୁଛୁ, ଦେଖୁଛୁ ଭାରତ ? ତୁଣ୍ଡାଟାରେ କେମିତି ଷଣ୍ଢ ପୂରଉଛି ! |
| ଭାରତ | ହେଲା, ତମେ ଦିହେଁ ଷଣ୍ଢ ପରିକା ଲଢ଼େଇ କର । ଯିଏ ଜିତିବ, ସିଏ ବସିବ । |
| କାଲାରାମ | ଠିକ୍ ଅଛି, ଚଲାଓ ଲଢ଼େଇ । |
| କଣାରାମ | ଲଢ଼େଇ ? ମାନେ ବଳ କଷାକଷି ? ନା ନା, ମୁଁ ସେ ଲଢ଼େଇ ଝଗଡ଼ାରେ ବିଶ୍ୱାସ କରେନା । |
| ଭାରତ | ଠିକ୍ ଅଛି, ତମେ ଗୋଟେ କାମ କର, ତମେ ବାଗୁଡ଼ି ଖେଳ । ଯିଏ ଜିତିବ, ସିଏ କୁର୍ସିରେ ବସିବ । |

| | |
|---|---|
| କାଲାରାମ | ବାଗୁଡ଼ି ଖେଳ ? ସେଗୁଡ଼ା ଆଉ କେହି ଖେଳୁନାହାନ୍ତି । |
| ଭାରତ | ନ ହେଲେ କ୍ରିକେଟ୍ ଖେଳ । |
| କଣାରାମ୍ | ହଁ, ମୁଁ ବ୍ୟାଟିଂ କରୁଛି - ପକା, ପକା ବଲ୍ । |
| କାଲାରାମ | କ୍ରିକେଟ୍, ଅଳସୁଆମାନେ ଖେଳନ୍ତି । ମୁଁ କ'ଣ ଅଳସୁଆ ? |
| ଭାରତ | ନ ହେଲେ ବୋହୂଚୋରି ଖେଳ । |
| କାଲାରାମ | ହଁ, ଖେଳ, ବୋହୂଚୋରି ଖେଳ । |
| କଣାରାମ | ବୋହୂଚୋରିଟା ମହିଳାମାନଙ୍କ ଖେଳ । |
| ଭାରତ | ଏତେକଥା ଛାଡ଼, ପଦ୍ୟାନ୍ତ ପ୍ରତିଯୋଗିତା କରିବ ନା ? |
| ଉଭୟେ | ହଉ, ତୋ'ରି କଥା ହଉ । ପଦ୍ୟାନ୍ତ ପ୍ରତିଯୋଗିତା ହଉ । (ଉଭୟେ ପଦ୍ୟାନ୍ତ ପ୍ରତିଯୋଗିତା କରନ୍ତି) |
| କାଲାରାମ | ହଁ, କହ କହ, ତା'ପରେ ? ତା'ପରେ ? |
| କଣାରାମ୍ | (ଭାବନ୍ତି) ତା' ପରେ ? ତା'ପରେ ? |
| କାଲାରାମ୍ | ହୁର୍‌ରେ । ମୁଁ ଜିତିଗଲି ମୁଁ ଜିତିଗଲି । ଭାରତ, ଦେ ମୋତେ କୁର୍ସି । |
| ଭାରତ | ହେଲା, ତମେ ଜିତିଲ । କୁର୍ସି ନବ, ଇମିତି ହାଉଳିଖାଉଛ କାହିଁକି ! |
| କାଲାରାମ | ନା ନା, ଜବାବ୍ ଜବାବ୍ । |
| ଭାରତ | ମୁଁ ବି ସେହି ଜବାବ୍ କଥା କହୁଛି । ତମେ ଜବାବ୍ କରିଛ ମୋତେ ଆତଙ୍କବାଦୀ କବଳରୁ ରକ୍ଷାକରିବ । |
| କାଲାରାମ | ତୁ ସେକଥା ଚିନ୍ତା କରନା ଭାରତ । ମୁଁ ତୋ' ପଛରେ ଅଛି । ଦେଖିବା, କିଏ ତୋ'ର କ'ଣ କରିବ ! ଆ', ମୋ' ଆଗରେ ଛିଡ଼ା ହ' । |
| କଣାରାମ୍ | ହଇରେ ଭାରତ, ତୋ' ପଛରେ ଥାଇ ସେ ତୋତେ ରକ୍ଷା କରିବ ନା ତୋତେ ଆଗରେ ଥୋଇ ଆତ୍ମରକ୍ଷା କରିବ ? |
| କାଲାରାମ୍ | ଏ କଣାରାମ, ଚୁପ୍‌ଚାପ୍ ଏଠୁ ଚାଲିଯା, ନ ହେଲେ... |

କଣାରାମ୍ ହଉ ଦେଖିବି, ତୁ କେମିତି ଆତଙ୍କବାଦୀମାନଙ୍କୁ ଦମନ କରୁଛୁ । (ଯାଏ)

କାଳାରାମ ହଉ ଯା ଯା । ତୁ ଭାରତ, ଚୁପ୍‌କି ବସିଥା' । ମୁଁ ସେ ବକାସ୍‌କୁ ଗୋଟେ ଚଟକଣାରେ ଫକାସ୍ କରିଦିଏ, ତା'ପରେ ତୁ ଆରାମ୍‌ରେ ରହିବୁ ।

ଭାରତ ଯାହା କରୁଛ କର, ତମେ ତ ମୋର ଭରସା ।

କାଳାରାମ ତୁ ଚିନ୍ତା କରନି, ମୁଁ ଅଛି, ବାସ୍ । (ଅନ୍ଧାର)

(ପରବର୍ତ୍ତୀ ଆଲୋକ ବାମ ଅଞ୍ଚଳକୁ ଆସେ)

(କାଳାରାମ ବକାସକୁ ଖୁଆଉଥାଏ)

କାଳାରାମ ଏଇଟା ସାର୍, ଦେଶୀ ଚିକେନ୍, ଆଉ ଇଏ ବିଦେଶୀ ମଦ, ତା' ସାଂଗରେ ବିରିୟାନି ବି ଅଛି । (ବକାସ୍ ଖାଉଖାଉ ହସୁଥାଏ)

ବକାସ୍ ଆଃ, ମୋ'ଦିଲ୍ ଖୁସି କରିଦେଲ, କାଳାରାମ ।

କାଳାରାମ ଥ୍ୟାଙ୍କ୍ ୟୁ ସାର୍, ଥ୍ୟାଙ୍କ୍ ୟୁ । ମୋ' ପାଖରେ ଆହୁରି ବଢ଼ିଆ ଚିଜ ଅଛି । ଆପଣ ଚାହିଁଲେ ସୁନ୍ଦରୀ ଫିଲ୍ମ ଅଭିନେତ୍ରୀ ଅଛନ୍ତି, ଯାହାକୁ ଚାହିଁବେ, ମୁଁ ପଠେଇଦେବି । ଆପଣ ତାକୁ ନେଇ ସାରାବିଶ୍ୱରେ ବୁଲିବେ, ଫୁର୍ତ୍ତି କରିବେ, ମଉଜ୍ କରିବେ ।

ବକାସ୍ ଠିକ୍ ଅଛି । ପଠାଅ ପଠାଅ । ହେଲେ, କୁର୍ସିଟା କିନ୍ତୁ ମୋ'ର ।

କାଳାରାମ ହଁ । ମୁଁ ଖାଲି ଯାହା ବସିଛି ।

ବକାସ୍ ବସିଥାଅ, କିନ୍ତୁ ମାଗିବା ମାତ୍ରେ ମୋତେ ଦେଇଦବ ।

କାଳାରାମ ଆପଣ ଭାବନ୍ତୁ, କୁର୍ସି ଆପଣଙ୍କ ପାଖରେ ଅଛି, ଆପଣ ନିଜେ କୁର୍ସିରେ ବସିଛନ୍ତି । ମୁଁ ଖାଲି ଯାହା ଆପଣଙ୍କ ଗୁଲାମି କରୁଛି ।

ବକାସ୍ ଠିକ୍ ଅଛି, ମୋତେ ଟିକିଏ ଅଏସ୍ କରିବାକୁ ଦେ ।

କାଳାରାମ କରନ୍ତୁ, ମନଇଚ୍ଛା ଅଏସ୍ କରନ୍ତୁ । ହେଲେ, ମଝିରେ ମଝିରେ ବମ୍ ଫୁଟେଇ ସେ କୁର୍ସିବାଲାଟାକୁ ଟିକିଏ ଡରେଇଦଉଥିବେ । ନ ହେଲେ ମୁଁ ଶାନ୍ତିରେ ଶାସନ କରିପାରିବିନି ।

| | |
|---|---|
| ବକାସ୍ | ଆରେ, ସେକଥା ଚିନ୍ତା କରନି । ହାତରେ ରିମୋଟ୍ ଅଛି, ସୁଇଚ୍ ମାରିଲେ ତୋ । |
| | (ଉଭୟେ ହସନ୍ତି, ଆଲୋକ ଲିଭିଯାଏ) |
| | (ଦକ୍ଷିଣ ଅଞ୍ଚଳକୁ ଆଲୋକ ଆସେ) |
| | (ଭାରତ ଚିତ୍କାର କରୁଥାଏ - କଣାରାମ ତାକୁ ଉସ୍କାଉଥାଏ) |
| ଭାରତ | ମୋ ଘର ଜଳିଗଲା, ମୋ' ହସ୍ପିଟାଲ ପୋଡ଼ିଗଲା, ମୋ ବ୍ୟାଙ୍କ ଲୁଟ୍ ହୋଇଗଲା । |
| କଣାରାମ | ଯାଉ ଯାଉ, ସବୁ ଯିବ । ଆଉ ଟିକେ ପରେ ତୁ ବି ଯିବୁ, ତୁ ବି ଜଳିବୁ । |
| ଭାରତ | ହେ କଣାଭାଇ, ମୋତେ ରକ୍ଷାକର । |
| କଣାରାମ୍ | କାହିଁକି, କୁର୍ସି ତ କାଳାରାମକୁ ଦେଇଛୁ, ତାକୁ କହୁନୁ, ସିଏ ରକ୍ଷା କରିବ । |
| ଭାରତ | ସିଏ କିଛି ଶୁଣୁନି କି କିଛି କରୁନି । |
| କଣାରାମ | କିଛି କରିବିନି, ଅଥଚ କୁର୍ସିକୁ ଜାବୁଡ଼ି ଧରି ବସିବ । ବେ ଛଡ଼େଇ ଆଣ୍ କୁର୍ସି । |
| ଭାରତ | ଠିକ୍ କଥା । କାମ ଯଦି ନ କରିବ, କୁର୍ସିରେ ବସିବ କାହିଁକି ? ଏ କାଳାରାମ୍ (ଯାଏ) |
| କଣାରାମ୍ | ଏଥର ଖେଳ ଜମିବ । (ହସିଦିଏ - ଅନ୍ଧାର ହୁଏ) |
| | (ବାମ ଅଞ୍ଚଳକୁ ଆଲୋକ ଆସେ) |
| | (କାଳାରାମ ଚିକେନ୍ ଚୋବାଉଥାଏ - ଭାରତ ଦୌଡ଼ିଆସେ ।) |
| ଭାରତ | କାଳାରାମ୍, ଏ କାଳାରାମ୍ । |
| କାଳାରାମ | ଓହୋଃ ଟିକିଏ ରହ, ମୁଁ ପରା ଚିକେନ୍ ଚୋବଉଛି । |
| ଭାରତ | ମୋ' ହାଇଦ୍ରାବାଦରେ ବୋମ୍ ପଡ଼ିଗଲା । |
| କାଳାରାମ | ଚିନ୍ତା କରନା । ଆତଙ୍କବାଦୀ ଆଇନକୁ ଆହୁରି କଠୋର କରାଯିବ । |

ଭାରତ — ଏଇ ଜୟପୁରରେ ବୋମ୍ ପଡ଼ିଲା ।

କାଲାରାମ — ଚିନ୍ତା କରନା, ଆତଙ୍କବାଦୀ ଆଇନକୁ ଆହୁରି କଠୋର କରାଯିବ ।

ଭାରତ — ଏଇ ଜୟପୁରରେ ବୋମ୍ ପଡ଼ିଲା ।

କାଲାରାମ — ଚିନ୍ତା କରନା, ଆତଙ୍କବାଦୀ ଆଇନକୁ ଆହୁରି କଠୋର କରାଯିବ ।

ଭାରତ — ଏଇ ଦିଲ୍ଲୀରେ ବୋମ୍ ପଡ଼ିଲା ।

କାଲାରାମ — ଆତଙ୍କବାଦୀ ଆଇନକୁ ଆହୁରି କଠୋର କରାଯିବ ।

ଭାରତ — ଏଇ, ଏଠି ବୋମ୍, ସେଠି ବୋମ୍, ବାଟରେ ବୋମ୍, ଘାଟରେ ବୋମ୍, ଘରେ ବୋମ୍, ସବୁଠି ବୋମ୍ ।

କାଲାରାମ — ଆତଙ୍କବାଦୀକୁ ଜମା ଛଡ଼ାଯିବନି ।

ଭାରତ — ଚୁପ୍, ତୁ ଆତଙ୍କବାଦୀର କିଛି କରିପାରିବୁନି । ଛାଡ୍, ଛାଡ୍ ସେ କୁର୍ସି (ଛଡ଼େଇବାକୁ ଯାଏ)

(ଏମିତି ଠେଲାପେଲା ଭିତରେ ଆଲୋକ ଲିଭିଯାଏ)

(ଦକ୍ଷିଣ ଅଞ୍ଚଳକୁ କାଲାରାମ ଦୌଡ଼ିଯାଏ, ବକାସର ଗୋଡ଼ ଧରିନିଏ । ବାମ ଅଞ୍ଚଳରେ ଭାରତ କଣାରାମକୁ କୁର୍ସିରେ ବସାଇ ଆତଙ୍କବାଦୀକୁ ଦମନ କରିବାକୁ ଅନୁରୋଧ କରେ, ଦକ୍ଷିଣ ଅଞ୍ଚଳରେ କାଲାରାମର ଅନୁରୋଧରେ ବକାସ ବମ୍ ଫିଙ୍ଗେ । ଭାରତ କଣାରାମକୁ କୁର୍ସିରୁ ଘୋଷାରିନିଏ, କାଲାରାମ ଯାଇ କୁର୍ସିରେ ବସିପଡ଼େ । କଣାରାମ ଯାଇ ବକାସର ପାଦ ଧରିନିଏ, ବକାସ ବମ୍ ଫିଙ୍ଗେ, ଭାରତ କାଲାରାମକୁ କୁର୍ସିରୁ ଘୋଷାରିନିଏ । ଏମିତି କରୁକରୁ ବକାସ ରାଗରେ ପଶିଯାଏ ବାମ ଅଞ୍ଚଳକୁ । କଣାରାମ୍ ଓ କାଲାରାମ୍ ଭାରତ ପଛରେ ଲୁଚିଯାଆନ୍ତି ।)

ବକାସ୍ — ଏୟ, ଛାଡ୍ ସେ କୁର୍ସି ।

ଭାରତ — କାହିଁକି ? ତୋ' କଥାରେ ?

ବକାସ — (ହସି) ଥରେ ହସିଦେଲେ ସାତଥର ବେହୋସ୍ ହବୁ, ମୋ' ସାମ୍ନାରେ କଥା କହୁଛୁ ?

ଭାରତ ତୁ ବୋଧହୁଏ ମୋତେ ଚିହ୍ନିନୁ, ମୋ ପରାକ୍ରମ ଜାଣିନୁ । ମୁଁ ଇଚ୍ଛାକଲେ..

ବକାସ୍ (ହସି) ତୁ, ତୋର ପୁଣି ଇଚ୍ଛା ! ଆଚ୍ଛା, ତୁ ଇଚ୍ଛାକଲେ କ'ଣ କରିପକେଇବୁ ?

ଭାରତ ତୁ ଭାବିଛୁ କି, ମୋ' ଶାସକମାନଙ୍କ ପରି ମୁଁ ହିଂଜଡ଼ା ? ହାତରେ ଚୁଡ଼ି ପିନ୍ଧି ବସିଛି ?

ବକାସ ଏୟ, ବେଶି ବକ୍‌ବକ୍ କର୍‌ନା । ମୋ' ମଗଜକୁ ପିତ ଚଢ଼ିଗଲେ..

ଭାରତ କ'ଣ କରିପକେଇବୁ ? ଶହେ କୋଟି ଲୋକଶକ୍ତିର ଅଧିକାରୀ ମୁଁ ।

ବକାସ କ'ଣ କହିଲୁ ? (ପିସ୍ତଲ କାଢ଼େ, କାଳାରାମ ଓ କଣାରାମ ଡରିଯାଇ ଭାରତକୁ ଲୁଚାଇଦେବାକୁ ଚେଷ୍ଟା କରନ୍ତି । ଭାରତ ସେମାନଙ୍କୁ ଠେଲିଦେଇ ଆଗକୁ ଆସି ।)

ଭାରତ କ'ଣ କରିବୁ ? ମାରିଲୁ ? ମାର୍, ମାର୍ ମୋତେ (ଛାତି ଦେଖାଏ)

ବକାସ (ଗୁଳି କରେ, ଭାରତ ପଡ଼ିଯାଏ । ଏମାନେ ଡରିଯାଆନ୍ତି । ବକାସ ହସେ)

ଭାରତ (ବଂଚି ଉଠେ) ଯେଉଁ ମାଟିରେ ଗଂଗା ଯମୁନା ପ୍ରବାହିତ, ହିମାଳୟ ଯା'ର ଶିରୋଭୂଷଣ, ସାଗର ଯାହାର ପଦଧୌତ କରୁଛି, ସେହି ମାଟିର ସନ୍ତାନ ତା' ମାଟି ପାଇଁ ଏମିତି, ଥରେ କାହିଁକି, ଶହେ ଥର ଶହୀଦ ହେବ (ଛାତି ଦେଖାଏ)

ବକାସ୍ ଶହୀଦ୍ ? (ଗୁଳିକରେ)

ଭାରତ (ମରିଯାଏ ପୁଣି ଉଠେ) ବକ୍ସି, ଭଗତ୍, ଆଜାଦ୍‌ଙ୍କ ରକ୍ତରେ ରଂଜିତ ଯେଉଁ ମାଟି, ସେ ମାଟିର ପୁଅ ତା' ମାଟି ପାଇଁ ହଜାରେ ଥର ଜୀବନ ଦବ (ଛାତି ପତାଏ)

ବକାସ ଆଚ୍ଛା (ଗୁଳି କରେ)

ଭାରତ (ପଡ଼ିଯାଏ, ପୁଣି ଉଠିପଡ଼ି) ଆରେ କାପୁରୁଷ, ଏମିତି ହଜାର ହଜାର ଥର ଚେଙ୍ଗିଜ୍ ଖାଁ, ନାଦିର ଶାହା, ତିମୁରଲଂ ଭଳି ଦୁର୍ଦ୍ଧର୍ଷ

| | |
|---|---|
| | ଆକ୍ରମଣକାରୀଙ୍କୁ ସାମ୍ନା କରିଛି, ଏମିତି କେତେ ହତ୍ୟାଲୁଣ୍ଠନର ଶିକାର ହେଇଛି, ତୁ ମୋତେ ମୃତ୍ୟୁର ଭୟ ଦେଖାଉଛୁ ! (ଛାତି ପତାଏ) |
| ବକାସ | ଆଚ୍ଛା ଦେଖିବି, ତୋ' ଦେହରେ କେତେ ଜୀବନ ଅଛି ? (ଗୁଳିକରେ) |
| ଭାରତ | (ପଡ଼ିଯାଇ ପୁଣି ଉଠେ) ଆରେ ଫରାସୀ, ଫିରିଙ୍ଗ୍, ଡଚ୍, ଓଲନ୍ଦାଜମାନେ ଥକିପଡ଼ିଛନ୍ତି... |
| ବକାସ୍ | ମୋତେ ସେମାନଙ୍କ ଭଳି ମୂର୍ଖ ଭାବିଛୁ କି ? (ଗୁଳିକରେ) |
| ଭାରତ | ଆରେ, ଗାନ୍ଧୀ-ଗୌତମର ଏ ମାଟି, ଏ ମାଟିରେ ଅହିଂସାର ପବିତ୍ର ମନ୍ତ୍ର ଉଚ୍ଚାରିତ । ତୋ' ହିଂସାପ୍ରଣୋଦିତ ବଂଧୁକ ଅଶୋକଙ୍କ ତରବାରି ପରି ନିଷ୍ଫଳ ହେବ । ମୋର କିଛି ବି କ୍ଷତି କରିପାରିବନି । (ଛାତି ଦେଖାଏ) |
| ବକାସ | ଆଚ୍ଛା, ଏଇ ନେ' (ପୁଣି ଗୁଳି କରେ, ଭାରତ ପଡ଼ିଯାଏ, ପୁଣି ଉଠେ, ପୁଣି ଗୁଳି, ଏମିତି ବକାସ ବାରମ୍ବାର ମାରୁଥାଏ, ଭାରତ ମରୁଥାଏ, ପୁଣି ଉଠୁଥାଏ । ଧୀରେ ଧୀରେ ବକାସ ଯେତିକି ଥକିପଡୁଥାଏ, ଭାରତ ସେତିକି ଉତ୍ସାହିତ ହୋଇ ସାମ୍ନା କରୁଥାଏ । ଶେଷରେ... ।) |
| ଭାରତ | ଉଠା, ଉଠା ବଂଧୁକ, ମାର୍ ଗୁଳି, ମାର୍ ମାର୍ (ଛାତି ଦେଖାଇ ଆଗାଏ) |
| ବକାସ | (ମାରି ମାରି ବଂଧୁକରୁ ଗୁଳି ସରିଯାଏ । ବକାସ ନିରୂପାୟ ହୋଇ ଏଣିକିତେଣିକି ଚାହିଁ) ନା ନା, ମୁଁ ପାରିବିନି, ମୁଁ ତୋତେ ମାରିପାରିବିନି । ମୋ'ବଂଧୁକରେ ଆଉ ଗୁଳି ନାହିଁ । ତୋ' ରକ୍ତରେ ମୁଁ ହୋଲି ଖେଳିପାରିବିନି । ମୁଁ ହାରିଗଲି । ମୋତେ ବଂଦୀ କର୍, ଗୁଳି କର୍, ଫାଶୀ ଦେ', ମାର୍, ଦଣ୍ଡ ଦେ', ମାର୍ ମାର୍... |
| ଭାରତ | ନା, ତୋତେ ଏମିତି ହଜାରେ ଫାଶୀ ଜେଲ୍ ଦେଲେ ବି ତୁ ଶିଖିବୁନି । ତୋତେ ଏମିତି ଦଣ୍ଡଦେବି ଯେ ତୋ' ଜୀବନସାରା ଭୁଲିବୁନି (କାଳାରାମ ଓ କାଣାରାମକୁ ଡାକି କାନରେ କହେ - |

ଉଭୟେ ବକାସକୁ ଉଠେଇନେଇ ଲଣ୍ଠା କରନ୍ତି, ଚାଦର ଘୋଡ଼ାନ୍ତି, ଚଷମା ଲଗାନ୍ତି, ବାଡ଼ି ଖଣ୍ଡେ ଧରାଇଦେଇ, ଗାନ୍ଧି ଭଳି ଠିଆକରାଇ ।)

ଭାରତ (କାଗଜ ଖଣ୍ଡେ ଦେଇ) ଏଇ ମନ୍ତ୍ର ପଢ଼ି ପଢ଼ି ତୋ' ଆଡ଼୍‌ଡାକୁ ଚାଲିଯା', ତୋ' ଗୁରୁକୁ ପଢ଼େଇବୁ ।

ବକାସ (ପଢ଼ି ପଢ଼ି) ରଘୁପତି ରାଘବ ରାଜାରାମ, ପତିତପାବନ ସୀତାରାମ (ଗାଇ ଗାଇ ଗାନ୍ଧୀଙ୍କ ଭଳି ଯାଏ, ଏଇ ସୁଯୋଗରେ କାଲାରାମ କଣାରାମକୁ ଠେଲିଦେଇ କୁର୍ସିରେ ବସିପଡୁଥାଏ । ଭାରତ କୁର୍ସି ଟାଣିନିଏ - ଉଭୟ ପଡ଼ିଯାଆନ୍ତି ।)

ଭାରତ ଚୁପ୍, ତୁମ ଭଳି ହିଂଜଡ଼ାଙ୍କୁ ଏ କୁର୍ସି ମୁଁ କେବେ ବି ଦେବିନି । ମୁଁ ଏ କୁର୍ସି ପାଇଁ ଜଣେ ସିଂହଶିଶୁର ଅନୁସନ୍ଧାନ କରିବି । ଯେଉଁଦିନ ସେ ସିଂହଶିଶୁକୁ ପାଇବି, ସେଇଦିନ ତାକୁ ଏ କୁର୍ସିରେ ବସାଇ ନିଶ୍ଚିନ୍ତ ହେବି । (କୁର୍ସିକୁ ନେଇ ଭାରତ ଚାଲିଯାଏ, କାଲାରାମ ଓ କଣାରାମ ଭକୁଆ ହୋଇ ପରସ୍ପରକୁ ଚାହାନ୍ତି ।)



## ୨୦୧୧ ଅକ୍ଟୋବର 'ଝଙ୍କାର'ରେ ପ୍ରକାଶିତ
## 'ଚୁପ୍'ର ଚରିତ୍ରମାନେ

- କାଂଗାଳି
- ଭିକାରି
- ଦରିଦ୍ର
- ଶୁକୁଟା
- ଦେବାଳିଆ
- ଘୋଷକ
- ଦାଦା
- ଓଡ଼ିଆ
- ମହିଳା
- କୋଂପାନି
- ଲିଲି
- ଘୁଷଖୋର

# ଚୁପ୍

## ପ୍ରଥମ ଦୃଶ୍ୟ

(ମଂଚଟି ପ୍ରତୀକାତ୍ମକ ହେଲେ ମଂଚନ ସହଜ ଓ ସାବଲୀଳ ହୋଇପାରିବ, ତେଣୁ ସମଗ୍ର ମଂଚଟିକୁ ତିନୋଟି ଅଂଚଳରେ ବିଭକ୍ତ କରାଇ ତିନୋଟି ଢବଲକୁ ସ୍ଥାନିତ କରାଯାଉ । ନାଟକର ଚରିତ୍ର ଓ ଦୃଶ୍ୟର ଆବଶ୍ୟକତାକୁ ଉପଲବ୍ଧି କରି ଆଲୋକର ସଂଯୋଜନା କରାଯିବା ବିଧେୟ । ସର୍ବୋପରି ମଂଚନ ପାଇଁ ନିର୍ଦ୍ଦେଶକ ସ୍ୱାଧୀନ । ସମୟ ଯେକୌଣସି ମୁହୂର୍ତ୍ତ, ଚରିତ୍ରମାନେ କାଳ୍ପନିକ ଓ ପ୍ରତୀକାତ୍ମକ । ଆଲୋକ ଆସିଲାବେଳକୁ ଦେଖାଯାଏ, କାଂଗାଳିନଗରର ବିରୋଧୀଦଳ ନେତା ବାହାପିଆ ଭିକାରି ଦାସ ପାଟି କରିକରି ଆସନ୍ତି ।)

ଭିକାରି — ଏ କାଂଗାଳିନଗରର ଶାସକ କାଂଗାଳି ଦାସ ! ବିରୋଧୀଦଳର ନେତା ବାହାପିଆ ଭିକାରି ଦାସ ଜବାବ୍ ମାଗୁଛି, ଜବାବ ଦିଅ, ଜବାବ୍ ଦିଅ । (ବିପରୀତ ଦିଗରୁ ରାଜା (ଶାସକ) କାଂଗାଳି ଦାସ ସେମିତି କହି କହି ଆସନ୍ତି ।)

କାଂଗାଳି — କାଂଗାଳିନଗରର ଶାସକ ରାଜା କାଂଗାଳି ଦାସ ଜବାବ ଦଉଛି, ଜବାବ୍ ନିଅ, ଜବାବ୍ ନିଅ ।

ଭିକାରି — କାଂଗାଳିନଗର କାଂଗାଳ ହେଲା - କାହା ସକାଶେ । କାହା ସକାଶେ ?

କାଂଗାଳି — କାଂଗାଳିନଗର ଭିକାରି ହେଲା ଯାହା ସକାଶେ, ତାହା ସକାଶେ ।

ଭିକାରି — କାଂଗାଳି ଦାସ ମୁର୍ଦ୍ଦାବାଦ୍ ।

କାଂଗାଳି — ଭିକାରି ଦାସ ମୁର୍ଦ୍ଦାବାଦ୍ ।

ଭିକାରି — ହେ କାଂଗାଳି ଦାସ ମୁର୍ଦ୍ଦାବାଦ୍ ।

କାଂଗାଳି — ହେ ଭିକାରି ଦାସ ମୁର୍ଦ୍ଦାବାଦ୍ (ଏମିତି ମୁର୍ଦ୍ଦାବାଦ୍ ଧ୍ୱନି ଦେଉ ଦେଉ ନାମ ବଦଳିଯାଏ ।)

ଭିକାରି — ଭିକାରି ଦାସ ମୁର୍ଦ୍ଦାବାଦ୍ ।

କାଂଗାଳି　　କାଂଗାଳି ଦାସ ମୁର୍ଦ୍ଦାବାଦ୍ (ଏମିତି ନାଚିଦେଇଁ, ଖଟେଇ ହେଇ ମୁର୍ଦ୍ଦାବାଦ୍ କରୁଥାନ୍ତି, ଏହି ସମୟରେ ହତାଶ ମହାନ୍ତି ଆସନ୍ତି ।)

ହତାଶ　　ଦେଖ ଦେଖ ଏ ଗୋବିନ୍ଦର ଗତି, ମୂର୍ଖେ କରନ୍ତି ରାଜନୀତି, କରନ୍ତି ନିଜ ମୁର୍ଦ୍ଦାବାଦ୍ ପୁଞ୍ଜିବାଦ ନା ସାମ୍ୟବାଦ ।(କାଂଗାଳି ଓ ଭିକାରିଙ୍କ ମନେପଡ଼ିଯାଏ)

କାଂଗାଳି　　କ'ଣ ହେଲା, ଆମର ଆରେ

ଭିକାରି　　କାଂଗାଳି ଦାସ ମୁର୍ଦ୍ଦାବାଦ୍

କାଂଗାଳି　　ଏ ବିରୋଧୀ ଦଳ ଚୁପ୍

ଭିକାରି　　ଏ ଶାସକ ଦଳ ଚୁପ୍

କାଂଗାଳି　　ତମେ ଚୁପ୍

ଭିକାରି　　ତମେ ଚୁପ୍

କାଂଗାଳି　　ତୁ ଚୁପ୍

ଭିକାରି　　ତୁ ଚୁପ୍

କାଂଗାଳି　　ଚୁପ୍

ଭିକାରି　　ଚୁପ୍

ହତାଶ　　ଚୁପ୍ ! ଚୁପ୍ ! ଚୁପ୍ !

ଚୁପ୍ ଭାଇ, ଚୁପ୍ !

ଇଏ କହୁଛି, ଚୁପ୍

ସିଏ କହୁଛି, ଚୁପ୍

ଇଏ ଖାଉଛି ମାରିଶ ଦଣ୍ଡା

ସିଏ ପିଉଛି ସୁପ୍

ଆଖି ଥାଇକି ଜଳକା ଆମେ

ପାଟି ଥାଇକି ଚୁପ୍ । (ଫ୍ରିଜ୍)



## ଦ୍ୱିତୀୟ ଦୃଶ୍ୟ

(ମିଡିଲ୍ ଜୋନ୍‌କୁ ଆଲୋକ ଆସିବାରୁ ଦେଖାଯାଏ କାଂଗାଳିନଗର ଅଧିପତି କାଂଗାଳି ଦାସ ରାଜକୀୟ ଠାଣିରେ ଆସନ୍ତି ଏବଂ ରାଜା ପ୍ରାଏ ସିଂହାସନ ଭାବି ବସି ପଡ଼ନ୍ତି, ସିଂହାସନ ନଥାଏ ତଳେ ପଡ଼ିଯାଆନ୍ତି – ଠିକ୍ ଏହି ସମୟରେ ବାହାରୁ ଶୁଣାଯାଏ-

ବାହାରୁ ସ୍ୱର : ବୀରାଧିବୀରବର ଗଧପତି ଗୌଡ଼େଶ୍ୱର ସରକାର ବାହାଦୂର ଶ୍ରୀ ସର୍ବହରା କାଂଗାଳି ଦାସ ମର୍ଦ୍ଦରାଜ କୀ ଜୟ ।

କାଂଗାଳି ଉଁ – ମ. .ର୍ଦ୍ଦ...ରା..ଜ ? ଏଇଟା କୋଉ ମର୍ଦ୍ଦାଙ୍ଗ । ରାଜା ଆସିବେ ବସିବେ, ସିଂହାସନଟାକୁ ଗାଏବ କରିଦବ ! କୁଆଡ଼େ ଗଲା କୁଆଡ଼େ ଗଲା ସେ ମନ୍ତ୍ରୀ । ହେ ମନ୍ତ୍ରୀ ସର୍ବଗିଳା ଦରିଦ୍ରବର୍ଦ୍ଧନ ! ହୋ ଦରିଦ୍ରବର୍ଦ୍ଧନ ।

(ଦୌଡ଼ିଆସନ୍ତି ମହାମନ୍ତ୍ରୀ ଦରିଦ୍ରବର୍ଦ୍ଧନ)

ଦରିଦ୍ର ଜୟ ଗଧପତି ଗୌଡ଼େଶ୍ୱର ସରକାର ବାହାଦୂର ଶ୍ରୀ କାଂଗାଳି ଦାସ ମର୍ଦ୍ଦରାଜଙ୍କର -

କାଂଗାଳି ଜୟ ।

ଦରିଦ୍ର ମହାରାଜ ମର୍ଦ୍ଦରାଜ ।

କାଂଗାଳି ଚୁପ୍ ! କହିଲା କ'ଣନା ମରଦରାଜ...ତିର୍ଲାରାଜ କୁହ, ତିରଲାରାଜ

ଦରିଦ୍ର କାହିଁକି ମହାରାଜ ?

| | |
|---|---|
| କାଂଗାଳି | ହଇଓ ସର୍ବଗିଳା ଦରିଦ୍ରବର୍ଦ୍ଧନ, ମୋ ନଗ୍ରକୁ ତ ଗିଳିଲ, ଉଆସ ଗିଳିଲ, ମୁକୁଟ ଗିଳିଲ, ଶେଷରେ ସିଂହାସନଟାକୁ ଗିଳିପକେଇଲ ! ଆଉ ଅଛି କ'ଣ, କାହାକୁ ନେଇ ମୋତେ ମହାରାଜ କହୁଛ ମର୍ଦ୍ଦରାଜ କହୁଛ ? ତିର୍କାରାଜ କୁହ ତିର୍‌ଲାରାଜ । |
| ଦରିଦ୍ର | କ'ଣ କରିବା ହଜୁର, ଦୁଃଖ ପଡ଼ିଛି । ଟିକିଏ ଧୈର୍ଯ୍ୟ ଧରିଲେ ସବୁ ଠିକ୍ ହୋଇଯିବ । |
| କାଂଗାଳି | ଫେର ଧୈର୍ଯ୍ୟ, ତମ କଥାରେ ଧୈର୍ଯ୍ୟଟାକୁ ଧରି ଧରି ହାତରେ ବିଣ୍ଡି ପଡ଼ିଗଲାଣି, ଆଉ ସେଗୁଡ଼ାକୁ ଧରିହବନି । ଆଉ ଯଦି କିଛି ଅଛି, ଧରାଅ । |
| ଦରିଦ୍ର | କ'ଣ ବା ଆଉ ଅଛି ଯେ ଧରିବେ, ମହାରାଜ ? |
| କାଂଗାଳି | ରାଜା ରାଜଦଣ୍ଡ ଧରେ, ମୋତେ ରାଜଦଣ୍ଡ ଧରଉନ ? |
| ଦରିଦ୍ର | ରାଜଦଣ୍ଡଟା ପରା ଓବାମା ପାଖରେ ବଂଧା ପଡ଼ିଛି । |
| କାଂଗାଳି | ହଉ ହେଲା । ହେଲେ, ସିଂହାସନଟାକୁ କ'ଣ କଲ ? ଟିକିଏ ବସି ହଉନି । |
| ଦରିଦ୍ର | ସିଂହାସନର ଆଗଗୋଡ଼ ଦୁଇଟା ପରା ଅନିଲ ପାଖରେ ଓ ପଛ ଗୋଡ଼ ଦୁଇଟା ମୁକେଶ ପାଖରେ ବଂଧା ପଡ଼ିଛି । |
| କାଂଗାଳି | ଆଉ ଆସନଟା ? |
| ଦରିଦ୍ର | ତିର୍କା ପାଖରେ ବଂଧା ପଡ଼ିଛି । |
| କାଂଗାଳି | ଆଉ ମୋ' ରାଜମୁକୁଟ ? |
| ଦରିଦ୍ର | କର୍ମଚାରୀଙ୍କ ଭବିଷ୍ୟନିଧି ପାଣ୍ଠିରେ । |
| କାଂଗାଳି | ତେବେ ମୋର ଅଛି କ'ଣ ? |
| ଦରିଦ୍ର | କାହିଁକି, ମୁଁ ଅଛି । |
| କାଂଗାଳି | ତେବେ ମୋର ଆଉ ଅଛି କ'ଣ ? |
| ଦରିଦ୍ର | କାହିଁକି, ମୁଁ ଅଛି । |
| କାଂଗାଳି | ତମେ ଥାଇ ମୋର ଆଉ କ'ଣଟା କରିପକେଇବ, ଦରିଦ୍ର ? |

ଦରିଦ୍ର        ଆପଣଙ୍କୁ ବଂଧା ପକେଇ ପାରିବି, ମଣିମା ।

କାଂଗାଳି        ଏଁ, ମୋତେ ବି ଶେଷରେ ବଂଧା ପଡ଼ିବାକୁ ପଡ଼ିବ ?

ଦରିଦ୍ର        କ'ଣ ଆଉ କରାଯିବ ମଣିମା, ଫାଇନାନ୍ସିଆଲ କ୍ରାଇସିସ୍‌କୁ ଫେସ୍ କରିବାକୁ ହେଲେ ପ୍ରାଣ ପର୍ଯ୍ୟନ୍ତ ଦେଇଦେବାକୁ ପଡ଼ିବ ।

କାଂଗାଳି        ନା ନା, ସର୍ବଗିଳା ଦରିଦ୍ରବର୍ଦ୍ଧନ, ତମେ ଆଉ ଏ ଦରିଦ୍ରକୁ ଏତେ ବର୍ଦ୍ଧନ କରନି ।

ଦରିଦ୍ର    :    କ'ଣ କରିବି ମଣିମା, ମୋ ଡ୍ୟୁଟି ତ ପୁଣି କରିବି ।

(ଏହି ସମୟରେ ଗୋଟେ ରଂଧା ଖୁସୁଣି ଧରି ଶୁକୁଟା ପଣ୍ଡା ଆସନ୍ତି, ଯିଏକି ମୋଟା ଶରୀର ଧରିଥାଆନ୍ତି ।)

ଶୁକୁଟା    :    ପ୍ରଣାମ ମହାରାଜ ।

କାଂଗାଳି    :    ହଁ ପ୍ରଣାମ, ମହାମନ୍ତ୍ରୀ ସର୍ବଗିଳା, ଏ ଭଦ୍ରଲୋକ କିଏ ?

ଦରିଦ୍ର        ଏ ଭଦ୍ରଲୋକ ନୁହେଁ ମଣିମା ।

କାଂଗାଳି        ଏଁ, ଅଭଦ୍ର ଲୋକଟା କିପରି ରାଜସଭାକୁ ପଶିଆସିଲା ?

ଶୁକୁଟା        କ'ଣ କହିଲ, ଅଭଦ୍ର ଲୋକ ! (ମାଡ଼ିଯାଆନ୍ତି)

ଦରିଦ୍ର        ନା ନା ।

କାଂଗାଳି    :    ଆଉ ?

ଶୁକୁଟା        ମୁଁ ଶୁକୁଟାସୁନ୍ଦର ପଣ୍ଡା । ବିରିଆନି ବିଶେଷଜ୍ଞ -

କାଂଗାଳି        ଶୁ..କୁ...ଟା.. ? ତମେ କୋଉ ଚାଉଳର ଭାତ ଖାଉଛ କିଓ ?

ଶୁକୁଟା        ଛାମୁଙ୍କ ଚାଉଳ ଛଡ଼ା ମୋତେ ଆଉ ମିଳୁଛି କ'ଣ ?

କାଂଗାଳି    :    କ'ଣ ହେଲା, ମୋ ଚାଉଳ...ମାନେ ମୁଁ ଯୋଉ ଚାଉଳ ଖାଉଛି, ତୁମେ ବି ସେହି ଚାଉଳ ଖାଉଛ ?

ଦରିଦ୍ର        ଆଜ୍ଞା ମଣିମା ।

କାଂଗାଳି        ନା, ମୋତେ ବିଶ୍ୱାସ ହଉନି ।

ଶୁକୁଟା        ମୋ ଦିହ ଛୁଉଁଛି ।

କାଂଗାଳି  କିଓ, ମୋ' ଚାଉଳର ଭାତ ଖାଇ ତମେ ଶୁକୁଟା ପଣ୍ଡା ମହାମେରୁ ଆଉ ମୁଁ ମହାମେରୁ ମହାରାଜ ପପିୟା ନନ୍ଦୀ ।

ଦରିଦ୍ର : ହବ ମଣିମା, ହବ ।

କାଂଗାଳି  କେମିତି ?

ଶୁକୁଟା  ମଣିମା, ମୁଁ ନିଜେ ରାନ୍ଧି ଖାଉଛି, ଆଉ ଆପଣ ମୋ ରନ୍ଧା ଭାତ ଖାଉଛନ୍ତି ।

କାଂଗାଳି  ଓ, ତମେ ତା'ହେଲେ ଆମ ପୂଝାରୀ !

ଶୁକୁଟା  ଖବରଦାର, ସେମିତି କହିବେନି, ଆମର ୟୁନିୟନ ଅଛି । ଆମକୁ କେହି ପୂଝାରୀ ରୋଷେଇଆ ଆଦି କଦର୍ଯ୍ୟ ସମ୍ବୋଧନ କରିପାରିବେନି ।

କାଂଗାଳି  ଆଉ ?

ଦରିଦ୍ର  ଇଏ ଆମ ପାକଶାଳା ସୁପରିଣ୍ଟେଣ୍ଡେଣ୍ଟ୍ ।

କାଂଗାଳି  ହଉ ହେଲା, ମହାଶୟଙ୍କ ଆଗମନର କାରଣ ?

ଶୁକୁଟା  ମଣିମା, ଆଜି କ'ଣ ମଣୋହି କରିବେ ?

କାଂଗାଳି  ମଣୋହି ? ତେବେ ଶୁଣ, ଆଜି ଗୋଟେ ଝାକାସ୍ ଉପରେ ଚିକେନ୍ ବିରିୟାନି ବନାଅ ।

ଶୁକୁଟା  ଚିକେନ୍ ବିରିୟାନି, ଆଉ ?

କାଂଗାଳି  ତା' ସାଂଗରେ ଭାକୁଡ଼ ମାଛର ଫ୍ରାଏ କରିବ ।

ଶୁକୁଟା : ଭାକୁଡ଼ ଫ୍ରାଏ ?

ଦରିଦ୍ର  ତା' ସହିତ ଏମିତି ନର୍ମାଲ୍ ଦହି ସାଲାଡ଼୍, ପାଏସ୍, ପାମଡ଼ ।

କାଂଗାଳି  ବାସ୍, ଆଉ ଯଦି ସୁପ୍ ଗିଲାସେ ଖଣ୍ଡେ ହେଲା ତ ହେଲା ।

ଦରିଦ୍ର : ହଁ ଶୁକୁଟା, ମୋ ମିଲ୍‌ଟା ବି ପକେଇଦବ ।

କାଂଗାଳି  କି କି, ତମ ଘରେ କ'ଣ ଖାଇବାକୁ ନାହିଁ ?

ଦରିଦ୍ର  ନାଇଁ, କଥା କ'ଣକି ମଣିମା, ଆଜି ପରା ଫାଇନାନ୍ସ କ୍ରାଇସିସ୍ କମିଟି ବୈଠକ ଅଛି, ସରୁସରୁ ଯଦି ଲଂଚ୍‌ଟାଇମ୍ ହୋଇଯାଏ, ମୋତେ ତ ଏଇଠି ଲଂଚ୍ ଖାଇବାକୁ ପଡ଼ିବନା ।

କାଂଗାଳି ନା ନା, ଲଂଚ୍ ପୂର୍ବରୁ ସବୁ ମିଟିଂ ସରିବ ।

ଶୁକୁଟା ହେଲେ ଆଜ୍ଞା, ହାଣ୍ଡିରେ ଚାଉଳ ନାହିଁ ।

ଦରିଦ୍ର ଚାଉଳ ନାହିଁ ତ ଗହମ ଆଇଟମ ବନାଅ ।

ଶୁକୁଟା ମୂଳରୁ ତ କାଠ ନାହିଁ ।

କାଂଗାଳି ଗ୍ୟାସ ଜାଳି..

ଶୁକୁଟା ଗ୍ୟାସ୍ ତ ଛଅ ମାସ ହେଲା ସରିଲାଣି ।

ଦରିଦ୍ର ଆରେ ଦେଖ, ଖୋଜ, କୋଉଠି ନା କୋଉଠି କାଠ ଥିବ-ଏତେ ବଡ଼ ରାଜପ୍ରସାଦ, ଖଣ୍ଡେ କାଠ ନାହିଁ ?

ଶୁକୁଟା ଥିଲେ କହନ୍ତିନା, ଆଜି ସକାଳେ ପରା ପଲଂକଟା ଜାଳି ଚା କଲି ।

ଦରିଦ୍ର କ'ଣ କହିଲ, ପଲଂକ ଜାଳି ଚା' କଲ ?

କାଂଗାଳି ଚା' କପେ ପାଇଁ ଗୋଟେ ପଲଂକ ଜଳିଗଲା ।

ଦରିଦ୍ର ତା'ହେଲେ ଭାତ ପାଇଁ ତ ଗୋଟେ ଜଂଗଲ ଜଳିଯିବ !

ଶୁକୁଟା ଆଜ୍ଞା, ସେମିତି କହିବେନି, ଇଏ ରାଜାଘର ଚୁଲି, ଯା' କଥା ଦୁସରା, ଇଏ ଏବେ ଦି'ଟା କବାଟ ଜଳିଲେ ପାଣି ଗରମ ହେବ, ମହାରାଣୀ ସ୍ନାନ କରିବେ ।

କାଂଗାଳି ହେ ପୂଝାରୀ ମହୋଦୟ ।

ଶୁକୁଟା ଉଁ ହୁଁ, ଭୁଲ୍ ହେଇଗଲା, ପାକଶାଳା ସୁପରିଣ୍ଟେଣ୍ଡେଣ୍ଟ୍ ।

କାଂଗାଳି ହେଲା, ତୁମେ ଯାହା ହଉଛ ହୁଅ, ମୁଁ ତମକୁ ହାତ ଯୋଡୁଛି, ତମେ ଆଉ ରନ୍ଧାରନ୍ଧି କରନି - ମୁଁ ଉପାସ ରହିଯିବି ।

ଶୁକୁଟା ଆପଣ ସିନା ଉପାସ ରହିଯିବେ, ମୁଁ ? ମୁଁ କ'ଣ ଖାଇବି ?

ଦରିଦ୍ର ତମେ କ'ଣ ଖାଇବ ?

କାଂଗାଳି କ'ଣ ଆଉ ଅଛି ଯେ ଖାଇବ, ମୋ ମୁଣ୍ଡଟା ଖାଅ ।

ଶୁକୁଟା ନାଇଁ ମଣିମା, ଆପଣଙ୍କର ଯୋଉ ମୁଣ୍ଡ ଆଉ ମୋ'ର ଯୋଉ ପେଟ, ସେ ମୁଣ୍ଡ ଏ ପେଟର କୋଉ କୋଣକୁ ହେବ, କହିଲେ ?

ଦରିଦ୍ର : ତା'ମାନେ ?

ଶୁକୁଟା ଦେଖନ୍ତୁ ଆଜ୍ଞା, ସର୍ଭିସ୍ କଣ୍ଡିସନ୍‌ରେ ଲେଖାଅଛି - ଲଂଚ୍, ଡିନର, ବ୍ରେକ୍‌ଫାଷ୍ଟ ସହ ଦରମା, ଡି.ଏ., ହାଉସ୍‌ରେଣ୍ଟ ଇତ୍ୟାଦି ଇତ୍ୟାଦି, ସେଥିରେ ଟିକିଏ ଖିଲାପ ହେଲେ ୟୁନିୟନ୍ ଇନକିଲାବ୍ କରିଦବ, ସିଧା ନାଲିପତାକା ।

କାଂଗାଳି ନା ନା, ତମ୍ଭକୁ ସବୁ ଦିଆଯିବ । ତମେ ମୋତେ ସେ ନାଲି ପତାକା ଦେଖାଅନି ।

ଶୁକୁଟା ସେଇକଥା, ତେଣୁ ଶୀଘ୍ର କିଚେନ୍ ପାଇଁ ଚାଉଳ କାଠ ଇତ୍ୟାଦି ପଠାଅ, ନହେଲେ ନାଲିପତାକା ଉଡ଼େଇଦେବି ।

କାଂଗାଳି ନା ନା, ତମେ ଯାଅ, ମୁଁ ସବୁ ବନ୍ଦୋବସ୍ତ କରୁଛି ।

ଶୁକୁଟା ଜୟ ମହାରାଜ କାଂଗାଳି ଦାସ ଜୀ (ଧାଏଁ)

କାଂଗାଳି ଇୟ ମହାମନ୍ତ୍ରୀ ସର୍ବଗିଳା ଦରିଦ୍ରବର୍ଦ୍ଧନ, ଏବେ ଉପାୟ କ'ଣ, କୁହ ?

ଦରିଦ୍ର ଚିନ୍ତା କରନ୍ତୁନି ମଣିମା, ଆଜି ଜଣେ ଅର୍ଥନୀତି ବିଷାରଦ ଆସିବେ । ସେ ସବୁ ସମସ୍ୟାର ସମାଧାନ କରିଦେବେ ।

କାଂଗାଳି ତମେ ସତ କହୁଛ ?

ଦରିଦ୍ର ଅପେକ୍ଷା କରନ୍ତୁ - ଏଇ ତ ଆସିଲା ନା କ'ଣ ?

ଦେବାଳିଆ : (ବାହାରୁ) ବୀରାଧିବୀରବର କାଂଗାଳିନଗର ଅଧିପତି ସର୍ବହରା କାଂଗାଳି ଦାସ ମର୍ଦ୍ଦରାଜଙ୍କର....

କାଂଗାଳି ଜୟ ! ମହାମନ୍ତ୍ରୀ ଏ ମହାଶୟଙ୍କର ପରିଚୟ ?

ଦେବାଳିଆ : ଆମ୍ଭେ ଡକ୍ଟର ଦେବାଳିଆ ମହାନ୍ତି ।

କାଂଗାଳି ଦେବାଳିଆ ମହାନ୍ତି, ମାନେ ? ତମେ ନିଜେ ଦେବାଳିଆ ହେଇଛ ନା ଅନ୍ୟକୁ ଦେବାଳିଆ କରୁଛ ?

ଦେବାଳିଆ : ଉଭୟ ବିଦ୍ୟାରେ ଆମ୍ଭେ ପାରଦର୍ଶିତା ଲାଭ କରିଅଛୁ ।

କାଂଗାଳି ମହାଭାଗ ଏଠି କାହିଁକି ?

ଦରିଦ୍ର		ମଣିମା, ଇଏ ଆମ ନୂଆ ଫାଇନାନ୍ସ ଆଡ୍‌ଭାଇଜର୍ ।

କାଂଗାଳି		ଫାଇନାନ୍ସ ଆଡ୍‌ଭାଇଜର୍ ପୁଣି ଦେବାଳିଆ ମହାନ୍ତି ?

ଦେବାଳିଆ :	ଡକ୍ଟର ଦେବାଳିଆ ମହାନ୍ତି ।

କାଂଗାଳି		ହେଲା ହେଲା, ଡକ୍ଟର ହୁଅ କି କବିରାଜ ହୁଅ, ଦେବାଳିଆ ତ ?

ଦେବାଳିଆ :	ଆଜ୍ଞା ।

କାଂଗାଳି		ହଇଓ ସର୍ବଗିଳା, ସହଜେ ତ ଆମ ଅର୍ଥନୀତି ଦେବାଳିଆ, ପୁଣି ଦେବାଳିଆ ମହାନ୍ତିକୁ ରଖି କି ସଂସ୍କାର କରିବ !

ଦେବାଳିଆ :	ଅନରେବଲ୍ ମହାରାଜ, ଆମ୍ଭ ନାମଟା କେବଳ ଦେବାଳିଆ, କାମ ଉପରେ ଏହାର କୌଣସି ପ୍ରଭାବ ନାହିଁ ।

କାଂଗାଳି		ଆଜ୍ଞା, ଯୋଉ ରାଜ୍ୟର ନାମ କାଂଗାଳି ନଗର, ରାଜାର ନାମ ସର୍ବହରା କାଂଗାଳି ଦାସ ଆଉ ମନ୍ତ୍ରୀର ନାମ ସର୍ବଗିଳା ଦରିଦ୍ରବର୍ଦ୍ଧନ, ସେ ରାଜ୍ୟର ଅର୍ଥନୀତି ଏତେ ବିପର୍ଯ୍ୟସ୍ତ କାହିଁକି ? କୁହ ।

ଦେବାଳିଆ :	ଅନରେବଲ୍ ମହାରାଜ୍, ସେହି ବିପର୍ଯ୍ୟସ୍ତ ଅର୍ଥନୀତିକୁ ସଜାଡ଼ିବା ପାଇଁ ମୁଁ ଯେଉଁ ଆଡ୍‌ଭାଇସ୍‌ର ପ୍ଲାନ୍ ଆଣିଛି ନା, ଯଦି ଇମ୍ପ୍ଲିମେଣ୍ଟ୍ ହୋଇଯାଏ, ତା'ହେଲେ ଏ ରାଜ୍ୟ ଛେନାଗୁଡ଼ରେ ଭାସିବ ।

କାଂଗାଳି		ସତେ !

ଦରିଦ୍ର		ମୁଁ ପରା ସେଇଥିପାଇଁ ତାଙ୍କୁ ଏ ଦାୟିତ୍ୱ ଦେଇଛି ।

କାଂଗାଳି		ହଉ ହେଲା, କ'ଣ ପ୍ଲାନ୍ ଆଣିଛ, କୁହ ?

ଦେବାଳିଆ :	ଅନରେବଲ୍ ମଣିମା, କାଂଗାଳିନଗରଟା ଏମିତି କାଂଗାଳ ହେବାର ମୁଖ୍ୟ କାରଣଟା କ'ଣ କହିପାରିବେ ?

କାଂଗାଳି		ଏଟା ଅତି ସହଜ କଥା, ଏ ପ୍ରେସ୍‌ବାଲାଗୁଡ଼ା ଠକ, ଅଳସୁଆ । ଶୀଘ୍ର ଶୀଘ୍ର ବେଶିଟଂକା ଛପେଇ ପାରୁନାହାନ୍ତି, ସେଥିପାଇଁ ଅର୍ଥର ଅଭାବ ।

ଦେବାଳିଆ :	ନା, ଏଠାକାର ପ୍ରଜାମାନେ କାମ କରନ୍ତି ନାହିଁ, କେବଳ କଥା କହି ସମୟ ଅପଚୟ କରନ୍ତି, ଫଳରେ ଉତ୍ପାଦନ ବଢ଼େନି, ସମୟ ସରିଯାଏ, ତେଣୁ ଅଭାବ ହୁଏ । ଆଉଗୋଟେ କଥା ହେଲା ।

କାମ କରନ୍ତି ଟେକ୍ସ ଦେଇ; କଥା କହନ୍ତି ବିନା ଟେକ୍ସରେ । ତେଣୁ କମ୍ କାମ କରୁଥିବାରୁ ଟେକ୍ସ କମ୍ ଦିଅନ୍ତି, କଥା ବେଶି କହି ମଧ ଟେକ୍ସ ଫ୍ରି । ଆମେ ଯଦି ତାଙ୍କ କଥା ଉପରେ ଦଶ କି ବାର ପର୍ସେଣ୍ଟ ଟେକ୍ସ ବସେଇଦିଅନ୍ତେ, ତା'ହେଲେ ପ୍ରଜାମାନେ କଥା କମ୍ କହି କାମ ବେଶି କରିବେ, ନହେଲେ ଟେକ୍ସ ଦେବେ, ଆଉ କଥା ଉପରେ ଟେକ୍ସ ବସିଗଲେ ଆମ ରାଜକୋଷ ତ ଗୋଟିଏ ମାସରେ ଫୁଲ୍ ।

କାଂଗାଳି ହଁ, ଠିକ୍ କଥା, ମହାମନ୍ତ୍ରୀ ଦରିଦ୍ରବର୍ଦ୍ଧନ, ଅବିଳମ୍ବେ ଘୋଷଣା କର ।

ଦରିଦ୍ର ହେଲେ ମଣିମା, କିଏ କେତେ କଥା କହିବ, ତା'ର ଟେକ୍ସ କେତେ ହେବ ? ଏସବୁ କେମିତି ଜାଣିବା, ହିସାବ କେମିତି ହେବ ?

କାଂଗାଳି ଡକ୍ଟର ଦେବାଳିଆ ?

ଦେବାଳିଆ : ଅନେରବଲ୍ ମହାରାଜ, ଆମେ ପ୍ରତ୍ୟେକ ନାଗରିକଙ୍କ ବେକରେ କଥାମପା ମିଟର୍ ଝୁଲେଇଦବା । ଯିଏ ଯେତେ ୟୁନିଟ୍ କଥା କହିବ, ସିଏ ସେତେ ଟଂକା ଟେକ୍ସ ଦେବ ।

ଦରିଦ୍ର ଏତେ ଲୋକଙ୍କ ପାଇଁ ଏତେ ମିଟର ଆସିବ କୋଉଠୁ ?

ଦେବାଳିଆ : ଏବେ ବହୁତ କଂପାନି ଅଛନ୍ତି । କୋଉ ଗୋଟେ କମ୍ପାନିକୁ ଦାୟିତ୍ୱ ଦେଇଦେବା ।

କାଂଗାଳି ଓ ହୋ ଦରିଦ୍ର, ତମେ ଏ ଅଯଥା ପ୍ରଶ୍ନ ପଚାର କାହିଁକି ? ଡକ୍ଟର ଦେବାଳିଆ ତ ଅଛନ୍ତି, ସିଏ ଚିନ୍ତା କରିବେ । ଆମର ଟେକ୍ସ କଲେକ୍ସନ୍ ହେଲେ ହେଲା । ଏ ଲୋକଗୁଡ଼ା ବହୁତ କଥା କହୁଛନ୍ତି । ଏଥର ଯେତେ କହିବ, ସେତେ ଟେକ୍ସ ଗଣିବ । ଆମ ଶୂନ୍ୟ ରାଜକୋଷ ପୂର୍ଣ୍ଣ ହୋଇଯିବ । ତା'ପରେ ସିଂହାସନ, ସିଂହଦ୍ୱାର, ମୁକୁଟ, ଉଆସ, ସବୁ ମୁକାଳିଆଣିବି, ପୁଣି ଚିକେନ୍ ବିରିୟାନୀ ଓ ଭାକୁଡ଼ ଫ୍ରାଏ ଖାଇ ଘୁଙ୍ଗୁଡ଼ି ମାରିବି । ଯାଅ, ଯାଅ ମନ୍ତ୍ରୀ ଦରିଦ୍ରବର୍ଦ୍ଧନ, ଅବିଳମ୍ବେ ଘୋଷଣା କର – (ଅନ୍ଧାର)



## ତୃତୀୟ ଦୃଶ୍ୟ

(ଫ୍ରଣ୍ଟ୍ ଜୋନ୍ - ଏକ ରାଜରାସ୍ତା । ଆଲୋକ ଆସିଲାବେଳକୁ ଦେଖାଯାଏ, ଘୋଷକ ଘୋଷଣା କରିକରି ଚାଲିଥାଏ ।

ଘୋଷକ — ଶୁଣ ଶୁଣ ଶୁଣ, କାଂଗାଳିନଗରର ସମସ୍ତ ଅଧିବାସୀମାନଙ୍କୁ ଏତଦ୍ୱାରା ଜଣାଇ ଦିଆଯାଉଛି କି, ଆଗାମୀ ମକରସଂକ୍ରାନ୍ତିଠାରୁ ରାଜ୍ୟର ସମସ୍ତ ପ୍ରଜାଙ୍କ ଉପରେ କଥା-ଟିକସ ଲାଗୁ କରାଯିବ । ଏଣିକି ଯିଏ ଯେତେ କଥା କହିବ, ସିଏ ସେତେ ଟିକସ ଦବ । ବିନା ଟିକସରେ କଥା କହିଲେ ଜେଲ୍ ସଂଗେ ଜୋରିମାନା ମଧ ଆଦାୟ କରାଯିବ; ଏଣୁ ପ୍ରତ୍ୟେକ ପ୍ରଜାଙ୍କୁ ଅନୁରୋଧ, ସେମାନେ ନିଜ ନିଜ ଭୋଟଗ୍ରହଣ କେନ୍ଦ୍ରକୁ ଯାଇ ବେକରେ କଥାମପା ମିଟର୍ ସଂଯୋଗ କରାଇନେବେ । ଯାହା ବେକରେ ମିଟର ନଥିବ, ତାକୁ ୩୦୨ ଦଫାରେ ଚାଲାଣ କରାଯିବ । ଆଦେଶ, ସର୍ବହରା ମହାରାଜ କାଂଗାଳି ଦାସ ମର୍ଦ୍ଧରାଜ ।

(ଏତିକିବେଳେ ଆସନ୍ତି ବିରୋଧୀଦଳର ନେତା ଭିକାରି)

ଭିକାରି — ଯେ ଯେ, କ'ଣ କହିଲୁ ? କ'ଣ କହିଲୁ ?

ଘୋଷକ — ଦେଖୁଛ,କଥା ଉପରେ ଟିକସ ବସିଗଲାଣି,ପୁଣି ଆଉଥରେ ପଚାରୁଛ !

ଭିକାରି — କ'ଣ କହିଲୁ, କଥା ଉପରେ ଟିକସ ? ବେ' କିଏ ବସେଇଲା ?

ଘୋଷକ — ନିଜେ ମହାରାଜ କାଂଗାଳି ଦାସ ମର୍ଦ୍ଧରାଜ ।

ଭିକାରି — ନା, ହୋଇପାରିବନି । ମୁଁ କ'ଣ ମରିଯାଇଛି କି ? ବିରୋଧୀଦଳ କ'ଣ ଭାଙ୍ଗିଯାଇଛି ? ଆରେ ହେ, ଏମାନେ କ'ଣ ଭାବିଲେଣି;

ବାହାପିଆ ଭିକାରି ଦାସକୁ କ'ଣ ବଗା ବୋଲି ଭାବିଛ କି ? ଗୋଟେ ଇନ୍‌କିଲାବରେ ତମ ରାଜା, ମନ୍ତ୍ରୀ, ତାଙ୍କ ଚଉଦପୁରୁଷ କଛାମୂଳ ହୁଗୁଳା କରିଦେବି । କଥା ଉପରେ ପୁଣି ଟିକସ ! ନା, ହେଇପାରିବନି ।

ଘୋଷକ — ହେଇପାରିବନି ମାନେ ହେଇଗଲାଣି ।

ଭିକାରି — ଏୟ୍ ତୁ ବାହାପିଆ ଭିକାରି ଦାସକୁ ଚିହ୍ନିନୁ । ଗୋଟିଏ ରଡ଼ିରେ ତମ ରାଜାଙ୍କ ବତିଶ ଦାନ୍ତ ଝଡ଼େଇଦେବି । ତମେ ଜଣେ ସାଧାରଣ ନାଗରିକର ଗଣତାନ୍ତ୍ରିକ ଅଧିକାର ଛଡ଼େଇନବ ? ପୁଣି ମୁଁ ଥାଉଁ ଥାଉଁ, ବିରୋଧୀଦଳ ନେତା ବାହାପିଆ ଭିକାରି ଦାସ ଥାଉଁଥାଉଁ । ମୋତେ କ'ଣବୋଲି ଭାବିଛ କି ? ତାଡ଼ିପକେଇବି, ଫାଡ଼ିପକେଇବି, କ'ଣ ଭାବିଛ କି ? ମୁଁ ଭିକାରି ଦାସ । ହେଲେ, ଭିକ ମାଗେନି, ଚାନ୍ଦା ମାଗେ ।

ଘୋଷକ — ମୁଁ କ'ଣ ଜାଣିନି ? ହେଲେ, ମୋତେ କହିଲେ କ'ଣ ହେବ ଯେ ? ଏପଟକୁ ମହାରାଜାଙ୍କ ସହିତ ମହାମନ୍ତ୍ରୀ ବି ଆସୁଛନ୍ତି, ତାଙ୍କୁ କୁହନ୍ତୁ ।

ଭିକାରି — ଆସନ୍ତୁ, ମୁଁ କ'ଣ ଡରିଛି ?

ଘୋଷକ — ବାସ୍, ଏଟା ଫାଙ୍କା ରାସ୍ତା । ଯାହା ପାରୁଛନ୍ତି, କରନ୍ତୁ । ମୁଁ ଆସେ... (ଯାଏ)

ଭିକାରି — ଆରେ ଆରେ, ଛାଡ଼ିବିନି । ସରଘରକୁ ଭାଂଗିରୁଜି ଛାରଖାର କରିଦେବି । (ଆସନ୍ତି ରାଜା ଓ ମନ୍ତ୍ରୀ)

କାଂଗାଳି — ଆରେ ! ହାଲୋ ଅପୋଜିସନ୍ ଲିଡର ଭିକାରି ଦାସ ।

ମନ୍ତ୍ରୀ — ବାହାପିଆ ଭିକାରି ଦାସ ।

କାଂଗାଳି — ହଁ, ବାହାପିଆ ଭିକାରି ଦାସ, କ'ଣ ଭିକମଗା ସରିଲାଣି ? ଓ ସରି, ଚାନ୍ଦା ଆଦାୟ ସରିଲାଣି ?

ଭିକାରି — ସେ ତେଲାତେଲି କଥା ଛାଡ଼, ଆଗ କୁହ, ପାର୍ଲାମେଣ୍ଟ୍ ବସିନି, ସର୍ବଦଳୀୟ ମିଟିଂ ବସିନି, ସଂସଦୀୟ କମିଟି ବସିନି, କେମିତି କେଉଁ ଆଇନ ବଳରେ ଏମିତି ଏକ ଭାବପ୍ରବଣ ଟିକସ ବସେଇଦେଲ ?

କାଂଗାଳି	ରାଜ୍ୟର ଅର୍ଥନୈତିକ ଦୁରବସ୍ଥା ବେଳେ ଆଉ କିଏ କାହାକୁ ପଚାରୁଛି ହୋ !

ଭିକାରି	ତା'ମାନେ.. ମୋତେ, ବିରୋଧୀଦଳର ଲୋକପ୍ରିୟ ନେତା ବାହାପିଆ ଭିକାରି ଦାସକୁ ନେଗ୍‌ଲେକ୍ଟ କରିବ, ତକୁ ନ ପଚାରି ଟିକସ ବସେଇ ଦବ ? ପୁଣି କଥା ଉପରେ !

ଦରିଦ୍ର	ଓ ହୋ, ତମେ ଏମିତି ହଉଛ କାହିଁକି ? କାଂଗାଳି ସାର୍‌ଙ୍କ ପରେ ତମେ ତ ପାବାର୍‌କୁ ଆସିବ, ସେତେବେଳେ ଆଉ ଅର୍ଥନୈତିକ ସଂକଟ ନଥିବ । ତମେ ତମର ଆରାମରେ ଭାକୁଡ଼ ଫ୍ରାଏ ଖାଇ ଘୁଙ୍ଗୁଡ଼ିମାରିବ । ଏ ଟେକ୍ସ ତମକୁ ଲାଭ ଦବ ।

ଭିକାରି	ପାବାରକୁ ଆସିବି । କେମିତି ? କଥା କହି ଭାଷଣ ଦେଲେ ସିନା ? ତମେ ତ କଥା ଉପରେ ଯେଉଁ ପରିମାଣରେ ଟେକ୍ସ ବସେଇଲଣି, ଆଉ କ'ଣ ଭାଷଣ ଦେଇହବ ! ନା, ତମକୁ ଜବାବ ଦେବାକୁ ହେବ । ଆଜିଠାରୁ ବନ୍ଦ୍ ହରତାଳ ଷ୍ଟ୍ରାଇକ୍, ରେଲରୋକ !

କାଂଗାଳି	ହାଁ ହାଁ, ରୁହ ରୁହ, ହେ ବାହାପିଆ, ଟିକେ କଥାକୁ ସେ କଥାଗୁଡ଼ା କାହିଁକି କହ ?

ଭିକାରି	ବିରୋଧୀଦଳ ହାତରେ ଆଉ କ'ଣ କାର୍ଯ୍ୟକ୍ରମ ଅଛି ଯେ ! ସଂବିଧାନ ତାଙ୍କୁ ଆଉ କି କ୍ଷମତା ଦେଇଛି ?

କାଂଗାଳି	ହେଲୋ ହେଲୋ, ମନ୍ତ୍ରୀ ଦରିଦ୍ରବର୍ଦ୍ଧନ, ପଲିଟିକ୍ସବାଲାଙ୍କ ଉପରେ ଟେକ୍ସ ବସେଇଲେ ସେମାନେ ଘୋର ବିରୋଧ କରିବେ । ଦେଶରେ ତ ଯାହା ବିରୋଧ କରିବେ, ପାର୍ଲାମେଣ୍ଟ ଚଳେଇଦେବେନି ।

ଦରିଦ୍ର	ଏଇ ସୁଯୋଗରେ ସବୁ ବିରୋଧୀଦଳ ଏକଜୁଟ ହୋଇଯାଇ ନୋକନଫିଡେନ୍ସ ମୋସନ୍ ଆଣିପାରନ୍ତି ।

କାଂଗାଳି	ତା'ହେଲେ ପଲିଟିକ୍ସ ଉପରୁ ଟେକ୍ସ ଉଠେଇଦବା !

ଦରିଦ୍ର	ଯେସ୍ ସାର୍ ।

କାଂଗାଳି	ହେଲୋ ଭିକାରି ଜୀ, ଆପଣଙ୍କ କଥା ରହିଲା, ଆମେ ପଲିଟିକ୍ସ ଉପରୁ ଟେକ୍ସ ଉଠେଇଦେଲୁ । ଏଥର ବିନା ଟିକସରେ ଯେତେ ଭାଷଣ ଦଉଛ ଦିଅ ।

ଭିକାରି ହଁ, ଇଏ ଗୋଟେ କଥା ହେଲା, ଏଥର ଯାହା ଉପରେ ଯେତେ ଟେକ୍ସ ବସଉଛ ବସାଅ । ମୁଁ, ମୁଁ କ'ଣ, ଆମ ବିରୋଧୀଦଳ ଟିକିଏ ବି ଅବଜେକ୍‌ସନ୍ କରିବନି । ଆଉ ଡର କାହାକୁ ? ମୁଁ ଅଛି, ପାର୍ଲାମେଣ୍ଟରେ ମୁଁ ପୂରା ସମର୍ଥନ ଦେବି । ଯାଅ, ଆଗେଇଯାଅ ।

କାଂଗାଳି ଆଜ୍ଞା ଧନ୍ୟବାଦ । ଦରିଦ୍ର, ଧନ୍ୟବାଦ ଦିଅ ।

ଦରିଦ୍ର ବିରୋଧୀଦଳକୁ, ତା'ର ବୈପ୍ଳବିକ ନେତୃତ୍ୱକୁ ଧନ୍ୟବାଦ ।

ଭିକାରି ଥ୍ୟାଙ୍କ୍ ୟୁ, ଥାଙ୍କ୍ ୟୁ । (ଯାଆନ୍ତି)

କାଂଗାଳି କ'ଣ ହେଲା, ଦରିଦ୍ର ? କେମିତି ସମସ୍ୟାକୁ ଖାଲି ଫୁଟ୍‌କି ବଜେଇ ଟେକଲ୍ କରିଦେଲ ।

ଦରିଦ୍ର ଏତେ ଖୁସି ହୋଇଗଲା ଯେ ଓଡ଼ିଆର ଉତ୍ତର ଇଂରାଜିରେ ଦେଇଗଲା । ଇଂରାଜି (ମନେପକାଇ) ସାର୍ ଏ ଇଂରାଜିଭାଷା ଗୋଟେ ସମସ୍ୟା ସୃଷ୍ଟିକରିବ ।

କାଂଗାଳି କାହିଁକି ?

ଦରିଦ୍ର ଆମର ଇଣ୍ଟରନେସନାଲ୍ ରିଲେସନ୍‌ସ ତ ଏଇ ଇଂରାଜିଭାଷା ମାଧ୍ୟମରେ । ଇଂରାଜିଭାଷା ଉପରେ ଟେକ୍ସ ପଡ଼ିଲେ ଫରେନ୍ ପଲିସି୍ ଆମର ଆଫେକ୍ଟେଡ୍ ହୋଇଯିବ ।

କାଂଗାଳି ତା'ହେଲେ ତମେ କହୁଛ, ଇଂରାଜି ଭାଷାଟାକୁ ଟେକ୍ସ-ଫ୍ରି କରିଦେବା

ଦରିଦ୍ର ନକଲେ ବଦନାମ ହୋଇଯିବା ।

କାଂଗାଳି ଠିକ୍ ଅଛି, ଇଂରାଜିଭାଷାରେ କଥା କହିଲେ ଟେକ୍ସ ଦେବାକୁ ପଡ଼ିବନି, କିନ୍ତୁ...

ଦରିଦ୍ର କ'ଣ ହେଲା ?

କାଂଗାଳି ଆଦିବାସୀ ହରିଜନ ସଂଖ୍ୟାଲଘୁ-ଏମାନେ ତ ଆମ ଭୋଟ୍ ବ୍ୟାଙ୍କ, ସେମାନଙ୍କ ଭାଷା ଉପରେ ଯଦି ଟେକ୍ସ ବସେ....

ଦରିଦ୍ର ହୁଲୁସ୍ଥୁଲୁ କରିଦେବେ ।

କାଂଗାଳି ତା'ହେଲେ କ'ଣ କରିବା ?

| | |
|---|---|
| ଦରିଦ୍ର | କିଛି ଗୋଟେ କରନ୍ତୁ, ନହେଲେ ଲୋକହସା ତ ହେବେ, ହାତରୁ ପାବାରଟା ଯିବ । |
| କାଂଗାଳି | ହଁ, ତାଙ୍କ ଭାଷା ଉପରୁ ଟେକ୍ସ ଉଠେଇଦିଅ । (ଏହି ସମୟରେ ଦାଦା ପାଟି କରିକରି ଆସେ) |
| ଦାଦା | (ଚିତ୍କାର କରି) କାହିଁ ? କୁଆଡ଼େ ଗଲା ସେ ଶଳା କାଂଗାଳି ଦାସ ? (ପହଞ୍ଚି) ଏଇ ତ, ଏ ରାଜା ! କଥା ଉପରେ ଟେକ୍ସ ବସେଇଲା କିଏ ? ଏ ଏ ମନ୍ତ୍ରୀ, ଦରିଦ୍ର ତୁହି, ତୁହି ବସେଇଛୁନା ? ଏଁ । |
| କାଂଗାଳି | ଯେ ! ଯେ ବାପା, ଯେ ଦାଦା । |
| ଦାଦା | କିଛି ଶୁଣିବିନି, ଭୁଜାଲି ପେଲିଦେବି, ଚାକୁ ଚଲେଇଦେବି । ବେ ମୋତେ କ'ଣ ଭାବିଲ କି ? ଶଳା, ଗାଳି ନଦେଲେ, ଛୁରୀ ନ ଚଲେଇଲେ, ମୋତେ ନିଦ ହୁଏନି କି ଭୋକ ହୁଏନି । |
| ଦରିଦ୍ର | ସାର୍, କିଛି ଗୋଟେ କରନ୍ତୁ । |
| ଦାଦା | ହାଣିଦେବି, କାଟିଦେବି । |
| କାଂଗାଳି | ଯେ ଯେ ବାପା, ଦାଦା ରହ ରହ, ତୋ' କଥା ବୁଝିବା । |
| ଦାଦା | ବୁଝିବା କ'ଣ, ମୁଁ କୋଉ ଭଦ୍ର ଭାଷାରେ ଗାଳିଦଉଛି କି ? |
| କାଂଗାଳି | ନା ନା, ହେଲା, ଆମେ ଅଭଦ୍ର ଭାଷା ଉପରୁ ଟେକ୍ସ ଉଠେଇଦେବୁ । |
| ଦାଦା | ଭଦ୍ର ହେଉ କି ଅଭଦ୍ର ହେଉ, ଗାଳି ଟେକ୍ସ-ଫ୍ରି । କିଓ, ଜଣେ ଟେକ୍ସ ଦେଇ ଗାଳି ଦବନା ? |
| ଦରିଦ୍ର | ନା ନା । |
| ଦାଦା | ଆଉ ଗାଳି ଯଦି ଉଠିଯାଏ, ଆମକୁ ମାନିବ କିଏ ? |
| କାଂଗାଳି | ହେଲା, ବାପା, ଏ ଦାଦା, ତୁ ଯେତେ ଗାଳିଦଉଛୁ ଦେ - ଟେକ୍ସଫ୍ରି । |
| ଦାଦା | ଆଉ ? ହୁଁ, ଖବରଦାର୍ ! ଟେକ୍ସ ବସେଇବା ଆଗରୁ ଶହେଥର ଚିନ୍ତାକରିବ । |
| କାଂଗାଳି | ନାଇଁରେ, ତୋ' ପାଇଁ ଆଉ ଶହେଥର ଅଧିକ ଚିନ୍ତା କରିବା । |
| ଦାଦା | ହଁ, ନହେଲେ ଭୁଜାଲି ପେଲିଦେବି, ହଁ (ଯାଏ) । |

କାଂଗାଳି	ତୁ ବାପା ଟେକ୍ସ ନଦେ', ଦରକାର ପଡ଼ିଲେ ନେ' । ସେ ଭୁଜାଲି ଫୁଜାଲି ଦେଖାନା । ଓ ହୋ... ।

ଦରିଦ୍ର	ମଣିମା, ପଳେଇଯିବା ଚାଲନ୍ତୁ, ନ ହେଲେ ପୁଣି କିଏ ଧରିବ ।

କାଂଗାଳି	ହଁ ହଁ, ପଳେଇ ଚାଲ । (ଜଣେ ମହିଳା ଆସେ)

ମହିଳା	ପଳେଇଯିବ ? କୁଆଡ଼େ ପଳେଇବ ? ଓ, ତମେ ରାଜା କାଂଗାଳି ଦାସ ନା ?

ଦରିଦ୍ର	: ହଁ, ମହାରାଜ ସର୍ବହରା କାଂଗାଳି ଦାସ ମର୍ଦ୍ଦରାଜ ।

ମହିଳା	ମର୍ଦ୍ଦରାଜ ନା ତିର୍ଲୋରାଜ ।

କାଂଗାଳି	ନା ମାଡାମ୍, ଆମେ ମର୍ଦ୍ଦରାଜ ।

ମହିଳା	କଥା ଉପରେ ଟେକ୍ସ ବସେଇଛି କିଏ ? ତମେ ତ ?

ଦରିଦ୍ର	ନାଇଁ ମାଡାମ୍, କଥା କ'ଣକି...

ମହିଳା	ତୁମେ ଚୁପ୍ କର, କଥା ଉପରେ ଟେକ୍ସ ବସେଇ ଆହୁରି କଥା କହୁଛ !

କାଂଗାଳି	ନାଇଁ ମାଡାମ୍, ରାଜ୍ୟର ଅର୍ଥନୈତିକ...

ମହିଳା	ହ୍ୱାଟ୍, ଚୁଲିକୁ ଯାଉ ତମ ରାଜ୍ୟ । ଆମେ ମହିଳା - ସବୁବେଳେ ଗପିବା, କଥା କହିବା, ବିଶେଷକରି ପରଚର୍ଚ୍ଚା କରିବାରେ ଆମର ଆନ୍ତର୍ଜାତୀୟ ଖ୍ୟାତି ରହିଛି । ଆମକୁ ତ ଅର୍ଥନୈତିକ କ୍ଷମତା ଦେଇନ, ଆମେ ଟେକ୍ସ ଦେବୁ କେମିତି ? ଆଉ ଟେକ୍ସ ନଦେଲେ କଥା କହିପାରିବୁନି । ଆଉ ଆମେ କଥା ନ ହେଲେ ଆମର ସେ ଆନ୍ତର୍ଜାତୀୟ ଖ୍ୟାତି ରହିବ ତ ?

ଦରିଦ୍ର	ଗପିବାରେ, ପରଚର୍ଚ୍ଚା କରିବାରେ, ଆପଣମାନଙ୍କର....

ମହିଳା	ଆନ୍ତର୍ଜାତୀୟ ଖ୍ୟାତି ରହିଛି । ତା'ଛଡ଼ା, ନାରୀମାନେ ହେଲେ ସମାଜର ମେରୁଦଣ୍ଡ, ଜାତୀୟ କର୍ଣ୍ଣଧାର, ଦେଶର ମୁଖ୍ୟ ସ୍ରୋତ, ଆମ ଉପରେ ଟେକ୍ସ ?

କାଂଗାଳି	ହେଲା ହେଲା ମାଡାମ୍, ମହିଳାମାନଙ୍କୁ ଟେକ୍ସ-ଫ୍ରି କରିଦିଆଗଲା ।

| | |
|---|---|
| ମହିଳା | ସେଇକଥା କୁହ । |
| ଦରିଦ୍ର | ହଁ ହଁ, ଆଜିଠାରୁ ମହିଳାମାନେ ଟେକ୍ସ-ଫ୍ରି । |
| ମହିଳା | ଆଉ ? (ମନେପଡ଼େ) କ'ଣ କହିଲ, ମହିଳାମାନେ ଟେକ୍ସ-ଫ୍ରି ? ମୁହଁ ସମ୍ଭାଳି କଥା କୁହ, ନହେଲେ ଏହି ହିଲ୍‌ବାଲା ସେଣ୍ଡଲ୍.... |
| କାଂଗାଳି | ନାଇଁ ଆଜ୍ଞା, ଆପଣଙ୍କ କଥା ଟେକ୍ସ-ଫ୍ରି । |
| ମହିଳା | ନହେଲେ ଲଙ୍କାକାଣ୍ଡ କରିଦେବି । ଆରେ... ମହିଳାମାନଙ୍କୁ କ'ଣ ଭାବିଛଣିକି - ହାଁ ! (ଯାଏ) |
| କାଂଗାଳି | ମହାମନ୍ତ୍ରୀ ଦରିଦ୍ରବର୍ଦ୍ଧନ ! |
| ଦରିଦ୍ର | ମହାରାଜ ଗରିବଗଂଜନ (ଆସେ ଓଡ଼ିଆ ଦାସ) |
| ଓଡ଼ିଆ | ଆଜ୍ଞା, ପ୍ରଣାମ ମହାଭାଗ । |
| କାଂଗାଳି | ଆଁ, ତୁ କିଏରେ ? |
| ଓଡ଼ିଆ | ଆପଣଙ୍କ ଅଧୀନସ୍ଥ ପ୍ରଜା ଓଡ଼ିଆ ଦାସ,<br>ଓଡ଼ିଶାରେ କରୁଛୁ ବାସ<br>ପଢ଼ିଆରେ କରୁଛୁ ଚାଷ<br>କିନ୍ତୁ ଓଡ଼ିଆ ମୋ ମାତୃଭାଷ |
| କାଂଗାଳି | ଯାହା କରୁଛୁ, ସବୁ ଠିକ୍ କରୁଛୁ ? |
| ଓଡ଼ିଆ | ମୋ କଥା ଉପରେ ଏମିତି ଟିକସ ବସାଉଛ କାହିଁକି ? |
| ଦରିଦ୍ର | ଏଟା ଗୋଟେ ନୂଆ ଆଇନ ହୋଇଛି । ତୁ କାମ ନକରି କେବଳ କଥା କହୁଛୁ, ତେଣୁ କାମ କରିବା ପାଇଁ କଥା ଉପରେ ଟିକସ । |
| ଓଡ଼ିଆ | କିନ୍ତୁ ଇଂରାଜିରେ ଟିକସ ନାହିଁ, ଉର୍ଦ୍ଦୁରେ ଟିକସ ନାହିଁ, ଅଲଟିକ୍‌ରେ ଟିକସ୍ ନାହିଁ, ଦାଦାଙ୍କୁ ଟିକସ୍ ନାହିଁ, ଦିଦିଙ୍କୁ ଟିକସ ନାହିଁ । ଆଉ ମୁଁ ଗରିବ ଓଡ଼ିଆ, ଓଡ଼ିଶାରେ ରହିଲି ବୋଲି, ଓଡ଼ିଆରେ କହିଲି ବୋଲି ଟିକସ ଦେବି ? |
| କାଂଗାଳି | ଦବୁ ମାନେ ନିଶ୍ଚୟ ଦବୁ, ଅଲବତ୍ ଦବୁ, ନଦେଲେ ଜିଅଲ ଯିବୁ, ଫାଶୀ ପାଇବୁ । |

ଦରିଦ୍ର — ଆରେ ଓଡ଼ିଆ ତୋ ମାତୃଭାଷା, ତୁ ମାତୃଭାଷାରେ କଥାକହିବାର ସୁଯୋଗ ପାଉଛୁ, ଟେକ୍ସ ଦବୁନି କ'ଣ ମୁଫତରେ କଥାହବୁ ?

କାଂଗାଳି — ଦୁଇଗୁଣ ଟେକ୍ସ ଦବୁ, ଦବାକୁ ବାଧ୍ୟ ।

ଓଡ଼ିଆ — ଆଜ୍ଞା...ଦୁଇଗୁଣ !

ଦରିଦ୍ର — ବେଶି କହିଲେ ତିନିଗୁଣ, ଚାରିଗୁଣ ।

କାଂଗାଳି — ଦଶଗୁଣ ଆଦାୟ ହେବ । (ଯାଆନ୍ତି ରାଜା ଓ ମନ୍ତ୍ରୀ)

ଓଡ଼ିଆ — ଭଲା କଥା, ସମସ୍ତଙ୍କୁ ଟେକ୍ସ ଫ୍ରି, ଆଉ ଓଡ଼ିଆଙ୍କ ଉପରେ ଦୁଇଗୁଣରୁ ଦଶଗୁଣ ! ଆରେ ଭାଇ ଓଡ଼ିଆର ଦୋଷ କ'ଣ ? (ଅନ୍ଧାର)



## ଚତୁର୍ଥ ଦୃଶ୍ୟ

(ଲେଫ୍‌ଟ ଜୋନ୍‌କୁ ଆଲୋକ ଆସେ । ଦେଖାଯାଏ ଡକ୍ଟର ଦେବାଳିଆ ଏବଂ କୋଂପାନି ବାହାଦୂର କଥାହୋଇ ଆସନ୍ତି ।

ଦେବାଳିଆ   ନୋ ନୋ, ଏ ମିଟର ଠିକ୍ ନୁହଁ । ଏଥିରେ ଲିକେଜ୍ ଅଛି, ବାଇପାସ୍ କରିହେବ । ଟାମ୍ପରିଂ କରିହେବ, ନୋ ନୋ ।

କୋଂପାନି   ଓ ଡକ୍ଟର ଦେବାଳିଆ, ଆପଣ ତ ଲେଫ୍ଟରାଇଟ୍ ଚାହୁଁନାହାନ୍ତି ।

ଦେବାଳିଆ   ଲେଫ୍ଟରାଇଟ୍ ?

କୋଂପାନି   ଓ ଡକ୍ଟର ମହାନ୍ତି - ଆମେ ତ ପୂରା ଭୁଲିଯାଇଛୁ । ଆଁମ କୋଂପାନି ଆପଣଙ୍କ ପାଇଁ ଗୋଟେ ପ୍ରେଜେଣ୍ଟେସନ୍ ପଠାଇଥିଲା ।

ଦେବାଳିଆ   ପ୍ରେଜେଣ୍ଟେସନ୍ ?

କୋଂପାନି   ଏଇ ଦେଖନ୍ତୁ (ଗୋଟିଏ କଲମ ଦିଅନ୍ତି)

ଦେବାଳିଆ   ହଇଓ, ମୁଁ କ'ଣ ପିଲାଟେ ହୋଇଛି ଯେ ମୋତେ ପେନ୍ ଦେଇ ଭୁଲେଇଦଉଛ !

କୋଂପାନି   ସାର୍, ଏ ଏମିତି କମନ୍ ପେନ୍ ନୁହେଁ । ୟା'ଭିତରେ କ୍ୟାମେରା ଅଛି । ଏଠି ଫୋନ୍ ଅଛି । ଏପଟେ ଗୀତ ଶୁଣିବା ପାଇଁ ରେଡିଓ ସିଷ୍ଟମ ଅଛି ସାର୍ ।

ଦେବାଳିଆ   : ଓକେ ଓକେ, ମୁଁ ଏଇଟାକୁ ଗ୍ରହଣ କଲି । ହେଲେ.. ଆପଣ ଆମ କୋଂପାନି ମିଟର୍‌ଟା ପର୍‌ଚେଜ୍ କରିନିଅନ୍ତୁ, ଟ୍ୱେଣ୍ଟି ପରସେଣ୍ଟ୍ ଦିଆଯିବ ।

| | |
|---|---|
| ଦେବାଳିଆ | ନା ନା, ଏ ମିଟରରେ ସେମିତି କିଛି ଖାମିୟା ନାହିଁ, ଠିକ୍ ଅଛି । |
| କୋଂପାନି | ଆପଣ ଅର୍ଡରଟା କରେଇଦିଅନ୍ତୁ, ତା'ପରେ ଆମେ ଆପଣଙ୍କୁ ଫରେନ୍ ଟୁର୍ ପାଇଁ, ଉଇଥ୍ ଫେମିଲି, ଏରେଞ୍ଜ୍ କରିଦବୁ । |
| ଦେବାଳିଆ | ଓକେ, ତମ ଅର୍ଡର ହୋଇଗଲା । |
| କୋଂପାନି | ଥ୍ୟାଙ୍କ୍ ୟୁ ସାର୍, ଥ୍ୟାଙ୍କ ୟୁ । (ଅଂଧାର) |



## ପଞ୍ଚମ ଦୃଶ୍ୟ

(ରାଇଟ୍ ଜୋନ୍‌କୁ ଆଲୋକ ଆସେ । ଓଡ଼ିଆ ଦାସ ବେକରେ ଏକ ମିଟର ବାନ୍ଧି ଚୁପିଚୁପି ଆସେ । ଏଣେତେଣେ ଚାହେଁ – କାହାରିକୁ ନ ପାଇ ଡାକେ ।

ଓଡ଼ିଆ — ଲିଲି....ଲିଲି....ଏ ଲି...ଲି...(ଲିଲି ଆସେ)

ଲିଲି — ଚୁପ୍ ! ଚୁପ୍ ! ଚୁପ୍ !

ଓଡ଼ିଆ — ଲିଲି, ଆଇ ଲଭ୍ ୟୁ ।

ଲିଲି — ଆଁ ଲଭ୍ ? ବେକରେ ମିଟର ବୁଲୁଛି, ଦିଶୁଛି ତ ? ଯେତେ କହୁଥିବ ସେତେ ଟେକ୍ସ ।

ଓଡ଼ିଆ — ଇଂଲିସ୍‌କୁ ନୋ ଟେକ୍ସ

ଲି — ଆଏଁ, ତମେ ଇଂଲିସ୍ ଶିଖିଗଲଣି ?

ଓଡ଼ିଆ — ଆଉ ତୋ ସାଂଗରେ ଭଲକି କଥା ପଦେ ହେଇପାରୁନି । ମିଟର ଖାଲି ଘାଏଁ ଘାଏଁ ଘୂରିଯାଉଛି । ଓ୍ୱ ସେଡ୍ ସେଡ୍ । ମାଇଁ ମିଟର ଇଜ୍ ଟର୍ଣ୍ଣ, ଟର୍ଣ୍ଣ ଏଣ୍ଡ ଟର୍ଣ୍ଣିଙ୍ଗ ।

ଲିଲି — ଆଉ ଓଡ଼ିଆରେ କହିପକଉଛ, ମିଟର ଘୂରିବନି । ଇଂଲିସ୍‌ରେ କହୁନ ?

ଓଡ଼ିଆ — ଆଇ ହ୍ୱାଟ୍ ଡୁ ? ହ୍ୱାଟ୍ ଡୁ ? ତୋତେ ଦେଖିଲେ ପାଟିରୁ, ନା ନା ମାଉଥିରୁ, ଓଡ଼ିଆ ଖାଲି କମିଂ ଆଉଟ୍ କମିଂ ଆଉଟ୍ କମିଂ ଆଉଟ୍ ।

ଲିଲି — ଆ ହା ହା ରସିକନାଗର, ଦିନ ବାରଟାରେ ମୋ ପାଇଁ ଜାଳିଛ ଜାଗର ।

ଓଡ଼ିଆ ଲିଲି କମ୍ କମ୍ କମ୍ ।

କମ୍ ଡିଅର, କମ୍

ଘରଟାକୁ ଆମେ ବନେଇଦବା

ଲଭ୍‌ର ଗୋଟେ ହୋମ୍ ।

ଲିଲି ଆ ହା ହା ପ୍ରିୟତମ, ସତରେ ତମେ ମତେ ପ୍ରେମ କର ?

ଓଡ଼ିଆ ଆରେ ପ୍ରେମ ତ ଗୋଟେ ଗେମ୍

ଏଥିରେ ନଥାଏ ଶେମ୍

ଗେମ୍‌ରେ ଖେଳି ନେମ୍ କମେଇ

ବଢ଼େଇବା ଆସ ଫେମ୍

ଲିଲି ତମେ ମତେ ସତରେ ଏତେ ଭଲପାଅ ?

'ଓଡ଼ିଆ ପ୍ରାଣଭରି, ପ୍ରାଣଭରି ଭଲପାଏ ।

ଲିଲି ମୋତେ ବିଶ୍ୱାସ ହେଉନି ।

ଓଡ଼ିଆ କ'ଣ କରିବି, କ'ଣ କଲେ ମୋତେ ବିଶ୍ୱାସ କରିବ ?

ହାଣିଦେବି, ହାତ ଗୋଡ଼ କାଟିଦେବି, ଚିରିଦେବି ଛାତି ମୋର, ପିଇ ଦେବି ବିଷ ।

(ଏହି ସମୟରେ ମିଟର ରିଡର୍ ଘୁଷଖୋର ସାହୁ ଦୌଡ଼ିଆସେ)

ଘୁଷଖୋର ଆଁ ହାଁ ହାଁ, ରୁହ ବଂଧୁ ରୁହ, ଚେକ୍‌ଟା ଦେଇସାରିକି ବିଷ ପିଅ ।

ଓଡ଼ିଆ ତମେ...ମାନେ ଆପଣ...ସେଡ୍ ସେଡ୍ ମାନେ ୟୁ ଆର୍ ହୁ ? ହୁ ?

ଲିଲି ମାନେ ଆପଣ କିଏ ?

ଘୁଷ୍‌ଖୋର୍ ଓ..ଆମେ ହେଲୁ ମିଟର ରିଡର୍ ଘୁଷଖୋର ସାହୁ ।

ଓଡ଼ିଆ ମୋ ପାଖରେ ସେଡ୍, ମାଇଁ ପାଖରେ ହ୍ୱାଟ୍ ୱାର୍କ ?

ଘୁଷଖୋର ସରକାର ଆପଣଙ୍କ ବେକରେ ମିଟର ଲଗେଇଛନ୍ତି, ମୋତେ ଏଇ ଟର୍ଚ୍ଚ ଦେଇଛନ୍ତି । ମୁଁ ମିଟରେ ପଢ଼ିକି ବିଲ୍ ଦେବି । ଆପଣ ଚେକ୍ ଦେବେ ।

ଓଡ଼ିଆ ଓ ଗିଭ୍ ଗିଭ୍, ୱେଟ୍ କର ।

ଘୁଷ୍‌ଖୋର୍ ୱେଟ୍ କରିବି ? ଆପଣ ପ୍ରେମରେ ବିଭୋର ହୋଇ ଯେମିତି ବିଷ ଖାଇବା ପର୍ଯ୍ୟନ୍ତ ଚାଲିଗଲେ, ମୁଁ ଭାବିଲି, ଲୋକଟା ଯଦି ବିଷ ଖାଇଦବ, ତ'ହେଲେ ଟେକ୍ସ ଦବ କିଏ ?

ଓଡ଼ିଆ ଓ ତମେ ଟେକ୍ସବାଲା ?

ଘୁଷ୍‌ଖୋର୍ ଆପଣଙ୍କର ହଜାରେ ଟଂକା ଟେକ୍ସ ହୋଇଗଲାଣି ।

ଓଡ଼ିଆ ଏଁ, ହଜାରେ ଟଙ୍କା !

ଘୁଷ୍‌ଖୋର୍ :. ଆଉ, ଇଏ ଟାଇନା ମିଟର ଖାଲି ଘାଏଁ ଘାଏଁ ଘୂରୁଛି, ଓଠ ଖୋଲିଲା ବେଳକୁ ଖାଲି ଉଠିଲା ।

ଓଡ଼ିଆ ଏତେ ଟଂକା ଏବେ କଉଠୁ ପାଇବି ?

ଲିଲି ଆଉ ପ୍ରେମ କ'ଣ ମୋଫତରେ କରିବ ?

ଘୁଷ୍‌ଖୋର୍ ସାର୍, ଚିନ୍ତା କରନ୍ତୁନି, ମୋ ନାଆଁ ତ ଘୁଷ୍‌ଖୋର୍ ସାହୁ । ଆପଣ ଯଦି ମୋତେ ଘୁଷ୍ ଦେଇଦେବେ, ତା'ହେଲେ ଏ ମିଟରକୁ ମୁଁ ଏମିତି ବାଗରେ ବାଗେଇଦେବି ଯେ ମିଟର ଘୂରିବ, ହେଲେ ଉଠିବନି । ଆଉ ଯଦି ଉଠିବ, ପଛେଇଦବାର ବାଟ ମଧ ଅଛି । କୁହନ୍ତୁ, ମାତ୍ର କୋଡ଼ିଏ ପରସେଣ୍ଟ୍ ଲାଞ୍ଚ ।

ଓଡ଼ିଆ ଏ କଥାଟା ସେହିଦିନରୁ କହୁନ, ମୁଁ ଖାଲି ତୁଚ୍ଛାଟାରେ ଚିନ୍ତା କରୁଛି ।

ଘୁଷ୍‌ଖୋର୍ ଘୁଷ୍ ଦିଅନ୍ତୁ - ନିଶ୍ଚିନ୍ତରେ ରୁହନ୍ତୁ । (ଅଂଧାର)



## ଷଷ୍ଠ ଦୃଶ୍ୟ

(ମିଡିଲ ଜୋନ୍‌ରେ ରାଜା ବସିଥାନ୍ତି, ମନ୍ତ୍ରୀଙ୍କ ସହିତ ହିସାବ ସମୀକ୍ଷା କରୁଥାଆନ୍ତି)

କାଂଗାଳି — କୁହ ଘୁଷ୍‌ଖୋର୍ ସାହୁ, ଆମ ରେଭିନ୍ୟୁ ଜମା ଖର୍ଚ୍ଚର ହିସାବ କର ।

ଘୁଷ୍‌ଖୋର୍ — ମଣିମା, ଆମର ଏ ମାସରେ ୭୦ଲକ୍ଷ ୪୫ହଜାର ୫୫୨ଟଙ୍କା ଟେକ୍ସ୍ ଆଦାୟ ହୋଇଛି ।

କାଂଗାଳି — ଏଁ, କ'ଣ କହିଲ, ୭୦ଲକ୍ଷ ୪୫ହଜାର ୫୫୨ ଟଙ୍କା ? ଗୋଟେ ମାସରେ ? ତମେ କ'ଣ କହୁଛ, ଘୁଷଖୋର୍ ?

ଘୁଷ୍‌ଖୋର୍ — ୟେସ୍ ସାର୍, ଏକଦମ୍ ସତ ।

ଦରିଦ୍ର — ଘୁଷ୍‌ଖୋର୍ ଜଣେ ଦକ୍ଷ ଅଫିସର୍ କି ନା ।

କାଂଗାଳି — ଠିକ୍ ଅଛି, ଏ ମାସଠୁ ତମର ୫% ଡି.ଏ. ବଢ଼େଇଦିଅ । ଆଉ ମନ୍ତ୍ରୀ ଦରିଦ୍ରବର୍ଦ୍ଧନ, ତମ ଯୋଜନାର ଜବାବ ନାହିଁ । ହଉ, ଖର୍ଚ୍ଚ କେତେ ହେଲା, କୁହ ।

ଦରିଦ୍ର — ଘୁଷ୍‌ଖୋର୍...

ଘୁଷ୍‌ଖୋର୍ — ଖର୍ଚ୍ଚ, ମିଟର କିଣା, କର୍ମଚାରୀଙ୍କ ଦରମା ଆଉ ଅନ୍ୟାନ୍ୟ ଖର୍ଚ୍ଚ ମିଶି ଗ୍ରାଣ୍ଡ୍ ଟୋଟାଲ୍ ୭୦ କୋଟି ୪୫ଲକ୍ଷ ୪୫ହଜାର ୫୫୨ଟଙ୍କା ।

କାଂଗାଳି — ସାବାସ୍, ଏବେ କୁହ, ରାଜକୋଷକୁ ଆସିଲା କେତେ ?

ଘୁଷ୍‌ଖୋର୍ — ରାଜକୋଷକୁ ଆଉ ଆସିବ କୋଉଠୁ ? ରାଜକୋଷରୁ ଆହୁରି ପାଖାପାଖି ୭୦କୋଟି ଟଂକା ଯିବ ।

କାଂଗାଳି      ମାନେ ? ଘୁଷ୍‌ଖୋର୍ ।

ଘୁଷଖୋର      ମୋର ବା ଦୋଷ କ'ଣ ? ମୁଁ ତ ଆଦାୟ କରିବା ଲୋକ ।

କାଂଗାଳି      କୁଆଡ଼େ, କୁଆଡ଼େ ଗଲା ସେ ଦେବାଳିଆ ମହାନ୍ତି ! ଡାକ, ଡାକ ତାକୁ ।

ଘୁଷଖୋର      ଆଜ୍ଞା, ମୁଁ ଡାକିଦେବି ।

କାଂଗାଳି      ଯିଏ ଡାକୁଛ ଡାକ ।

ଘୁଷଖୋର      ଆଜ୍ଞା (ଯାଏ, ଦେବାଳିଆ ଦୌଡ଼ିଆସନ୍ତି)

ଦେବାଳିଆ :   ଜୟ ମହାରାଜ କାଂଗାଳି ଦାସ ମର୍ଦ୍ଦରାଜଙ୍କର ।

କାଂଗାଳି      ଚୁପ୍ ଚୁପ୍ । ହଇଓ ଦେବାଳିଆ, ମୁଁ ଜାଣିଥିଲି, ତୁମେ ମୋତେ ଦେବାଳିଆ ବନେଇବ । ସତକୁସତ ବନେଇଦେଲ ।

ଦେବାଳିଆ :   ମୁଁ କ'ଣ କରିବି, ଆପଣ ତ ସମସ୍ତଙ୍କୁ ଟେକ୍ସ-ଫ୍ରି କରିଦେଲେ, ଯୋଜନା ଫେଲ୍ ହୋଇଗଲା ।

କାଂଗାଳି      ଆରେ, ମୋତେ ତ ଫେର୍ ମୋ' ଭୋଟ୍ ବେଙ୍କ୍ କଥା ଦେଖିବାକୁ ପଡ଼ିବ, ସେଥିପାଇଁ ଟେକ୍ସ ଫ୍ରି କରିବାକୁ ପଡ଼ିଲା ।

ଦେବାଳିଆ :   କିନ୍ତୁ ମଣିମା, ଅଫିସ୍ ଘରେ କୋଂପାନି ଲୋକ ନେଇ ବସିଛି, ମିଟର ଟଂକା ନବ, ଯିବ ।

କାଂଗାଳି      ନ ଯାଉ, ଟଂକା ମୁଁ କୋଉଠୁ ଆଣିବି ।

ଦେବାଳିଆ :   ନହେଲେ ବହୁତ କଥା କହୁଛି ।

କାଂଗାଳି      ଯାହା କହୁଛି କହୁ ।

ଦେବାଳିଆ :   ସେ ବହୁତ ବାଜେ କଥା କହୁଛି, ଦି' କାନରେ ଶୁଣିପାରିବେନି ।

କାଂଗାଳି      ଶୁଣୁଛ କାହିଁକି ? କାନରେ ଠିପି ମାରି ବସ, ନହେଲେ..

ଦେବାଳିଆ :   ସେ ଗୁଣ୍ଡା ଆଣିଛି, କାନରୁ ଠିପି ଖୋଲିଦେବ ।

(ଏହି ସମୟରେ କୋଂପାନି ପଶିଆସେ)

କୋଂପାନି  ହେଲୋ ରାଜା ସାହେବ ।

କାଂଗାଳି  ଜୁହାର କୋଂପାନି ସାହେବ ।

କୋଂପାନି  ଆମେ ଆମ ଟଂକା ନବାକୁ ଆସିଛୁ ।

କାଂଗାଳି  କ'ଣ କରିବା ବାହାଦୂର, ଗୋଟେ ଯୋଜନା କରିଥିଲୁ - ଫେଲ୍ ହୋଇଗଲା ।

କୋଂପାନି  ତମେ ଫେଲ୍ ହୋଇଗଲ, ସେକଥା ତମେ ବୁଝିବ । ମୋ ଟଙ୍କା ମୋତେ ଦିଅ ।

କାଂଗାଳି  ଆଉ କିଛି ଯୋଜନା କରୁ, ଟଂକା ରୋଜଗାର ହେଲେ ଦେବା ।

କୋଂପାନି  ମୁଁ କିଛି ଶୁଣିବିନି । ଏବେ ନେବି, ଏବେ ।

କାଂଗାଳି  ମହାମନ୍ତ୍ରୀ ଦରିଦ୍ରବର୍ଦ୍ଧନ ।

ଦରିଦ୍ର  ମଣିମା, ଇଏ ବିଦେଶୀ କୋଂପାନି ଭାରି ଜବର ଅଛି । ଛାଡ଼ିବନି । ଚାଲନ୍ତୁ, ଏହି ପଛପଟ ଝରକା ଭାଂଗି ବଣକୁ ପଳେଇବା ।

କୋଂପାନି  କ'ଣ ହେଲା, ପଳେଇବ ? ପଳାଅ, ମହାରାଣୀକୁ ଆମେ କବ୍‌ଜାରେ ରଖିଅଛୁ, ମହାରାଣୀକୁ ନେଇଯିବୁ ।

କାଂଗାଳି  ମହାରାଣୀକୁ ନେବ ତ ନେଇଯାଅ....

କୋଂପାନି  ଏ କଥା ତ ଠିକ୍ ଅଛି ।

ଦେବାଳିଆ :  ନା ନା କୋଂପାନି ବାହାଦୂର, ରୁହରୁହ, କିଛି ଗୋଟେ ସମାଧାନର ବାଟ ଖୋଜ ।

କୋଂପାନି  ଆରେ ତମେ ଯଦି ପାରୁନ, ଟେକ୍ସ ସିଷ୍ଟମକୁ ଓଡ଼ିଆ ପ୍ରାଇଭେଟାଇଜ୍ କରିଦଉନ ?

କାଂଗାଳି  ପ୍ରାଇଭେଟାଇଜ୍ ? ସେଟା କ'ଣ ?

ଦେବାଳିଆ :  ୟେସ୍ ମଣିମା, ୟେ ଗୋଟେ ଦମ୍‌ଦାର ପ୍ରସ୍ତାବ । ଟେକ୍ସ ସିଷ୍ଟମକୁ ପ୍ରାଇଭେଟାଇଜ୍ କରିଦେବା ।

କାଂଗାଳି    ଆରେ ବାବୁ, ସେ ପ୍ରାଇଭେଟାଇଜ୍‌ଟା କ'ଣ ?

ଦେବାଳିଆ :  ଜଣେ ପ୍ରାଇଭେଟ୍ କୋଂପାନିକୁ ଟେକ୍ସ ଆଦାୟ ଦାୟିତ୍ୱ ଦେଇଦେବା । ସେ ଆଦାୟ କରୁ ନକରୁ, ମାସ ଶେଷକୁ ଆମ କୋଟା ଆମକୁ ଦେଇଦେବ ।

କାଂଗାଳି    ଭଲକଥା । ହେଲେ, ନବ କିଏ ?

କୋଂପାନି    ଆମ୍ଭକୁ ଦଉନ ? ଆମ୍ଭେ ନବୁ ।

ଦରିଦ୍ର    ଆପଣ ନେବେ, ତା'ହେଲେ ତ ବଢ଼ିଆ ହବ । ଋଣ ବି ଶୁଝିବ, କାମ ବି ଚଳିବ ।

କାଂଗାଳି    ହେଲେ, କୋଂପାନି ବାହାଦୂର ନବ ତ ନବ; ହେଲେ, ଆଦାୟ କରିବ କେମିତି ?

କୋଂପାନି    ଆମ ପ୍ରିପେଡ୍ ସିଷ୍ଟମ କାର୍ଡ୍ ରହିବ । ଲୋକେ ଆଗ ପଇସା ଦେଇ କାର୍ଡ୍ କିଣିବେ । ସେ କାର୍ଡ୍ ଗଳାରେ ଲଗେଇବେ । ପଇସା ସରିଗଲେ ଆପେ ଆପେ କଥା ବନ୍ଦ୍ । ନୋ ଟେନ୍ସ, ନୋ ପେନ୍ସ। ଆପଣ ଘରେ ବସି ଟେକ୍ସ ପାଇବେ ।

କାଂଗାଳି    ହଉ ହେଲା, ଆମେ ରାଜି ।

(ଅନ୍ଧାର)



## ସପ୍ତମ ଦୃଶ୍ୟ

(ଫ୍ରଣ୍ଟ୍ ଜୋନ୍‌କୁ ଆଲୋକ ଆସେ । ଘୋଷକ ଆସେ ଘୋଷଣା କରି କରି ।)

ଘୋଷକ — ଶୁଣ ଶୁଣ ଶୁଣ । ଆଜିଠାରୁ କାଂଗାଳି ପାଟଣାରେ କୌଣସି ପ୍ରଜାଙ୍କର ବିନା ପଇସାରେ କଥା କହିବାର ଅଧିକାର ରହିବ ନାହିଁ । ଏତଦ୍ୱାରା ପ୍ରତ୍ୟେକ ପ୍ରଜାଙ୍କୁ ଜଣାଇଦିଆଯାଉଛି, ସେମାନେ ପ୍ରଥମେ ଟଂକା ଜମା କରି କାର୍ଡ୍ କିଣି ଗଳାରେ ପକେଇ କଥା କୁହନ୍ତୁ । ନହେଲେ ଆପେ ଆପେ ପାଟି ବଂଦ୍ ହୋଇଯିବ । ହୁକୁମ୍ ମହାରାଜ କାଂଗାଳି ଦାସ ମର୍ଦ୍ଦରାଜ । (କହି କହି ଚାଲିଯାଏ – ଅନ୍ଧାର)



# ଅଷ୍ଟମ ଦୃଶ୍ୟ

(ରାଇଟ୍ ଜୋନ୍‌କୁ ଆଲୋକ ଆସେ । ଓଡ଼ିଆ ଦାସ ବେଶ୍ ଫିଟ୍‌ଫାଟ୍ ହୋଇ ଆସିଥାଏ ।)

ଓଡ଼ିଆ ଲିଲି...ଏ ଲିଲି..ଲି..ଲି.. (ଲିଲି ଆସେ) । ଆଇ ଲଭ୍ ୟୁ ଲିଲି ।

ଲିଲି : ଚୁପ୍ ! ଭିତରେ ଅଛନ୍ତି ମଦର୍, ବାହାରେ ଫାଦର ।
କୁଆଡ଼କୁ ଆଉ କିଏ ସେ ଛାଡ଼ିବ
ଭୁଜାଲି ଧରିଛି ବ୍ରଦର ।

ଓଡ଼ିଆ : ଆରେ ଛାଡ୍ ଛାଡ୍, ତୋ'ର ଅଠର୍ ଟପି ଉଣେଇଶ ତ ମୋର ବାଇଶି ଟପି ତେଇଶି । ଆଉ କିଏ ଆମର କ'ଣ କରିବ ! ଚାଲ୍, ରେମୁଣା ମନ୍ଦିରରେ ଫୁଲମାଳ ପକେଇ ନୀଳଗିରି ପଳେଇବା । (ଦାଦା ଆସେ)

ଦାଦା : ଆବେ, କିଏ ବେ ତୁ ? ମୋ ଭଉଣୀକୁ ଫୁସୁଲେଇ ନେଇ ପଳଉଛୁ !

ଓଡ଼ିଆ ଏ, ବେଶି ଦାଦାଗିରି ଦେଖାନା ।

ଦାଦା କ'ଣ, ମୋତେ ଚେଲେଞ୍ଜ୍ କରୁଛୁ ?

ଓଡ଼ିଆ : ବେ ଚୁପ୍ ! ଆଜି ମୁଁ କିଛି ଶୁଣିବିନି, ଯାହାକୁ ଚାହିଁବି ତା' ସାଂଗରେ ଚେଲେଞ୍ଜ୍ କରିବି ।

ଦାଦା ଆଚ୍ଛା ଦେଖିବା, ତୁ ଏଠି ପାଦେ ଆଗେଇଲେ....

ଓଡ଼ିଆ : ବେ କଅଣ କରିପକେଇବୁ ? କର, କ'ଣ କରୁଛୁ କର । ଲିଲି, ଆ ମୋ ସାଂଗରେ ।

ଦାଦା : ନା ଲିଲି, ତୁ ଯାଇପାରିବୁନି ।

ଲିଲି : ହଁ ଯିବି, ଏଇ ଗଲି -

ଦାଦା : ନା, ତୁ ଯାଇପାରିବୁନି ।

ଲିଲି : ହଁ ଯିବି ।

ଦାଦା ନା ।

ଲିଲି ହଁ ।

ଦାଦା : ନା ନା (ଆଉ ପାଟିରୁ ଶବ୍ଦ ବାହାରେନି)

ଓଡ଼ିଆ : ବାସ୍, ଆଉଟ୍‌ଗୋଇଙ୍ଗ୍ ଖତମ୍ । କାର୍ଡ୍ ପକା କାର୍ଡ୍, ନହେଲେ ଚୁପ୍ ହେଇ ବସିଥା ।

ଦାଦା (ଅଂଗଭଂଗୀ ଦେଖେଇ କହୁଥାଏ)

ଓଡ଼ିଆ : ଚୁପ୍ । ଆ ଲିଲି (ଟାଣିନେଇ ଯାଉଥାଏ, ଭିକାରି ପହଞ୍ଚେ)

ଭିକାରି : କ'ଣ ହେଲା, ଲିଲି ପଳେଇବ ? ତା' ବାପ ମରିଯାଇଛି କି ?

ଓଡ଼ିଆ ବେଶି କଥା କୁହନି, କାର୍ଡ୍ ସରିଯିବ ।

ଭିକାରି : ଲିଲି, ନା, ଯାଆନା ଲିଲି ।

ଲିଲି : ମୋ ମେରେଜ୍ ପରେ ଫେରିଆସିବି । (ଯାଉଥାଏ)

ଭିକାରି କ'ଣ କହିଲୁ (ପିଟିବାକୁ ଯାଉଥାଏ, କାଂଗାଳି ଦୌଡ଼ିଆସନ୍ତି)

କାଂଗାଳି ଆରେ ରୁହ, ରୁହ ହେ ବାହାପିଆ ଭିକାରି ଦାସ, ରାଜ୍ୟ ଛାରଖାର ହୋଇଗଲା, ରାଜ୍ୟକୁ ରକ୍ଷା କର ।

ଭିକାରି କ'ଣ ହେଲା, ମହାରାଜ ?

କାଂଗାଳି କ'ଣ ଆଉ ହବ, ରାଜ୍ୟ ଭାସିଗଲା, କୋଂପାନି ଆସି ଉଆସ ଭିତରେ ପଶିଗଲାଣି ।

ଭିକାରି : ମନ୍ତ୍ରୀ ? ସଭାସଦ୍ ?

କାଂଗାଳି : କିଏ କୁଆଡ଼େ ପଳେଇଲେଣି । ରାଜ୍ୟର ଏ ସଂକଟ ସମୟରେ ଶାସକ ଓ ବିରୋଧୀଦଳ ଏକଜୁଟ ନହେଲେ କୋଂପାନିକୁ ରୋକିବ କିଏ ? ଦେଶକୁ ଉଦ୍ଧାର କରିବ କିଏ ?

ଭିକାରି : ଭଲ ହୋଇଛି, ମୁଁ ମନା କରୁଥିଲି, ଏ ପ୍ରାଇଭେଟାଇଜ୍ ଧନ୍ଦା ଭିତରେ ପଶନି, ନମାନି ପଶିଗଲେ, ଏବେ ସମ୍ଭାଳ ।

କାଂଗାଳି : ଅଧିକ ଆଉ ଏଠି କୁହନି । କାର୍ଡ଼୍ ସରିଯିବ, ପାଟି ବନ୍ଦ୍ ହୋଇଯିବ । ଚାଲ, କୋଂପାନିକୁ କହିବା । ନମାନିଲେ ଆନ୍ଦୋଳନ କରିବା । ଚାଲ ଚାଲ ।

ଭିକାରି : ହେଲା, ହଇରେ ଏ, ଆସ ସମସ୍ତେ । ଆଗ ଆମ ଦେଶରୁ କୋମ୍ପାନିକୁ ହଟେଇବା, ତା' ପରେ ତମ ବାହାଘର ।

କାଂଗାଳି ଇନକ୍ଲାବ୍

ଅନ୍ୟମାନେ : ଜିନ୍ଦାବାଦ୍ (କହି କହି ଯାଆନ୍ତି, ରାଇଟ୍ ଜୋନ୍ ଅଂଧାର ହୁଏ । ମିଡିଲ୍ ତଥା ଫ୍ରଣ୍ଟ ଜୋନ୍‌କୁ ଆଲୋକ ଆସେ, ଦେଖାଯାଏ ସମସ୍ତେ କୋଂପାନିକୁ ଘେରିଯାଇ ସ୍ଲୋଗାନ୍ ଦିଅନ୍ତି ।)

କୋଂପାନି (ହସି) ଚିଲାଅ, ମନଭରି ଚିଲାଅ, କେତେ ଚିଲେଇବ ଚିଲାଅ । କାର୍ଡ଼୍ ତ ସରିବନା, ତା'ପରେ ?

(ସମସ୍ତେ 'ଇନ୍‌କ୍ଲାବ ଜିନ୍ଦାବାଦ୍' କହି କହି କାର୍ଡ଼୍ ସରିବ । ସମସ୍ତେ ଚୁପ୍, କୋଂପାନି ହସେ ।)

କୋଂପାନି ତମେ ସମସ୍ତେ କିଛି ବି କହିବାର ସମସ୍ତ କ୍ଷମତା ହରେଇବସିଛ । କୋଂପାନି ହାତରୁ କାର୍ଡ଼୍‌ଟେ କିଣିଲେ କଥା କହିବ । ମୁଁ ନ ଚାହିବା ପର୍ଯ୍ୟନ୍ତ ତମେ କିଛି ବି କରିପାରିବନି । ସମସ୍ତେ ଚୁପ୍ ।

(ଧୀରେ ଧୀରେ ଯବନିକା ।)



## ୨୦୧୩ ଏପ୍ରିଲ୍ 'ଝଙ୍କାର'ରେ ପ୍ରକାଶିତ
## 'ମାଙ୍କଡ଼'ର ଚରିତ୍ରମାନେ

- ଶୁଭେନ୍ଦୁ (ଶୁଭ)
- ରଶ୍ମି
- ବସନ୍ତ
- ରାଜୁ
- ରାମଚନ୍ଦ୍ର
- ସୁଗ୍ରୀବ
- ଚନ୍ଦନ
- ଦଶାନନ
- କୁଲୁ
- ବୁଲୁ
- ନିତ୍ୟାନନ୍ଦ
- ସନାତନ
- ମାନୁ
- ଭଜନା

# 'ମାଙ୍କଡ଼'

## ପ୍ରଥମ ଦୃଶ୍ୟ

(ସମଗ୍ର ମଂଚର ବାମ ଅଂଚଳ ଏକ ଟାଇଲ୍ ଘର। ସମ୍ମୁଖ ଭାଗ,ଯାହା ପଛପାଖ ବାଉଁଶ କଣିର ବାଡ଼ ଦ୍ୱାରା ଆବଦ୍ଧ। ତାହାର ପଛପାଖରେ ଏକ ରାସ୍ତା, ଯାହା କ୍ରମଶଃ ଦକ୍ଷିଣପାର୍ଶ୍ୱରୁ ଲମ୍ବିଆସିଛି ସମ୍ମୁଖ ଭାଗ ପର୍ଯ୍ୟନ୍ତ। ମଂଚକୁ ଆଲୋକ ଆସେ ପୂର୍ବାହ୍ନ ଦଶଟା ସମୟରେ, ଯେତେବେଳେ ନାଟକର ନାୟକ ଶୁଭେନ୍ଦୁ ଓ ତାର ୭/୮ ବର୍ଷର ପୁଅ ମିଶି କ୍ରିକେଟ ଖେଳୁଥାନ୍ତି।)

ଶୁଭ — (ବ୍ୟାଟ୍ ଧରି) ହଁ ପକାଅ, ପକାଅ ।

ମାନୁ — ନାଇଁ ଡାଡି, ତମେ ଖାଲି ଜୋର୍ ବାଡ଼ଉଛ ।

ଶୁଭ — କାହିଁ , ମୁଁ ତ ଏମିତି ଖାଲି ବ୍ୟାଟ୍‌ଟା ଦେଖେଇଦଉଛି । ତମେ ଜୋର୍‌ରେ ବଲ୍ ପକାଉଛ ।

ମାନୁ — ତଥାପି ତ ତମେ ଆଉଟ୍ ହଉନ !

ଶୁଭ — ହଉ ପକାଅ, ଏଥର ମୁଁ ଆଉଟ୍ ହୋଇଯିବି ।

ମାନୁ — ହବ ତ ? ଏଥର ଯଦି ଆଉଟ୍ ନହବନା, ମୁଁ ଆଉ ଖେଳିବିନି ।

ଶୁଭ — ହଉ ହେଲା, ପକାଅ।

ମାନୁ — ଆଉଟ୍ ହବ ତ ?

ଶୁଭ — ହଁ ବାବା, ହଁ ।

ମାନୁ — ପ୍ରମିସ୍ ?

ଶୁଭ : ହଉ ହେଲା, ପ୍ରମିସ୍ ।(ମାନୁ ବଲ୍ ପକାଇବା ସମୟରେ ରଶ୍ମି ଆସେ)

ରଶ୍ମି : ମାନୁ, ଖେଳ ଆଉ କେତେ ପର୍ଯ୍ୟନ୍ତ ଚାଲିବ ?

ମାନୁ : ଓଃ ମମି, ତମେ ବି ଏତିକିବେଳେ ଆସିଗଲ ?

ରଶ୍ମି : ତମର ଖେଳ ଆଉ କେତେବେଳଯାଏ ଚାଲିବ, ଶୁଣେ ।

ମାନୁ : ଡାଡି ଆଉଟ୍ ହେବା ପର୍ଯ୍ୟନ୍ତ ଖେଳ ଚାଲିବ ।

ଶୁଭ : ତା' ଜୀବନର ଏକମାତ୍ର ଲକ୍ଷ୍ୟ, ଡାଡିକୁ ଆଉଟ୍ କରିବ ।

ରଶ୍ମି : ଡାଡି କଣ ଇନ୍‌ରେ ଅଛନ୍ତି ଯେ ଆଉଟ୍ ହେବେ ?

ଶୁଭ : ତା' ମାନେ ? ମୁଁ କ'ଣ ଆଉଟ୍ ହୋଇଗଲିଣି ?

ରଶ୍ମି : ଆଉଟ୍ ଅଫ୍ ଗେମ୍ ନୁହଁ, ଆଉଟ୍ ଅଫ୍ ସେନ୍‌ସ ।

ଶୁଭ : ଆଉଟ୍ ଅଫ୍ ସେନ୍‌ସ ମାନେ ?

ରଶ୍ମି : ଆହୁରି ପଚାରୁଛ ? ଘଡିକୁ ଦେଖିଲ ।

ଶୁଭ : (ଘଡିକୁ ଦେଖି) ଦଶଟା ପଚିଶ ।

ମାନୁ : ଏଁ, ଦଶଟା ପଚିଶ ? ମୋ' ସ୍କୁଲ (ଭିତରକୁ ଦୌଡ଼େ)

ରଶ୍ମି : ନିଜ ଜୀବନଟାକୁ ତ ଯାହା କଲ କଲ, ଶେଷରେ ପୁଅଟାକୁ ବି..,

ଶୁଭ : ନା ନା, ଆଉ ସେ ବୋରିଂ ଦର୍ଶନଶାସ୍ତ୍ର ଆଡ଼କୁ ଯାଅନି ।

ରଶ୍ମି : କେତେଦିନ ଏମିତି ହସିଖେଳି ସମୟକୁ ଉଡ଼େଇଦେବ ?

ଶୁଭ : କ'ଣ ଆଉ କରିବି ?

ରଶ୍ମି : ଜୀବନର ସିରିୟସ୍‌ନେସ୍‌ଟାକୁ ବୁଝ ।

ଶୁଭ : ଏତେ ଶୀଘ୍ର ସିରିୟସ୍ ହେବାକୁ ଇମାରୁ ଇଚ୍ଛାନାହିଁ । ଆଉ, ଥରେ ସିରିୟସ୍ ହେଇଗଲେନା ଜୀବନର ସବୁ ରଙ୍ଗ ଫିକା ହୋଇଯିବ ।

ରଶ୍ମି : ରଙ୍ଗ ବଦଳେଇବାର ବୟସ କ'ଣ ତମର ହୋଇନି ? ବୋଝ ଉଠେଇବାର ସମୟ କ'ଣ ଆସିନି ? ବାପାଙ୍କ ଚାକିରି ଆଉ ସତରମାସ ।

ଶୁଭ	ସତର ମାସ ? ଓଃ, ବହୁତ ଲମ୍ବା ।

ରଶ୍ମି	: ତାଙ୍କ ଚାକିରିରେ ପେନ୍‌ସନ୍ ନାହିଁ ବୋଲି ତୁମେ ଜାଣିଛ ?

ଶୁଭ	: କ'ଣ ହେଲା ସେଇଠୁ ?

ରଶ୍ମି	: ସଂଚୟ କ'ଣ, ବାପା ଜାଣିନାହାନ୍ତି ।

ଶୁଭ	: ତମେ କେମିତି ଜାଣିଲ ?

ରଶ୍ମି	(ଗୋଟିଏ ଡାଏରି ଦେଖେଇ) ଏଇଟା ଦେଖ ।

ଶୁଭ	କ'ଣ ?

ରଶ୍ମି	ବାପାଙ୍କ କରଜ ଡାଏରି ।

ଶୁଭ	କରଜ ଡାଏରି ?

ରଶ୍ମି	ବାପା ଦେଖିବେ, ଭିତରକୁ ଆସ ।

(ଦୁହେଁ ଭିତରକୁ ଯାଉଥିଲେ, ଭିତରୁ ବସନ୍ତବାବୁ ସାଇକେଲ୍‌ଟେ ଧରି ଅଫିସ୍ ବାହାରନ୍ତି)

ବସନ୍ତ	ଆରେ ଶୁଭ ! ମାନୁଟାକୁ ନେଇ ଟିକେ ସ୍କୁଲରେ ଛାଡ଼ି ଦେ ।

ରଶ୍ମି	ବାବା, ଆପଣ କ'ଣ ......

ବସନ୍ତ	ଅଫିସ୍ ଟାଇମ୍ ହେଇଗଲାଣି ।

ରଶ୍ମି	ରୁହନ୍ତୁ, ମୁଁ ଟିଫିନ୍ ଡବାଟା ଆଣିଦେଉଛି ।

ବସନ୍ତ	ଯା ଯା, ଶିଘ୍ର ଆଣ୍ (ଶୁଭ ଓ ରଶ୍ମି ଭିତରକୁ ଗଲେ)

(ବସନ୍ତ ସାଇକେଲ ପୋଛୁଥାଆନ୍ତି, ଡାକିଡାକି ଆସନ୍ତି ଭଜନା )

ଭଜନା	ବସନ୍ତବାବୁ, ହୋ ବସନ୍ତବାବୁ ।

ବସନ୍ତ	(ଅଟକିଯାଇ ଦେଖନ୍ତି) କିଏ ?

ଭଜନା	କ'ଣ, ଚିହ୍ନିପାରୁନ ତ ! କେମିତି ଚିହ୍ନିବ ? ଚିହ୍ନିଗଲେ ପୁଣି ଦବାକୁ ପଡିବ ଯେ...

ବସନ୍ତ	ନା ନା, କଥା କ'ଣକି.....

ଭଜନା ନା ନା ? କ'ଣ ନା ନା,ଏଁ ? ଦରମା ପାଇ ଗୁପ୍‌କି ଲୁଚିକି ଘରକୁ ପଳେଇଆଇଲ, ଆମେ ଧାର୍ ଦେଇ ବାଟ ଚାହିଁଚାହିଁ ଭକୁଆ ।

ବସନ୍ତ ନାଇଁ ଭଜନାବାବୁ, ଏ ମାସଟା ଟିକିଏ ଅସୁବିଧା ହେଇଗଲା ।

ଭଜନା ଏ ମାସଟା ଅସୁବିଧା ହେଇଗଲା,ତମର କୋଉ ମାସଟା ସୁବିଧା ଥିଲା କି ? କୋଉ ଗୋଟେ ମାସ ତମେ ଚୁକ୍ତି କରିଛ. କହିଲ? କାହିଁ କେଉଁ କାଳରୁ, ମରହଟ୍ଟା ଅମଳରୁ, ଧାର୍ ଗଡ଼ିଗଡ଼ି ଚାଲିଛି । ମାସକଯାକ ଖାଇବ, ପହିଲା ହେଲା ପଇସା ଦବ, ଏତେ ଚୌରବୀ କାହିଁକି ?

ବସନ୍ତ ଭଜନବାବୁ, ଏ ଭଜନର୍ବାବୁ, ମୋ ଭାଇଟା ପରା, ଟିକିଏ ଧୀରେ, ଘରେ ପୁଅବୋହୂ ଅଛନ୍ତି ତ ।

ଭଜନା ଥାଆନ୍ତୁ, ପୁଅବୋହୂଙ୍କୁ ଛାଡ଼ିକି କଲେକ୍‌ଟର ଥିଲେ ଥାଆନ୍ତୁ, ମୁଁ କ'ଣ କାହାକୁ ଡରିଛି ? ହକ୍ କଥାରେ ମୁଁ ମୋ' ବାପାକୁ ତ ଡରେନି ।

ବସନ୍ତ ଏ ଏ, ଭଜନା, ଭଜନାଭାଇ, ମୋ' ଭାଇ, ଏ ଏ ଟିକିଏ.. ଟିକିଏ ରୁହ ।

ଭଜନା ନା, ମୁଁ ଏଠିକି ରହିବା ପାଇଁ ଆସିନି। ପଇସା ପକାଅ,ମୁଁ ମୋ ବାଟରେ ଯାଏ ।

ବସନ୍ତ ଏଇ ମାସଟା ରହିଯାଅ ।

ଭଜନା କ'ଣ କହିଲ, ଏଇ ମାସଟା ରହିଯିବି, ଗଲାମାସ ଏଇକଥା କହିଥିଲନା ? ଏ ମାସ ପୁଣି ସେଇକଥା ? ନା ନା, ଜମା ହବନି ।

ବସନ୍ତ ଏ ମାସ ଏରିୟର୍ ମିଳିବାର ଥିଲା - ମିଳିଲାନି ।

ଭଜନା ଆରମାସ ବି ମିଳିବନି , ଆଉ ଯଦିବା ମିଳିବ, ତମେ କାହାକୁ ଦବ ? କେତେଜଣଙ୍କୁ ଶୁଝିବ ? ମଦନା ଚାଉଳବାଲାର ସାତ ହଜାର ଟଂକା, ସିଏ ତ ଗାମୁଛା ଧରିକି ବସିଛି। ( ହାତରେ ଡାଏରିଟା ଧରି ଶୁଭ ଆସେ, ବସନ୍ତ ତାକୁ ଦେଖି ବ୍ୟସ୍ତ ହୋଇପଡ଼ନ୍ତି ) ରାଧୁଆ ଭୁଷା ଦୋକାନୀର ପାଂଚହଜାର ଟଂକା ବାକି, ସେ ଠେଙ୍ଗା ଧରିକି ବସିଛି, ପଦିଆ ପରିବାବାଲାର ଦି'ହଜାର ଟଂକା ବାକି,ସେ

ଦଉଡ଼ିଧରି ବସିଛି । କାଳିଆ ସାଇକେଲବାଲା, ହଇଓ ବସନ୍ତବାବୁ ! ତମକୁ ଲାଜ ଥିଲାନି ! ଶେଷରେ ଏଇ ଛାର୍ କାଳିଆ ମେଂଚଡ଼ ସାଇକେଲ ଦୋକାନୀ, ତା'ଠୁ କାଳୀ ନେଇଗଲ ? ହଇଓ କାହାକୁ ଆଉ ଛାଡିଛ ? (ପୁଅକୁ ଦେଖି ଡରିଯାଆନ୍ତି ବସନ୍ତ,ଯେମିତି କୌଣସି ଏକ ଅପରାଧରେ ସେ ଅପରାଧୀ)

ବସନ୍ତ — ନା ନା, ଭଜନବାବୁ, ମୁଁ ତମକୁ ହାତ ଯୋଡୁଛି, ଥାଉ ଥାଉ, ଆଉ କିଛି କୁହନି।

ଭଜନା — କହିବିନି ? ପଇସା ପକାଅ, ଚୁପ୍ ହୋଇ ଚାଲିଯିବି ।

ଶୁଭ — ବାପା ?

ବସନ୍ତ — ନା ରେ ବାପା, ନା । ହଁ, ମୁଁ ଧାର୍ ଆଣିଛି, ତୁ ଚିନ୍ତା କରନି, ମୁଁ ଶୁଝିଦେବି । ଏ ମାସ ଏରିଏର ମିଳିବ, ମୁଁ ଦେଇଦେବି । (ଶୁଭ ନିରବ) ଭଜନାବାବୁ!

ଭଜନା — ତମର ତ କିଛି ନାହିଁ , ମୁଁ ଏଇ ସାଇକେଲଟା ନେଇଗଲି । ପଇସା ଦେବ, ସାଇକେଲ ଆଣିବ ।

ବସନ୍ତ — ନାଇଁ ନାଇଁ, ଭଜନାବାବୁ ଏଇଥରକ ମହଲତ ମାଗୁଛି ।

ଭଜନା — ମୁଁ କିଛି ଶୁଣିବିନି ।

ବସନ୍ତ — ନାଇଁ ରେ ବାବା, ମୁଁ ଧାର୍ କରିଛି । ହେଲେ, ସେଥିରେ ମଦ ପିଇନି କି ଜୁଆ ଖେଳିନି । ତୋ' ମାଆ କେନସର୍‌ରେ ପଡ଼ିଲାବେଳେ ଖରଚ କରିଛି । ଭଜନା ବାବୁ ....

ଭଜନା — ମୁଁ କିଛି ଶୁଣିବିନି । (ସାଇକେଲ ନେଇଯାଏ)

ବସନ୍ତ — ଏ ଭାଇ, ଏ ଭଜନା ଭାଇ ମୋ ସାଇକେଲ. . ଆଃ .... (ଷ୍ଟ୍ରୋକ୍ ହୁଏ)

ଶୁଭ — ବାପା ! (ରଶ୍ମି ଆଣିଥିବା ଟିଫିନ୍ ଡବାଟା ଖସିପଡ଼େ । ଭଜନା ଏପଟ ସେପଟକୁ ଚାହିଁ ସାଇକେଲ ଛାଡ଼ି ଦୌଡ଼େ)

( ଅନ୍ଧାର )



## ଦ୍ୱିତୀୟ ଦୃଶ୍ୟ

(ରାସ୍ତାରେ କଥାହୋଇହୋଇ ଆସନ୍ତି ରାମଚନ୍ଦ୍ର ସାହୁ ଓ ତାଙ୍କ ବନ୍ଧୁ ସୁଗ୍ରୀବ ସିଂହ )

ରାମଚନ୍ଦ୍ର  ସେ ଯାହା ହଉ, ଆମକୁ ଲଢ଼ିବାକୁ ପଡ଼ିବ ।

ସୁଗ୍ରୀବ  ଆମର ଚିହ୍ନ କ'ଣ ହେଲା ?

ରାମଚନ୍ଦ୍ର  ଆମର ସିଂହ, ତାଙ୍କର ମାଙ୍କଡ଼ (ଶୁଭ ଆସୁଥାଏ)

ଶୁଭ  ସାର୍, ନମସ୍କାର ।

ରାମଚନ୍ଦ୍ର : ହଁ, ନମସ୍କାର ।

ସୁଗ୍ରୀବ  ହଇରେ, ବାପା କେମିତି ଅଛନ୍ତି ?

ଶୁଭ  କ'ଣ ଆଉ କହିବି, ଜଣେ ପାରାଲିସିସ୍ ପେସେଂଟ୍ ଆଉ କେମିତି ରହନ୍ତା ?

ରାମଚନ୍ଦ୍ର  କ'ଣ ଆଉ କରିବୁ ? ବିଚରା ନିରୀହ ଲୋକଟା ଭାଗ୍ୟରେ ଶେଷରେ ଏଇଆ ଥିଲା !

ସୁଗ୍ରୀବ  ଆଜିକାଲି ଯୁଗ ସେଇଆ । ଭଲ ଲୋକର କପାଳ ମନ୍ଦ ।

ଶୁଭ  ସାର୍, ସେକଥା କ'ଣ କହୁଛନ୍ତି ! ବାପା ଏତେ ଲୋନ୍ କରିଛନ୍ତି ଯେ ଆପଣ ବିଶ୍ୱାସ କରିପାରିବେନି । ଯାହା ପାଖରେ ଛିଡ଼ାହେଲାବେଳକୁ ପଇସା ମାଗୁଛି । ଆଜି ତାଙ୍କ ମାଲିସ୍ ତେଲଟେ ଖୋଜି ଖୋଜି ପାଉନି । ମୁଁ ତ ହସିଖେଳି ସମୟକୁ କଟେଇଦଉଥିଲି, ହଠାତ୍ ଏ ବୋଝ ଉଠେଇପାରୁନି ।(କାନ୍ଦିପକାଏ)

ରାମଚନ୍ଦ୍ର : ଆରେ, ମାଲିସ୍ ତେଲର ଦାମ୍‌ଟା କେତେ ?

ଶୁଭ  ବାସ୍ତରୀ ଟଂକା ।

ରାମଚନ୍ଦ୍ର : ହଉ, ଏଇ ରଖ୍ ଶହେ ଟଂକା, ମାଲିସତେଲଟା ନେଇଆ ।
ଶୁଭ : ନାଇଁ ସାର୍ ।
ସୁଗ୍ରୀବ : ଆରେ ନେ'- ଯା- (ଶୁଭ ନିଏ)
ଶୁଭ : ହଉ ସାର୍, ନମସ୍କାର। (ଚାଲିଯାଏ - ପଛରୁ ଆସନ୍ତି ଦଶାନନ)
ରାମଚନ୍ଦ୍ର : ବିଚରା ....
ଦଶାନନ : ବାଃ ବାଃ ରାମ ସା'ରେ, ଇଲେକ୍‌ସନ୍ ଆହୁରି ତିନି ମାସ ଅଛି,ଆପଣ ଏବେଠୁ ଟଂକା ବାଂଟିବା ଆରମ୍ଭ କରିଦେଲେଣି !
ସୁଗ୍ରୀବ ଜଣେ ଗରିବ ପିଲାକୁ ସାହାଯ୍ୟ କରିବା କ'ଣ ଅପରାଧ ?
ରାମଚନ୍ଦ୍ର ତା'ଛଡ଼ା, ଶୁଣ ଦଶାନନ, ଟଂକା ଦେଇ ଇଲେକ୍‌ସନ୍ ଜିତିବାର ଥିଲେ, ମୁଁ କେବେଠୁଁ ଜିତିସାରନ୍ତିଣି ।
ଦଶାନନ ସେଗୁଡ଼ା ମୋତେ କୁହନ୍ତୁନି । ଦୁଇଦୁଇଥର ହାରିସାରିଥିଲେ ବି ତୃତୀୟ ଥର ଛିଡ଼ାହେଉଛନ୍ତି କୋଉ ସ୍ୱାର୍ଥରେ ?
ରାମଚନ୍ଦ୍ର : ଆରେ, ମୁଁ ପରା ତମକୁ ପଢ଼େଇଛି, ହାରିଯାଇଥିବା ଯୁଦ୍ଧର ଶେଷ ହୁଏନି ,ଜିତିବା ପର୍ଯ୍ୟନ୍ତ ଯୁଦ୍ଧ ଚାଲିଥାଏ ।
ଦଶାନନ : ସାର୍, ଏଟା ତ୍ରେତୟା ନୁହେଁ, କି ଆପଣ ଦଶରଥ ପୁତ୍ର ରାମଚନ୍ଦ୍ର ନୁହଁନ୍ତି ।
ରାମଚନ୍ଦ୍ର : ତମେ କିନ୍ତୁ ଦଶାନନ ।
ସୁଗ୍ରୀବ : ଆଉ ଦଶାନନର ପରାଜୟ ପାଇଁ , କେବେ, ନା କେବେ କେହିନା କେହି, ରାମଚନ୍ଦ୍ର ତ ଆସିବେ।
ରାମଚନ୍ଦ୍ର : ତୁମକୁ ପରାସ୍ତ ହେବାକୁ ପଡ଼ିବ, ଦଶାନନ ।
ଦଶାନନ : (ହସେ ଛାତିଫଟାଇ)
ରାମଚନ୍ଦ୍ର : ଏ ଅଟ୍ଟହାସ୍ୟର ଉତ୍ତର ତମେ ସେଇଦିନ ପାଇବ, ଯୋଉଦିନ ଇଲେକ୍‌ସନ୍ ରେଜଲ୍‌ଟ ବାହାରିବ । ଆସ ସୁଗ୍ରୀବ...(ଦୁହେଁ ଯାଆନ୍ତି)
ଦଶାନନ : ବୁଝିଲେ ସାର୍ ! ଏ ଭୋଟରମାନେ ଭୋଟର, ଏମାନେ ଆପଣଙ୍କର ବାଧ୍ୟଛାତ୍ର ନୁହଁନ୍ତି ଯେ ବେତ ହଲେଇଦେଲେ ବୋତାମ୍ ଚିପି ଦେବେ। (ଆସନ୍ତି ନେତ୍ରାନନ୍ଦ)
ନେତ୍ରାନନ୍ଦ : ହଁ, ତାଙ୍କ ନାଡ଼ି-ନକ୍ଷତ୍ର ଯିଏ ଚିପିଛି, ସିଏ ସିନା ଜାଣିଛି।
ଦଶାନନ : ବୁଝିଲ ନେତ୍ରାନନ୍ଦ! ରାମ ସାରେ ଏତେଦିନୁ ଟଙ୍କାଥଳି ଧରି

ବୁଲିଲେଣି, ହେଲେ ସାର୍ ଜାଣିନାହାଁନ୍ତି , ମୁଁ ବାଇଶି ବର୍ଷ ହେଲା ଏ ଓାର୍ଡ଼ରୁ ଜିତିଆସୁଛି । ଏଠି କିଏ ଗୋଟେ ବୋତଲରେ, କିଏ କିଲେ ଚାଉଳରେ ତ କିଏ ବେଲାଏ ହାଣ୍ଡିଆରେ ସନ୍ତୁଷ୍ଟ ହୁଏ , ତା ତାଲିକା ମୋ ପାଖରେ ଅଛି ।

ନେତ୍ରାନନ୍ଦ : ଏଠି ଯେ କେହି କଥାରେ, କାମରେ ବା ଆଦର୍ଶରେ ସନ୍ତୁଷ୍ଟ ହୁଅନ୍ତି ନାହିଁ, ତାହା ମାଷ୍ଟ୍ରେଙ୍କୁ ଜଣାନାହିଁ ।

ଦଶାନନ : କିନ୍ତୁ ଏ ଅଠରବର୍ଷିଆ ଭୋଟର୍ ଗ୍ରୁପ୍ ଭାରି ଭୟଂକର ।

ନେତ୍ରାନନ୍ଦ : ସେମାନଙ୍କ କଥା ଚିନ୍ତା କରନ୍ତୁନି, ସେଗୁଡ଼ା ବେଟ୍ ଖଣ୍ଡେ, ବଲ ଗୋଟେ, ଅତି ବେଶି ହେଲେ ବ୍ରଏଲର୍ କିଲକରେ ପୋଷା ମାନିଯିବେ ।

ଦଶାନନ : ତାଙ୍କର ଦାୟିତ୍ୱ ତମର ।

ନେତ୍ରାନନ୍ଦ : ସବୁ ଦାୟିତ୍ୱ ତ ମୋ'ର, ଖାଲି କ'ଣ ତାଙ୍କର !

ଦଶାନନ : ତା' ହେଲେ ଆସ ମୋ' ସାଙ୍ଗରେ । ( ଯାଆନ୍ତି )

( ଅନ୍ଧାର )



## ତୃତୀୟ ଦୃଶ୍ୟ

(ଶୁଭର ଘର, ଶୁଭ ବସି ଭାବୁଥାଏ । ଭିତରୁ ଖାଲିବୋତଲଟେ ଧରି ଆସେ ରଶ୍ମି)

ଶୁଭ : କ'ଣ, ମାଲିସ୍ ତେଲ ସରିଗଲା ?

ରଶ୍ମି ହଁ, ଆଉଗୋଟେ ଆସିବ। ଏଇଟା ତ ନିହାତି ଦରକାର।

ଶୁଭ ହଁ, କେଉଁଟା ଆଉ ଦରକାର ନୁହେଁ ! ବାପାଙ୍କ ପାଇଁ ମାଲିସ ତେଲ, ଟେବଲେଟ୍ ଆଉ ହର୍ଲିକସ୍, ମାନୁ ପାଇଁ ବିସ୍କୁଟ୍, ବହି, ସ୍କୁଲଫିସ୍, ଆଉ ଆମପାଇଁ ଭାତଡାଲି, ତେଲଲୁଣ, ଏସବୁ ତ ନିହାତି ଦରକାରନା' । ଅଥଚ...

ରଶ୍ମି କିଛି ଗୋଟେ କର ।

ଶୁଭ କିଛି ତ ଗୋଟେ କରିବି ନିଶ୍ଚୟ, ହେଲେ.....କ'ଣଟା କରିବି !

ରଶ୍ମି କିଏ ଆସିଲା ?

ଶୁଭ ଚନ୍ଦନ, ମେଡିସିନ୍ ଷ୍ଟୋରବାଲା, ତମେ ଭିତରକୁ ଯାଅ । (ରଶ୍ମି ଭିତରକୁ ଯାଉଥାଏ )

ଚନ୍ଦନ କ'ଣ, କ'ଣ, ମୋତେ ଦେଖି ଭିତରକୁ ପଳଉଛ କାହିଁକି ? ଲାଜ ଲାଗୁଛି, ନାଇଁ ? ଜବାବ ହରାଇବା ଲୋକର ଲାଜସରମକୁ ଏତେ ଭୟ କାହିଁକି ?

ଶୁଭ ଚନ୍ଦନ, ପ୍ଲିଜ୍ ।

ଚନ୍ଦନ — ତୁ ଚୁପ୍‌କର । ତୋ' ମୁହଁକୁ ଦେଖି ମୁଁ ମେଡିସିନ୍ ଦେଇନି, ଯାହା ମୁହଁକୁ ଭରସା କରି ମୁଁ ମେଡିସିନ୍ ଦେଇଛି, ତାକୁ କହୁଛି ।

ରଶ୍ମି — ଦେଖନ୍ତୁ ଚନ୍ଦନବାବୁ! ଆପଣ ତାଙ୍କର ବାଲ୍ୟବନ୍ଧୁ ।

ଚନ୍ଦନ — ନାଇଁ ନାଇଁ, ବେପାରବଣିଜରେ ବଂଧୁବାନ୍ଧବ ଚଳେନି, ପୁଣି ମେଡିସିନ୍ ଭଳି ଚିଜ, ନଗଦକୁ ନାଇଁ, ତାକୁ ପୁଣି ଧାର୍ ଦେଇଛି, ତୋତେ ନୁହେଁ, ତା' ମୁହଁକୁ ଚାହିଁ । ତା' ବାପର ଖାନ୍‌ଦାନ୍‌କୁ ଦେଖି । ହେଲେ, ଫାଇଦା କ'ଣ ? ଶୁଖିଲା କାଠରେ ପାଣି ଢାଳି ଢାଳି ହାତଗୋଡ଼ ହାଲିଆ ହେଲାଣି, ପତ୍ର କଅଁଳିବାର ପ୍ରଶ୍ନ ବି ଉଠୁନି ।

ଶୁଭ — ଚନ୍ଦନ! କ'ଣ ଏଣୁତେଣୁ କହୁଛୁ ?

ଚନ୍ଦନ — ବାଧୁଛି କି ? ଯଦି ବେଶି ବାଧୁଛି, ତା'ହେଲେ ଟଂକାଗୁଡ଼ା ପକେଇ ଦେ', ନ ହେଲେ ମୋ' ପାଖରେ ଆହୁରି ଅନେକ ବାଜେ କଥା ଷ୍ଟକ୍ ଅଛି। ବାହାରିଲେ ଦିହରେ ନିଆଁ ଲାଗିଯିବ ।

ରଶ୍ମି — ନା ନା, ଆଉ କିଛି କୁହନ୍ତୁନି । ତାଙ୍କ ହାତରେ ଟଂକା ନାହିଁ ।

ଚନ୍ଦନ — ସେଇ ତ କଥା । ମୋ' ପାଖରେ ପ୍ରଚୁର ଟଙ୍କା । ମନେଅଛି, ମୁଁ ଯୋଉଦିନ ତମକୁ ପ୍ରପୋଜାଲ୍ ଦେଇଥିଲି,ତମେ ମୋତେ ଜୋତା ଦେଖାଇଥିଲ। ମୁଁ କହିଥିଲି, ଚେହେରାକୁ ଦେଖି ପ୍ରେମକରନା, ପକେଟକୁ ଦେଖି ପ୍ରେମକର । ଆଉ ଆଜି ଯେତେବେଳେ ସୁଯୋଗଟା ମୋ ହାତକୁ ଆସିଛି, ତମ ହାତଟାକୁ ......

ଶୁଭ — (କଲର୍ ଧରି) ଚନ୍ଦନ ! କହୁ କହୁ ବହୁତ କଥା କହିଲୁଣି ।

ଚନ୍ଦନ — ଛାଡ଼୍ ଛାଡ଼୍, କଲର୍ ଛାଡ଼୍, ଖାଲିହାତରେ କଲର୍ ଧରାଯାଏନି । ଆରେ, ତୋ' ହାତରେ ଦମ୍ କାହିଁ ଏ କଲର୍ ଧରିବାକୁ, ଉଁ ? ଛାଡ଼୍ ଛାଡ଼୍ । ବେ ତୁ ଯେତେବେଳେ କ୍ଲାସ୍‌ରେ ଫାଷ୍ଟ୍ ହେଉଥିଲୁ, ମୁଁ ଫେଲ୍ ହେଉଥିଲି, ଫେଲ୍ । ମୋତେ ଅଙ୍କ ଖଣ୍ଡେ ଦେଖଉଥିଲୁ? ଇଂଲିଶ୍ ଟିକିଏ କହୁଥିଲୁ ? ନୋଟ୍ ବହି ଟିକେ ଦଉଥିଲୁ ? ଏଁ ? ଆଜି ତୋ' ସୁନ୍ଦରୀ ସ୍ତ୍ରୀ..

ଶୁଭ		ଚନ୍ଦନ(ଅତ୍ୟଧିକ ରାଗିଯାଇ ଧରିନିଏ, ଦୌଡ଼ିଆସେ ରାଜୁ )

ରଶ୍ମି		(କାନ୍ଦକାନ୍ଦ ହୋଇ) ନା ନା, ଛାଡ଼ିଦିଅ, ସେ ବଡ଼ଲୋକ। ରାଜୁ ରାଜୁ....

ରାଜୁ	:	ଆରେ ଆରେ, କ'ଣ ହୋଇଛି, କ'ଣ ହୋଇଛି, ଶୁଭ ଶୁଭ, ଛାଡ଼୍ ଛାଡ଼୍ (ଛଡ଼େଇଦିଏ)

ଶୁଭ		ଦେଖ ରାଜୁ, ଦେଖ, ଏ ଚନ୍ଦନ କ'ଣ କହୁଛି, ଶୁଣ ।

ଚନ୍ଦନ		ସିଏ କ'ଣ ଶୁଣିବ, ତା' କଥା କ'ଣ ମୁଁ ଜାଣେନି ?

ରାଜୁ		ଦେଖ୍ ଚନ୍ଦନ। ଆମେ ଦିନେ ନା ଦିନେ ବନ୍ଧୁ ଥିଲୁ। ଆଜି ଶୁଭଟା ଦୁଃଖରେ ପଡିଛି।

ଚନ୍ଦନ		ସେଥିରୁ କ'ଣ ଗଲା, ତୋ'ର ଯଦି ଏତେ ଦରଦ, ତା'ହେଲେ ମୋ ଟଙ୍କାଟା ଦେଇଦଉନୁ ? ଓହଃ ଧାର୍ ଖାଇଛି, ତା'ଉପରେ ପୁଣି ମଗଜ ଦେଖ !

ରାଜୁ		ଆରେ ଟଙ୍କା ହେଲେ ସେ ଦେଇଦବନି ? ହେଲା, ସେ ଯଦି ନ ଦବ, ମୁଁ ଦେବି । ହେଲା ?

ଚନ୍ଦନ	:	ଆରେ, ଅଣ୍ଟାରେ ଦମ୍ ଅଛି ଯଦି, ପର ପାଇଁ ଦରଦ ଦେଖା । ଏମିତି ଶୁଖିଲାଟାରେ ବାହାଦୂରି ଦେଖାନା ।

ରାଜୁ		କେତେଟଙ୍କା ? ତା'ର କେତେ ଟଙ୍କା ?

ଚନ୍ଦନ		ଓ, ଯେମିତି ସଂଗେ ସଂଗେ କାଢ଼ିଦବ !

ରାଜୁ		ବେ ରାଜୁକୁ ତୁ ଜାଣିନୁ, ଦରକାର ହେଲେ ଶୁଭ ପାଇଁ ମୁଁ ଜୀବନ ଦେଇଦେବି ।

ଚନ୍ଦନ		ପକା, ପକା ପନ୍ଦରଶହ ଟଙ୍କା ।

ରାଜୁ		ପନ୍ଦରଶହ ବେ, ମାତ୍ର ପନ୍ଦରଶହ ଟଂକା ପାଇଁ ତୁ ଏତେ ବଡ କଥା କହିଦଉଛୁ ? ନେ, ନେ ତୋ' ଟଙ୍କା ।

ଶୁଭ/ରଶ୍ମି	:	ରାଜୁ

ଚନ୍ଦନ		ଏଁ (ଟଂକା ନେଇ) ଫଟ୍‌କିନି ପନ୍ଦରଶହ ଟଂକା କାଢ଼ିଦେଲୁ! (ଯାଉଯାଉ)ବେ, ରାଜୁ ତୋ' ଉଦେଶ୍ୟଟା ମନ୍ଦ ନୁହେଁ ତ ?

ରାଜୁ	କ'ଣ କହିଲୁ ହାରାମଜାଦା (ଚନ୍ଦନ ଦୌଡ଼ିପଳାଏ, ରାଜୁ ଗୋଡ଼ାଏ)

ରଶ୍ମି	ଯାଅ ଯାଅ, ଦେଖ - ରାଜୁ ଭୀଷଣ ରାଗିଯାଇଛନ୍ତି ।

ଶୁଭ	ରାଜୁ ରାଜୁ, ଏ ରାଜୁ (ବାହାରନ୍ତି, କାହାକୁ ଦେଖି ) ରଶ୍ମି

ରଶ୍ମି	କ'ଣ ହେଲା ? ( ଦେଖି ) ଇଏ କ'ଣ, ବାପା !

ଶୁଭ	ସାଂଗରେ କ'ଣ ମାନୁ ? ମାନୁ କ'ଣ ସ୍କୁଲରୁ ଫେରିଆସିଲା ?

ରଶ୍ମି	ଫେରିଆସିଥିବ । ତାର ଫିସ୍ ଦିଆଯାଇନି । କାଲି ପ୍ରିନ୍‌ସପାଲ୍ ଅଫିସ୍‌କୁ ଡାକି ଓ୍ୱାର୍ଣିଙ୍ଗ୍ ଦେଇଥିଲେ ।

ଶୁଭ	:	ତା'ହେଲେ ତ ....

ରଶ୍ମି	ତାକୁ ନ ହେଲେ ଓଡ଼ିଆ ମିଡିୟମ୍‌ରେ ପଢ଼େଇବା । ସେଠି ତ ଆଉ ଫିସ୍ ପଡ଼ିବନି । (ଆସନ୍ତି ନିତ୍ୟାନନ୍ଦ ଓ ମାନୁ)

ଶୁଭ/ରଶ୍ମି	ବାପା ( ଜୁହାର ହୁଅନ୍ତି )

ନିତ୍ୟାନନ୍ଦ	:	ହେଲା ହେଲା, ଆଉ ଏମିତି ବାହାରେ ?

ରଶ୍ମି	ନାଇଁ । ୟାଙ୍କର ଜଣେ ବନ୍ଧୁ ଆସିଥିଲେ ତ ।

ନିତ୍ୟାନନ୍ଦ	:	ଓ, ଆଚ୍ଛା, ହଁ, ଏଇ ମାନୁ ଏକୁଟିଆ ସ୍କୁଲରୁ ଫେରିଆସୁଥିଲା, ଭାଗ୍ୟକୁ ମୋ ଆଖିରେ ଚଷମା ଥିଲା । ମୁଁ ଦେଖିପକାଇଲି । ତା ସ୍କୁଲ ଫିସ୍ କ'ଣ ଏଯାଏ ଦିଆଯାଇନାହିଁ ? ହେଲା, ଆରେ ତୋ' ସ୍କୁଲ୍ ଫିସ୍ କେତେ ?

ରଶ୍ମି	ହେଲା ବାପା, ଆସନ୍ତୁ, ଭିତରକୁ ଆସନ୍ତୁ ।

ନିତ୍ୟାନନ୍ଦ	:	ଭିତରକୁ ଯାଇ କ'ଣ କରିବି, ସମ୍ବୁଦିଙ୍କର ତ ସେନ୍‌ସ ନଥିବ । ଆଉ ଯଦିବା ଆସିଥିବ, ତା' ହେଲେ ମୋତେ ଦେଖିଲାମାତ୍ରେ ପୁଣି ଚାଲିଯିବ । ହଁ ରେ ମାନୁ, ତୋ ସ୍କୁଲ ଫିସ୍ କେତେ ?

ଶୁଭ	ନାଇଁ ଥାଉ ।

ନିତ୍ୟାନନ୍ଦ	:	କ'ଣ , ମୁଁ ଦେଇଦେଲେ ତମ ସ୍ୱାଭିମାନରେ ଆଞ୍ଚ୍ ଆସିବ ?

ଶୁଭ	ନାଇଁ, ମାନୁକୁ ଆମେ ଏବେ ଓଡ଼ିଆ ମିଡିୟମ୍‌ରେ ପଢ଼େଇବା ।

ନିତ୍ୟାନନ୍ଦ : ଇଂଲିଶ୍ ମିଡିୟମ୍ ସ୍କୁଲରେ ଫିସ୍ ଦେଇପାରୁନ ବୋଲି, ନା ଓଡିଆଭାଷା ପ୍ରତି ମମତା ଅଛି ବୋଲି ?

ରଶ୍ମି ବାପା !

ନିତ୍ୟାନନ୍ଦ : ମୁଁ ମାନୁଠାରୁ ସବୁ ଶୁଣିସାରିଲିଣି । ମୁଠାଏ ମୁଢ଼ି ଖାଇ ସେ ଆଜି ସ୍କୁଲ୍ ଯାଇଥିଲା। (ରଶ୍ମି ମୁଣ୍ଡ ତଳକୁ କରେ) ଶୁଣ୍, ତୋ' ବୋଉ କହିଛି, ତୁ ଏବେ ମୋ ସହିତ ଆମ ଘରକୁ ଯିବୁ ।

ରଶ୍ମି ଆମ ଘରକୁ ଯିବି ? କାହିଁକି ? ଆମ ଘରେ କ'ଣ କିଛି ଫଙ୍କସନ୍ ଅଛି ?

ନିତ୍ୟାନନ୍ଦ : ନାଇଁ, ତୋତେ ଏ ଅବସ୍ଥାରେ ଏଠି ଆଉ ମୁହୂର୍ତ୍ତକ ପାଇଁ ମୁଁ ଦେଖିବାକୁ ଚାହେଁନି ।

ରଶ୍ମି ଓଃ, ମୋ ଦୁଃଖ ଦେଖି ଆପଣ ସହିପାରୁନାହାନ୍ତି ?

ଶୁଭ ରଶ୍ମି, ବାପା ହୁଏତ ଠିକ୍ କହୁଛନ୍ତି। (ରାକୁ ଆସି ଫେରିଯାଇଛି।)

ରଶ୍ମି ମୁଁ ଆମ ଘରକୁ ଚାଲିଯିବି ? ହଁ, ବାପା ଅବଶ୍ୟ ତାଙ୍କ ଦୃଷ୍ଟିକୋଣରୁ ଠିକ୍ କହିଥାଇପାରନ୍ତି । ତମେ ? ତମେ କ'ଣ ଠିକ୍ କହୁଛ ?

ଶୁଭ କ'ଣ ଆଉ କରିବି ? ତମ ହାତକୁ ମୁଠାଏ ଚୁଡ଼ି କିଣିଦେବା ତ ଦୂରର କଥା, ତମ ପେଟକୁ ମୁଠାଏ ଚୂଡ଼ା ଦେବାପାଇଁ ମୋ ପକେଟରେ ଦମ୍ ନାହିଁ। ଖାଲିପକେଟ୍, ଖାଲିଘର ଆଉ ଖାଲିହାତକୁ ନେଇ, ମୁଁ ହେଲ୍ପଲେସ୍ ରଶ୍ମି । ତମେ ମୋର ଏ ଖାଲିହାତକୁ ଧରି ଭୁଲ୍ କରିଛ।

ନିତ୍ୟାନନ୍ଦ : ଏଗୁଡ଼ାସବୁ ବାଚାଳତା।ଏମିତି କଥାରେ ପେଟ ପୂରେନା । ପେଟ ପାଇଁ କିଛି କର । ଆଉ ଯେତେବେଳେ ନିଜ ପେଟ ପୂରି କିଛି ବଳକା ହେବ, ମୋ' ଘରୁ ରଶ୍ମିକୁ ନେଇଆସିବ । ଆ' ରଶ୍ମି।

ରଶ୍ମି (ହାତ ଯୋଡ଼ି ) ବାପା! କହୁ କହୁ ବହୁତ କହିସାରିଲେଣି । ମୋ ଘରେ ମୁଁ ଆପଣଙ୍କୁ ଅସମ୍ମାନ କରିବାକୁ ଚାହୁଁନି । କେବଳ ଏତିକି କହିବାକୁ ବାଧ୍ୟ ହେଉଛି ଯେ ମୁଁ ଏବେ ବାପଘର ଝିଅ ନୁହେଁ, ଶାଶୁଘର ବୋହୂ । ବାପଘରର ମାଂସପଲଉଠାରୁ ଶାଶୁଘରର ପେଜତୋରାଣି ଜଣେ ନାରୀ ପାଇଁ ଅମୃତ, ମହାର୍ଘ୍ୟ ।

ନିତ୍ୟାନନ୍ଦ : ତୁ ? ତୁ ମୋ ମୁହଁ ଉପରେ ଏତେବଡ଼ କଥା କହିପକେଇଲୁ !

ରଶ୍ମି କହିବାକୁ ବାଧ୍ୟ ହେଲି ।

ଶୁଭ ରଶ୍ମି !

ରଶ୍ମି ମୋତେ ସେହି ରଶ୍ମି ହୋଇ ବଂଚିବାକୁ ଦିଅନ୍ତୁ । ଆପଣ ଦକ୍ଷ ଯଜ୍ଞର କାହାଣୀ ନିଶ୍ଚୟ ପଢ଼ିଥିବେ । ଶିବଙ୍କର କିଛି ନଥିଲା ସତ, କିନ୍ତୁ ଶିବହୀନ ଯଜ୍ଞ ସଫଳ ହେଲା କି ?

ନିତ୍ୟାନନ୍ଦ : ଦେଖ୍ ରଶ୍ମି, ମୁଁ ତୋତେ ଭଲ କଥା କହୁଛି,ମୋ ସହିତ ଚାଲ୍ । ନହେଲେ......

ରଶ୍ମି ଅନୁତାପ କରିବି ? ମୁଁ ଆପଣଙ୍କୁ ହାତ ଯୋଡୁଛି ବାପା , ମୋତେ ଏମିତି କହି ମୋ ପରିବାରକୁ ଅପମାନିତ କରନ୍ତୁନି । ମୋ ପରିସ୍ଥିତିରେ ବଂଚିବାକୁ ମୋତେ ଛାଡ଼ିଦିଅନ୍ତୁ ।

ନିତ୍ୟାନନ୍ଦ : ଏଥିରେ ହାତ ଯୋଡ଼ିବାର କ'ଣ ଅଛି । ତୋତେ ତୋ' ପରିସ୍ଥିତିରେ ରହିବାକୁ କିଏ କାହିଁକି ମନା କରିବ ! ଠିକ୍ ଅଛି, ମୁଁ ତେବେ ଆସୁଛି ? (ଉଦ୍ୟତ)

ଶୁଭ : ହେଲେ ବାପା...

ନିତ୍ୟାନନ୍ଦ : କ'ଣ କିଛି ଟଙ୍କା ଦରକାର ? କେତେ ?

ଶୁଭ ମୋତେ କ୍ଷମା କରିବେ ।

ନିତ୍ୟାନନ୍ଦ : କ୍ଷମା ? ତମର ଭୁଲ୍ ?

ଶୁଭ ଆପଣଙ୍କୁ ଜଣେ ବଡ଼ ମଣିଷ ଭାବିବା...

ନିତ୍ୟାନନ୍ଦ : ଆଚ୍ଛା ! (ଦ୍ରୁତ ଗତିରେ ଚାଲିଯାଆନ୍ତି )

ମାନୁ ମାମି...ମୋ' ସ୍କୁଲ...

ରଶ୍ମି ହଁ, ଯିବୁ ।

ଶୁଭ ଯିବୁ, ଏବେ ଯିବୁ । ଆ' ।

(ଅନ୍ଧାର)



## ଚତୁର୍ଥ ଦୃଶ୍ୟ

(ରାସ୍ତା ଉପରକୁ ଆଲୋକ ଆସିଲାବେଳକୁ ଦେଖାଯାଏ ଫରେଷ୍ଟର୍ ଗୋଡ଼େଇଆଣେ କୁଲୁ ଓ ବୁଲୁଙ୍କୁ )

ଫରେଷ୍ଟର୍ : ବେ ଚୁପ୍ । ମୋ ମୁହଁରେ ଜବାବ୍ ଦଉଛ ? ବେ ଜାଣ ମୁଁ କିଏ ? ମୁଁ କିଏ ? ମୁଁ କିଏ ?

କୁଲୁ ବୁଲୁ ସାର୍, କିଏ ?

ବୁଲୁ ମୁଁ ଜାଣେନି ।

ଫରେଷ୍ଟର୍ : ବେ ଚୁପ୍ । ମୋତେ ଜାଣିନ ? ମୁଁ ଫରେଷ୍ଟର୍ ମୁଚୁକୁନ୍ଦ ମଲ୍ଲିକ ।

ଉଭୟେ : ଜୁହାର ସାର୍ ।

ଫରେଷ୍ଟର୍ : ମୋ ନାଁ ଶୁଣିଲେ ବାଘଭାଲୁ ବାଟ ଛାଡ଼ିଦିଅନ୍ତି , ଆଉ ତମେ ମୋ ମୁହଁରେ ଜବାବ ଦଉଛ ?

କୁଲୁ ହଁ ହଁ, ଫରେଷ୍ଟର୍ ମୁଚୁକୁନ୍ଦ ମଲ୍ଲିକ ନାଁ ଶୁଣିଛି ।

ବୁଲୁ ହଁ ଆଜ୍ଞା, ମୁଁ ଶୁଣିଛି ।

ଫରେଷ୍ଟର୍ : ତମ ସାହସକୁ ତାରିଫ୍ କରିବା କଥା, ମୋ ନାଁଟାକୁ ଶୁଣି ହଜମ କରିପାରିଛ । ମୋ ନାଁ ଶୁଣିଲାମାତ୍ରେ ବାଘଭାଲୁଙ୍କ ହୋସ୍ ଚାଲିଯାଏ । ଆଉ ତମେ ତ ଛାର୍ ମଣିଷ ।

କୁଲୁ ଅରେ ବୁଲୁ, ଏଟା ତ ଫରେଷ୍ଟ୍ ନୁହେଁ, ସାର୍ ଏଠି କ'ଣ କରୁଛନ୍ତି ?

ବୁଲୁ ହଁ ତ ସାର୍, ଏଟା ତ ଫରେଷ୍ଟ ନୁହେଁ ...

ଫରେଷ୍ଟର : ଏଟା ଟାଉନ୍ ତ, ମୁଁ ଏ ଟାଉନ୍‌ର ଫରେଷ୍ଟର। ଏ ଏରିଆ ମୋର । ମୋ ଏରିଆରେ ମୋ ଆଗରେ ତମେ ମାଙ୍କଡ଼ ପରି ପଶୁକୁ ନଚେଇ ଦବ, ତା' ପ୍ରତି ନିର୍ଯାତନା କରିବ। ଜଙ୍ଗଲ ଅଇନ୍ ଲଗେଇ ଦେବି । ଚମଡ଼ା ଛାଲିଦେବି । ଜେଲ୍‌ରେ ଠୁଙ୍କିଦେବି ।

ବୁଲୁ ସାର୍, ମାଙ୍କଡ଼ ନଚାଇବା କ'ଣ ନିର୍ଯାତନା ?

ଫରେଷ୍ଟର : ପଶୁ ନିର୍ଯାତନା । ଖାଲି ନଚେଇବା ନୁହେଁ। ମାଙ୍କଡ଼, କେବଳ ମାଙ୍କଡ଼ କାହିଁକି, କୌଣସି ପଶୁପକ୍ଷୀକୁ ଘରେ ରଖିବା ବି ନିର୍ଯାତନା, ଆଇନ୍‌ବିରୋଧୀ । ମାଙ୍କଡ଼ ସହିତ ତମମାନଙ୍କୁ ଚାଲାଣ କରିବି । କାହିଁ, ମାଙ୍କଡ଼ କାହିଁ ?

ବୁଲୁ ମାଙ୍କଡ଼କୁ ତ ଆମେ ନଚେଇନୁ । ମାଙ୍କଡ଼..

କୁଲୁ ମାଙ୍କଡ଼ବାଲା ନଚଉଥିଲା ।

ଫରେଷ୍ଟର : ମୋ ସାଙ୍ଗରେ ବେଶି ଚାଲାକି କରନି । କୁହ, ଗଲା କୁଆଡ଼େ ସେ ମାଙ୍କଡ଼ ?

ବୁଲୁ ଆମେ କେମିତି ଜାଣିବୁ !

ଫରେଷ୍ଟର : ତମେ ମାଙ୍କଡ଼କୁ ନଚେଇ ମାଙ୍କଡ଼ଚିହ୍ନବାଲାଙ୍କର ଭୋଟ୍ ପ୍ରଚାର କରୁନଥିଲ ?

କୁଲୁ ଆମେ ମାଙ୍କଡ଼ ଚିହ୍ନବାଲାଙ୍କର ଭୋଟ୍ ପ୍ରଚାର କରୁଥିଲୁ ?

ବୁଲୁ ମାଙ୍କଡ଼ ନଚଉଥିଲୁ ?

କୁଲୁ : ମାଙ୍କଡ଼ ନଚଉଥିଲା ମାଙ୍କଡ଼ବାଲା ।

ବୁଲୁ : ଆମେ କେମିତି ଜାଣିବୁ ?

କୁଲୁ ହେଇ, ସେ ପାନଦୋକାନରେ ବସି ବିଡ଼ି ପିଉଛି ।

ଫରେଷ୍ଟର : ଏଁ ..ଏଯ ଏଯ ମାଙ୍କଡ଼ବାଲା, ମାଙ୍କଡ଼ବାଲା.. (କହିକହି ଯାଏ)

କୁଲୁ ଯା, ମାଙ୍କଡ଼ ନା କାଙ୍କଡ଼ ଧରିବୁ !

ବୁଲୁ ବେ ମିଛ କହିଲୁ ।

କୁଲୁ ଆଉ ସତ କହିଥାନ୍ତି, କ'ଣ ଜେଲ୍ ଯିବା ପାଇଁ ।

ବୁଲୁ ଶଳା ପ୍ରଚାରଟା ଜମିଯାଇଥିଲା, ମଝିଟାରେ ବ୍ରେକ୍ ମାରିଦେଲା ।

କୁଲୁ ବ୍ରେକ୍ କ'ଣ ବେ, ଚାଲ୍ ।

ବୁଲୁ ରହ,ମୁଁ ଟିକେ ଦଶାନନ ସାର୍‌ଙ୍କୁ ପଚାରିଦିଏ । (ଫୋନ୍ କଲେ)ସାର୍ ନମସ୍କାର୍ ......ନାଇଁ ସାର୍, ସେମିତି କିଛି ଅସୁବିଧା ନାହିଁ ଯେ.....ହଁ ସାର୍, ଆମେ ସାର୍ ମାଙ୍କଡ଼ ଚିହ୍ନର ପ୍ରଚାର କରୁଥାଉ, ହଠାତ୍ ଦେଖିଲୁ, ଜଣେ ମାଙ୍କଡ଼ବାଲା ମାଙ୍କଡ଼ଟେ ନଚେଇ ପଇସା ମାଗୁଛି । ଆମ ମୁଣ୍ଡରେ ଗୋଟେ ଆଇଡିଆ ଜୁଟିଗଲା..(କୁଲୁ ଛଡ଼େଇନେଇ)

କୁଲୁ ନାଇଁ ସାର୍ ! ମୋ ମୁଣ୍ଡରେ ସେ ଆଇଡିଆଟା ଜୁଟିଲା......ହଁ ସାର୍,......କହୁଛି ସାର୍, କହୁଛି .....(ବୁଲୁ ଛଡ଼େଇ ନେଇ)

ବୁଲୁ ଆମେ ପ୍ରଚାର ବେଳେ ଯଦି ସତସତିକା ମାଙ୍କଡ଼ଟାକୁ ନଚେଇ ନଚେଇ ପ୍ରସେସନ୍ କରନ୍ତୁ, ତା' ହେଲେ ବଢ଼ିଆ ହୁଅନ୍ତା.... ଆଉ ହେଲା କୋଉଠି ? ଆମେ ମାଙ୍କଡ଼ବାଲାକୁ ଶହେଟଙ୍କା ଦେଇ ଜବାବ କରି ଅଣିଲୁ। ନଚେଇ ନଚେଇ ପ୍ରଚାର କଲୁ .... ( କୁଲୁ ଛଡ଼େଇନେଇ )

କୁଲୁ ବଢ଼ିଆ ତ ହେଲା, ହେଲେ , କୋଉଠି ଥିଲା ସେ ଫରେଷ୍ଟର, ଦଉଡ଼ିଆସିଲା..... କାହିଁକି କହୁଛନ୍ତି ସାର୍,ଗୋଡ଼େଇଲା ତ, କହିଲା, ମାଙ୍କଡ଼ ଏକ ପଶୁ । ତାକୁ ନଚେଇ ନିର୍ବାଚନ ପ୍ରଚାର କରିପାରିବନି.... ଆଇନ୍‌ରେ ଅଛି.... ନା ନା, ଆମକୁ କିଛି କହିଲାନି ଯେ.... ମାଙ୍କଡ଼ବାଲାକୁ ଗୋଡ଼େଇଛି...... ହଁ ସାର୍ ..... ହଁ ।

ବୁଲୁ କ'ଣ କହିଲେ ?

କୁଲୁ ସେ କହିଲେ, ଏମିତି ଆଉକିଛି ନୂଆ ପ୍ଲାନ୍ ବନେଇବାକୁ ।

ବୁଲୁ ହଁ, ହଉ ଆ ।

(ଅନ୍ଧାର)



## ପଂଚମ ଦୃଶ୍ୟ

( ଶୁଭେନ୍ଦୁର ଘର। ସମୟ ସଂଧ୍ୟା। ମଂଚକୁ ଆଲୋକ ଆସିଲାବେଳକୁ ରଶ୍ମି ବସି କଣ ଭାବୁଥାଏ । ମାନୁ ଆସେ । )

ମାନୁ : ମାମି ! ଡାଡି ଆସିନାହାନ୍ତି ?

ରଶ୍ମି : ନା

ମାନୁ : କେତେବେଳେ ଆସିବେ ?

ରଶ୍ମି : ମୁଁ କେମିତି ଜାଣିବି ।

ମାନୁ : ମାମି, ଜେଜେମା ବହୁତ ଚିତ୍କାର କରୁଛନ୍ତି ।

ରଶ୍ମି : କରନ୍ତୁ ।

ମାନୁ : ଜେଜେ ଆଜି ଔଷଧ ଖାଇନାହାନ୍ତି ?

ରଶ୍ମି : ତୋ'ର କ'ଣ ଗଲା ,ତୁ କ'ଣ ଔଷଧ ଆଣି ଦେବୁ ?

ମାନୁ : ମୁଁ ବଡ଼ ହୋଇଯାଏ, ଦେଖିବ କେମିତି ଜେଜେଙ୍କ ପାଇଁ ଔଷଧ, ଡାଡିଙ୍କ ପାଇଁ .....ଡାଡିଙ୍କର କ'ଣ ନାହିଁ ?

ରଶ୍ମି : ମାନୁ !

ମାନୁ : ଆଉ ତମ ପାଇଁ ଚାଉଳ, ଡାଲି, ତେଲ, ସବୁ ଆଣି ଦେବି ।

ରଶ୍ମି : ମାନୁ ( ଆଖିରେ ଲୁହ )

ମାନୁ : (ଲୁହ ପୋଛିଦେଇ ) ଛି ମମି ! ତମେ କାନ୍ଦୁଛ ? ତମେ ପରା ବଡ଼ ହୋଇଗଲଣି । ବଡ଼ମାନେ କ'ଣ କାନ୍ଦନ୍ତି ?

ରଶ୍ମି : ମାନୁରେ । ବାପ ମୋର ( କୁଣ୍ଢେଇଧରି କାନ୍ଦେ )

ମାନୁ : ମାମି, ତମକୁ ଭୋକ ହେଲାଣି ?

ରଶ୍ମି : ବାପାକୁ ମୋର ବହୁତ ଭୋକ, ନାଇଁ? ଆଉଟିକିଏ ଅପେକ୍ଷା କର ବାପା,ଡାଡି ଆଜି କେତେ ଜିନିଷ ଆଣିବେ ।

ମାନୁ : ମୁଁ ନା ଅନେକ ଦିନରୁ ବିସ୍କୁଟ୍ ଖାଇନି ।

ରଶ୍ମି : ଆଜି ଖାଇବୁ । (ସନାତନ ଆସନ୍ତି )

ସନାତନ : ଅରେ ଶୁଭ ଶୁଭ, ଏଇ ତ..ଏ ମାନୁ କିରେ, ତୋତେ ଏତେ କରି କହିଲି, ତୁ ଟିଉସନ୍ ଗଲୁନି ।

ରଶ୍ମି : ସାର୍ ନମସ୍କାର୍ ।

ସନାତନ : ହଁ ହଁ, ଶୁଭ କାହିଁ ?

ରଶ୍ମି : ଫେରିନାହାନ୍ତି ।

ସନାତନ : ତମକୁ ସେଦିନ ଏତେକରି କହିଲି, ପିଲାଟା ଭଲ ପଢୁଛି,ତାକୁ ମୋ ପାଖକୁ ପଠାଅ, ଆଉଟିକିଏ ଭଲ ହୁଅନ୍ତା ।

ରଶ୍ମି : ନାଇଁ ସାର୍ । ଟିଉସନ୍ ପଇସା....

ସନାତନ : କ'ଣ କହିଲ, ଟିଉସନ୍ ପଇସା ? ମୁଁ କ'ଣ ମାଗୁଛି ନା ପଢ଼େଇବାକୁ ମନା କରୁଛି । ଶୁଣ, କାଲି ଗୋଟେ ଅନୁଷ୍ଠାନ ତରଫରୁ କିଛି ଲୋକ ଆସିବେ। ସେମାନେ ଗରିବ ଓ ମେଧାବୀ ପିଲାମାନଙ୍କୁ ପଢ଼ାଖର୍ଚ୍ଚ ଯୋଗାଇଦେବେ । ସେଥିପାଇଁ ସେମାନେ ଗୋଟେ ଟେଷ୍ଟ ପରୀକ୍ଷା କରିବେ । ଆମ ମାନୁଟା ପାଇଯାଆନ୍ତା, ତେଣୁ ମୁଁ ଆସିବାକୁ ବାଧ୍ୟ ହେଲି। ଏ ମାନୁ, ଆ', ମୁଁ ତୋର ଗଣିତ ଆଉ ସାହିତ୍ୟ ଟିକିଏ ଦେଖିଯାଏ। ଇଂଲିସ୍‌ରେ ତ ତୋର ବଢିଆ। ଚେଷ୍ଟାକଲେ ପାଇଯିବୁ ।

ରଶ୍ମି : ହେଲେ ସାର୍ ...

ସନାତନ : ଆଉ ହେଲେଫେଲେ କୁହନି। ଆ ଆ ମାନୁ ( ଯାଆନ୍ତି )

ମାନୁ : ମାମି, ମୁଁ ଟିକିଏ ପଢ଼ିଦିଏ ।

ରଶ୍ମି : ଏମିତି ଭୋକିଲା ପେଟରେ ?

ମାନୁ : ଡାଡି ଆସିଲେ ତ ଖାଇବି, ସେତେବେଳକୁ ମୋ ପଢା ସରି ଯାଇଥିବନିକି ?

ରଶ୍ମି : ହଉ ଯା ..(ମାନୁ ଯାଏ,ରଶ୍ମି ତା ଯିବା ବାଟକୁ ଚାହିଁଥାଏ,ରାଜୁ ଆସେ ଔଷଧ ନେଇ)

ରାଜୁ : ଭାଉଜ ! ଆସୁ ଆସୁ ଡେରି ହୋଇଗଲା । ଶୁଭ ଆସିଲାଣି ?

ରଶ୍ମି : ନା ,ସକାଳଠୁ ଯାଇଛନ୍ତି ଯେ ସଞ୍ଜ ହୋଇଗଲା ।

ରାଜୁ : ମଉସାଙ୍କ ଔଷଧ ଓ ତେଲ ।

ରଶ୍ମି : ରାଜୁ, ତମେ କାହିଁକି ଆମକୁ ଏତେ ଋଣୀ କରିପକଉଛ ?

ରାଜୁ : କିଏ କାହାକୁ ଋଣୀ କରିଦେଉଛି ଭାଉଜ ! ଶୁଭର ବାପା କ'ଣ ମୋର କେହି ନୁହନ୍ତି ? ଆଜି ସିନା ତମେ ଅସୁବିଧାରେ ପଡ଼ିଛ,ମୁଁ କ'ଣକେମିତି ଟିକିଏ ସାହାଯ୍ୟ କରିଦଉଛି, କାଲି ଯଦି ମୋର କିଛି ଅସୁବିଧା ହୁଏ, ତମେ କ'ଣ ଚୁପ୍ ହୋଇ ବସିପାରିବ ?

ରଶ୍ମି : ତମ ଋଣ ଶୁଝିବାର ସୁଯୋଗ କ'ଣ ଆମକୁ ମିଳିବ ?

ରାଜୁ : ସେକଥା ପରେ । ମୁଁ ଦେଖେ, ଶୁଭ କୁଆଡ଼େ ଗଲା ।

ରଶ୍ମି : ଗୋଟେ କଥା କହିଥା'ନ୍ତି, ରାଜୁ।

ରାଜୁ : କ'ଣ ?

ରଶ୍ମି : ତମେ କିଛି ଖରାପ ଭାବିବନି ତ ?

ରାଜୁ : ଖରାପ ଭାବିବି କ'ଣ ପାଇଁ ?

ରଶ୍ମି : ରାଜୁ, ତମେ ଆମ ଘରକୁ ବାରମ୍ବାର ଆସିବା ଦ୍ୱାରା, ଆମକୁ ଏତେ ସାହାଯ୍ୟ କରିବା ଦ୍ୱାରା ବାର ଲୋକ ବାର କଥା କହୁଛନ୍ତି ।

ରାଜୁ : ଭାଉଜ !

ରଶ୍ମି : ହଁ ରାଜୁ ।

ରାଜୁ : କିଏ କହୁଛି ?

ରଶ୍ମି : କାହା କଥା କହିବି, କେହି କ'ଣ ସିଧା କହନ୍ତି ? ଏମିତି ଦେଖେଇ ଶିଖେଇ ଚାଳକୁବାଡ଼କୁ ଲଗେଇ କହନ୍ତି ।

ରାଜୁ : ତମେ କ'ଣ ସେମାନଙ୍କୁ ବିଶ୍ୱାସ କରୁଛ, ଭାଉଜ ?

ରଶ୍ମି : ମୁଁ ଯେତେହେଲେ ବି ଜଣେ ନାରୀ। ଏ ସମାଜରେ ଅବିଶ୍ୱାସର ପାତ୍ର,ମୋ ବିଶ୍ୱାସକୁ ଶୁଣି କିଏ ବିଶ୍ୱାସ କରିବ, ନା ଗୁରୁତ୍ୱ ଦବ ! ସୀତାଙ୍କୁ ଯେତେବେଳେ ଭୂକ୍ଷେପ କରାଯାଇନି ମୁଁ ତ ଛାର୍ ।

ରାଜୁ : ଚୁମ ରାଣ ଭାଉଜ। ମୁଁ କେବଳ ବନ୍ଧୁତାର ହାତ ନେଇ ଏଠିକୁ ଆସୁଛି । ଏ ହାତରେ ବନ୍ଧୁତ୍ୱର ବନ୍ଧନ ଛଡ଼ା ଆଉକିଛି ନାହିଁ ।

ରଶ୍ମି : ମୁଁ କ'ଣ ଜାଣେନି ?

ରାଜୁ : ତମେ ଜାଣିଛ,ଏତିକି ଯଥେଷ୍ଟ। ଆଉ କାହାରିକୁ ମୋର ଖାତିର ନାହିଁ । ମୁଁ ଦେଖେ, ଶୁଭ କୁଆଡ଼େ ଗଲା । (ଯାଏ)

ରଶ୍ମି : ସତରେ ଏମିତି ବନ୍ଧୁ ଦୁନିଆରେ ବିରଳ। (ଭିତରୁ ମାନୁକୁ ସାର୍‌ଙ୍କ ବାଡ଼େଇବା,ମାନୁର କାନ୍ଦ)

ସନାତନ : (ଭିତରୁ) ତୋତେ ପିଟି ପିଟି ତୋ' ପିଠି ଫଟେଇଦେବି । ବଦମାସ୍, ଏତିକି ମନେରଖିନୁ ? ସ୍କୁଲ୍ ତ ଯାଇନୁ, କ'ଣ କରୁଥିଲୁ ? ବଦମାସ୍, ପାଜି, ତୋ ଚମଡ଼ା ଛାଲିଦେବି କହ, କହ ବଦମାସ୍ ।

ମାନୁ : ନାଇଁ ସାର୍, ନାଇଁ, କରିଦେବି । (ରଶ୍ମି କ'ଣ କରିବ, କେମିତି କହିବ, କିଛି ଭାବିପାରୁନଥାଏ । ଖାଲି ଏପଟସେପଟ ହେଉଥାଏ)

ରଶ୍ମି : ପିଲାଟା ଖାଲିପେଟରେ ..ହେ ଭଗବାନ। ହେ ମା' ମଙ୍ଗଳା। ମୋ ପୁଅକୁ ରକ୍ଷାକର ମା' । ତା' ପେଟକୁ ତ ମୁଠେ ଆହାର ଦେଇପାରୁନୁ, ତା' ପିଠିରେ ପାହାର ଦଉଛୁ କାହିଁକି ? ତୁ ସତରେ ମାଆ ପଥର ..ପାଷାଣ। (ମାନୁ କାନ୍ଦେ। ମାନୁର କାନ ଧରି ସନାତନ ଆସନ୍ତି।)

ସନାତନ : ଆ', ଆ' ତୋ ମାଆ ପାଖକୁ । ବଦମାସ୍ ..

ମାନୁ : ଆଉ ଭୁଲ୍ କରିବିନି ସାର୍,ଏଥର ସବୁ ଠିକ୍ କରିଦେବି ।

ସନାତନ : ଚୁପ୍‌କର ବଦମାସ୍ । ଏଇ ଦେଖ, ଦେଖ ତମ ଗୁଣମଣି ପୁଅକୁ ।

ମାନୁ : ସତ କହୁଛି ମାମି, ମୁଁ କାଲି ନିଶ୍ଚୟ କରିଦେବି ।

ସନାତନ : (ପିଟି) ହଁ, କାଲି କରିଦେବି, ବଦ୍‌ମାସ୍ ।

ରଶ୍ମି : ସାର୍। ତାକୁ ପିଟନ୍ତୁନି, ସାର୍ ।

ସନାତନ : ବିନା ମାଡ଼ରେ ଏଟା ଜମା ପଢ଼ିବନି । ତା' ବାପଟା ଠିକ୍ ଏଇମିତି ଥିଲା । ଦି'ପାହାର ବାଜିଗଲେ, ବାସ୍ ।

ରଶ୍ମି : ନାଇଁ ସାର୍ , ସେ ପଢ଼ିବ । କାଲିଠାରୁ ପିଲାଟା ପେଟକୁ ମୁଠାଏ ଦାନା ଯାଇନି ।

ସନାତନ : ମାନେ.. ? (ମାଙ୍କଡ଼ବେଶରେ ସଜ ହୋଇ ଶୁଭ ଆସେ )

ଶୁଭ : ହଁ ସାର୍ । ସାରା ବଉଁଶଟା କାଲିଠାରୁ ଉପାସରେ ଛଟପଟ ହେଉଛୁ ।

ସନାତନ : ତା ମାନେ ? ମାନୁ ... ମାନୁ କିଛି ଖାଇନି ?

ଶୁଭ କିଛି ଥିଲେ ସିନା ଖାଇବ ।

ସନାତନ ମାନୁରେ... (କାଖେଇନିଅନ୍ତି )

ଶୁଭ : ଆପଣଙ୍କ ପାହାର ଖାଇଖାଇ ମୁଁ ଯେପରି ମଣିଷହୋଇଥିଲି, ସେହି ମଣିଷପଣିଆର ଚମଡ଼ା ଉପରେ ମାଙ୍କଡ଼ର ବେଶ ଘୋଡ଼େଇ ଏଇ ଡାଲିଚାଉଳ ମୁଠେ ଧରିଆସିଛି, ରନ୍ଧା ହେଲେ ଖାଇବା । ନିଅ ରଶ୍ମି ।

ରଶ୍ମି : ହେଲେ ... ତମେ ଏମିତି ... ?

ଶୁଭ : ଆଗ ଚୁଲିଟାକୁ ଜାଳିଦେଇ ପେଟର ନିଆଁକୁ ଶାନ୍ତ କର । ତା'ପରେ ସବୁ ଶୁଣିବ । ବାବା ମାନୁ, ଏଇ ବିସ୍କୁଟତକ ଖାଇଦିଅ ।

ସନାତନ : ନେ ବାବା, ଅଗ ଖାଇଦେ' ।

ମାନୁ : ମୁଁ ଏବେ ପାଠ କରିଦେବି ସାର୍ । (ରଶ୍ମି ସହିତ ଯାଏ )

ସନାତନ : ଆରେ, କ'ଣ ହେବ ସେ ପାଠପଢ଼ି ?

ଶୁଭ : ମୋର ଯାହା ହେଲା ।

ସନାତନ : ତୋ'ର ଏମିତି କ'ଣ ହେଲା ଶୁଭ ?

ଶୁଭ : ଆପଣ ତ ପଢ଼େଇଥିଲେ ସାର୍, ଆମ ପୂର୍ବପୁରୁଷ କାଳେ ମାଙ୍କଡ଼

ଥିଲେ । ସେମାନେ ସଭ୍ୟଶିକ୍ଷିତ ହୋଇ କୋଉ କିମିଆ ବଳରେ ଲାଞ୍ଜଟାକୁ ଲୁଚେଇଦେଇ ମଣିଷ ହୋଇଗଲେ ଓ ମଣିଷ ନାଆଁରେ ଅନ୍ୟମାନଙ୍କୁ ଶାସନ କରିବାକୁ ଲାଗିଲେ । କିନ୍ତୁ ସମୟ ଆସିଲା, ସେଇ ମଣିଷ, ମଣିଷ ହୋଇ ଖାଇବାକୁ ପାଇଲାନି । ଶେଷରେ ଲାଞ୍ଜଟିଏ ଲଗେଇ ଡାଲିଚାଉଳ ଧରି ଘରକୁ ଫେରିଲା ।

ସନାତନ    ମୁଁ କିଛି ବୁଝିପାରୁନି ।

ଶୁଭ    ଯେହେତୁ ଆପଣ ମଣିଷ, ଯିଏ କେବଳ ଅନ୍ୟକୁ ବୁଝେଇପାରେ, କିନ୍ତୁ ନିଜେ କିଛି ବୁଝିପାରେନା । ସାର୍ । ତିରିଶ ବର୍ଷ ଧରି ଆପଣଙ୍କ ଆଗରେ ମୁଣ୍ଡ ପୋତି କେବଳ ଉପଦେଶ, ନୀତିବାଣୀ, ସତ୍ୟ ଧର୍ମର ଚର୍ଚ୍ଚା ଶୁଣିଆସିଲି । କ୍ଷମା କରିବେ ସାର୍, ଆଜି ମୁଁ ଜୀବନର ପ୍ରକୃତ ପ୍ରତିଛବି ହୋଇ ଆପଣଙ୍କ ଆଗରେ ଛିଡ଼ାହୋଇଛି ଏବଂ ଗୋଟିଏ ପ୍ରଶ୍ନ କରୁଛି,ଆପଣ ଜୀବନସାରା କଠିନ ପରିଶ୍ରମ କରି ବାଡ଼େଇପିଟି ଅନେକ ପିଲାଙ୍କୁ ବଡ଼ କରିଛନ୍ତି, ହଁ କି ନା ?

ସନାତନ    ହଁ ।

ଶୁଭ    :    ଶହ ଶହ ଡାକ୍ତର, ଇଞ୍ଜିନିଅର, ଅଧ୍ୟାପକ କରିଛନ୍ତି ।

ସନାଚନ    ହଁ ।

ଶୁଭ    ସେମାନେ ମଣିଷ ନା ମାଙ୍କଡ଼ ?

ସନାତନ    ଅର୍ଥାତ୍ ?

ଶୁଭ    :    ମୁଁ ଜାଣେ, ଆପଣ ସିଧା ଉତ୍ତର ଦେବେନି । ମୁଁ କହିବି, ସେମାନେ ମଣିଷରୂପୀ ମାଙ୍କଡ଼ । ଡାକ୍ତର, ଇଞ୍ଜିନିୟର, ଅଧ୍ୟାପକ, ସେହି ମଣିଷରୂପୀ ମାଙ୍କଡ଼ମାନଙ୍କର ଗୋଟିଏ ଗୋଟିଏ ଲାଞ୍ଜ । ସେହି ଲାଞ୍ଜକୁ ହଲେଇ ସେମାନେ କେତେବେଳେ ଲଙ୍କାକୁ ସେତୁବନ୍ଧ ବାନ୍ଧୁଛନ୍ତି ତ କେତେବେଳେ ଗନ୍ଧମାର୍ଦ୍ଦନରୁ ବିଷଲ୍ୟକରଣି ଖୋଜୁଛନ୍ତି । ମନେଥିବ ସାର୍, କିଛି ଲୋକ ଆପଣଙ୍କ ମାଡ଼କୁ ଡରି ପାଠ ଛାଡ଼ିଦେଇଥିଲେ ।

ସନାତନ    ସେଗୁଡ଼ା ଅମଣିଷ ।

ଶୁଭ    ନା ସାର୍, ସେହିମାନେହିଁ ଆଜି ପ୍ରକୃତ ମଣିଷ । ତାଙ୍କରି ଇସାରାରେ

ଅଧ୍ୟାପକ-ଇଞ୍ଜିନିୟର-ଡାକ୍ତରଲାଞ୍ଜଧାରୀ ମାଙ୍କଡ଼ମାନେ ଗଳିକନ୍ଦିରେ ନାଚୁଛନ୍ତି । ସେହି ଦଶାନନ ମହାତ୍ମିମାନଙ୍କ ନିର୍ବାଚନ ଚିହ୍ନ ମାଙ୍କଡ଼ ।

ସନାତନ : ହଁ, ମାଙ୍କଡ଼ ହୋଇପାରେ; ହେଲେ ଜଣେ ମଣିଷକୁ ଏମିତି ମାଙ୍କଡ଼ ବେଶରେ ........

ଶୁଭ : ମାଙ୍କଡ଼ ଏକ ପଶୁ । ତାକୁ ନଚେଇଲେ, ପଶୁନିର୍ଯାତନା ନିରୋଧ ଆଇନ ବଳରେ ଧରାପଡ଼ିବେ,ଜେଲ୍ ଯିବେ । ତେଣୁ ଜଣେ ବେକାର ଯୁବକକୁ ଦୈନିକ ଦୁଇଶହ ଟଙ୍କା ମଜୁରିଦେଇ ମାଙ୍କଡ଼କରି ନଚେଇଲେ କ୍ଷତି କ'ଣ ?

ସନାତନ : ତା' ମାନେ ?

ଶୁଭ : ମେଟ୍ରିକ୍ ପାସ୍ କରିପାରିନଥିବା ନେତାର ଇସାରାରେ ଜଣେ ପୋଷ୍ଟଗ୍ରାଜୁଏଟ୍ ନାଗରିକ ଲାଂଜ ଲଗେଇ ନାଚିକୁଦି ପେଟପାଇଁ ଡାଲିଚାଉଳ ଧରି ଆସିଛି, ତା'ର ଭୋକିଲା ସ୍ତ୍ରୀ, କାନ୍ଦୁରା ପୁଅ ଆଉ ରୋଗିଣା ବାପ ମୁହଁରେ ମୁଠାଏ ଦାନା ଦବ । କୁହନ୍ତୁ ସାର୍, ମୁଁ ପାଠପଢ଼ି ଠିକ୍ କରିଛି, ନା ଦଶାନନ ମହାତ୍ମିମାନେ ପାଠ ନ ପଢ଼ି ଠିକ୍ କରିଛନ୍ତି ? ନିରବ କାହିଁକି ? କୋଉଠି ଶୋଇଛି ଆପଣଙ୍କ ଶିକ୍ଷାନୀତି ? କୋଉଠି ଅଛି ଆପଣଙ୍କ ମଣିଷକରିବାର ବେତବାଡ଼ି ? କୋଉଠି ଅଛି ଆପଣଙ୍କର ଗଧ, ମାଙ୍କଡ଼, ଭାଲୁମାନଙ୍କୁ ମଣିଷକରିବାର ଚାବିକାଠି ? ମୋ' ପୁଅ ଆପଣଙ୍କ ଭାଷାରେ ମଣିଷ ନ ହୋଇ ମାଙ୍କଡ଼ ହେବା ଉଚିତ । ନମସ୍କାର୍ ସାର୍, ଧନ୍ୟବାଦ୍ । (ଯାଉଥିଲେ )

ସନାତନ : ହେଲେ, ଶୁଭ !

ଶୁଭ : ମୋର ସେ ଶୁଭ ନାଆଁଟାକୁ କାଟିଦେବେ । ମୁଁ ମାଙ୍କଡ଼ । କେବଳ ମାଙ୍କଡ଼ । ସାର୍ ମୋର ଅନୁରୋଧ, ଆପଣ ଏଠି ଆଉ ବେଶିସମୟ ରହି ଅସମ୍ମାନିତ ହେବାର ଭୁଲ୍ କରନ୍ତୁନି ।

( ସନାତନ କ'ଣ କହିବାକୁ ଉଦ୍ୟତ ହୁଅନ୍ତି ) ମୁଁ ହାତ ଯୋଡୁଛି ସାର୍ ।

( ସନାତନ ଫେରନ୍ତି, ଶୁଭ ଭିତରକୁ ଯାଉଥାଏ - ଅନ୍ଧାର )

## ଷଷ୍ଠଦୃଶ୍ୟ

(ରାସ୍ତା । ଦୂରରୁ "ମାଙ୍କଡ଼ ଚିହ୍ନ- ଜିନ୍ଦାବାଦ୍'' ଶୁଣାଯାଉଥାଏ । ରାମଚନ୍ଦ୍ର ସାହୁ ଭୟରେ ଯେମିତି ପଳେଇଆସୁଥିଲେ, ସାମ୍ନାରୁ ସୁଗ୍ରୀବ 'ସିଂହ' ବେଶରେ ଆସନ୍ତି ।)

ରାମଚନ୍ଦ୍ର : ଇରେ ବାପରେ ! ଏମାନଙ୍କ ଉତ୍ପାତ ! (ସିଂହକୁ ଦେଖି)ଏଁ କିଏ ?

ସୁଗ୍ରୀବ : ଡରିଗଲ କି ! ମୁଁ ସୁଗ୍ରୀବ ?

ରାମଚନ୍ଦ୍ର : ସୁଗ୍ରୀବ ! ତମେ ଏମିତି ବେଶରେ ?

ସୁଗ୍ରୀବ : ସିଂହବେଶ, ମୁଁ ଦେଖିଲି, ସେମାନେ ଯେତେବେଳେ ଜଣକୁ ମାଙ୍କଡ଼ କରି ନଚେଇ ପ୍ରଚାର କରୁଛନ୍ତି, ମୁଁ ବି ଦୌଡ଼ିଲି ଚିତ୍ରାଳୟକୁ। ଆମର ଚିହ୍ନ 'ସିଂହ' - ସେଇ ମୁଖାଟା ପିନ୍ଧି ଆସିଛି।

ରାମଚନ୍ଦ୍ର : ଆରେ, ସେମାନେ ତ ଦଳଦଳ ହୋଇ ନାଚୁଛନ୍ତି, ତମେ ଏକୁଟିଆ, ତମେ ତାଙ୍କ ସଙ୍ଗେ ପାରିବନି ।

ସୁଗ୍ରୀବ : ସିଂହ ତ ଏକୁଟିଆ ଲଢ଼େ ! ଆପଣ ଦେଖନ୍ତୁ, ମୁଁ ଏକୁଟିଆ ତାଙ୍କର ମୁକାବିଲା କରୁଛି ।

ରାମଚନ୍ଦ୍ର : ନା, ସୁଗ୍ରୀବ ତମେ ପଳେଇଆସ । ଆମେ ଏମିତି ଫାର୍ସ୍ କରି ଲଢ଼ିବାନି ।

ସୁଗ୍ରୀବ : ଆପଣ ଚିନ୍ତାକରନ୍ତୁନି । ରାମଚନ୍ଦ୍ରଙ୍କ ବିଜୟ ପାଇଁ ସୁଗ୍ରୀବ, ଫାର୍ସ୍ କ'ଣ, ପ୍ରାଣ ବି ଦେଇଦେବ । ଆପଣ ଏଠି ରହନ୍ତୁନି, ମୁଁ ଲଢୁଛି । ଆପଣ ଯାଆନ୍ତୁ, ହଁ ଯାଆନ୍ତୁ ।

ରାମଚନ୍ଦ୍ର : ହେଲେ.. ହେଲେ, ତମେ କିଛି ଗଣ୍ଡଗୋଳ କରିବନି ।

ସୁଗ୍ରୀବ : ନା ନା, ଆପଣ ଗଲେ । (ଠେଲିଠେଲି ନେଇଯାଏ )

( ଅନ୍ୟ ଦିଗରୁ କୁଲୁ ଓ ବୁଲୁଙ୍କ ସହ ଶୁଭ ମାଙ୍କଡ଼ବେଶରେ ନାଚିନାଚି ଆସେ )

କୁଲୁ : ତମର ଚିହ୍ନ ଆମର ଚିହ୍ନ ମାଙ୍କଡ଼ ଚିହ୍ନ ।

ବୁଲୁ : ଜିନ୍ଦାବାଦ୍ ଜିନ୍ଦାବାଦ୍ ।

କୁଲୁ : ଭୋଟ୍ ଦେବେ କେଉଁଠି ?

ବୁଲୁ : ମାଙ୍କଡ଼ ଚିହ୍ନ ଯେଉଁଠି ।

କୁଲୁ : ତମର ଭାଇ ଆମର ଭାଇ ..

ବୁଲୁ : ଦଶାନନଭାଇ ଜିନ୍ଦାବାଦ୍ ।

(ଏମିତି ସ୍ଲୋଗାନ ଭିତରେ ମାଙ୍କଡ଼ ନାଚୁଥାଏ, ଅଙ୍ଗଭଙ୍ଗୀ ପ୍ରଦର୍ଶନ କରୁଥାଏ ।)

କୁଲୁ : ବୁଲୁ! ଏଠି କ'ଣ ଏତେ ଲୋକ ?

ବୁଲୁ : ମାଙ୍କଡ଼ ଦେ ଜମେଇ (ମାଙ୍କଡ଼ ଜୋରରେ ନାଚେ ଓ କହେ )

ଶୁଭ : ବନ୍ଧୁଗଣ ! ହେ ମୋର ଭୋଟର ଭାଇଭଉଣୀ ! ଆପଣମାନଙ୍କୁ ବିନମ୍ର ନିବେଦନ, ଆପଣମାନେ ମାଙ୍କଡ଼ ଚିହ୍ନରେ ଭୋଟ୍‌ଦେଇ ସଂଗ୍ରାମୀସାଥୀ ଦଶାନନ ମହାନ୍ତିଙ୍କୁ ଜୟଯୁକ୍ତ କରନ୍ତୁ । (ସିଂହ ଗର୍ଜନ ଶୁଭେ)

ସୁଗ୍ରୀବ : ତମର ଚିହ୍ନ, ଆମର ଚିହ୍ନ, ସିଂହ ଚିହ୍ନ.. ଜିନ୍ଦାବାଦ୍ ।

କୁଲୁ : ମାଙ୍କଡ, ସିଂହ ଆସିଗଲା ।

ବୁଲୁ : ଅଣ୍ଟା ଭିଡ଼ିଦେ' ।

କୁଲୁ : ଲାଞ୍ଜ ମୋଡ଼ିଦେ' ।

ବୁଲୁ : ଯା ଡେଇଁପଡ଼ୁ ।

ଶୁଭ : ବନ୍ଧୁଗଣ ! ମୁଁ ମାଙ୍କଡ଼, ହନୁମାନଙ୍କର ବଂଶଧର। ହନୁମାନ ସିନା ଏଇଠି ଏଇ ଶ୍ରୀଲଙ୍କା ପର୍ଯ୍ୟନ୍ତ ବନ୍ଧ ବାନ୍ଧିଥିଲେ - ମୋ ଚିହ୍ନରେ ବୋତାମ ଚିପନ୍ତୁ ,ମୁଁ ଆମେରିକା ପର୍ଯ୍ୟନ୍ତ ବନ୍ଧ ବାନ୍ଧିଦେବି । ସେ

ସିନା ଜଣେ ସୀତାଙ୍କୁ ଠାବ କରିଥିଲେ,ମୁଁ ଗୋଟିଏ ଦିନରେ ହଜାରେ ସୀତାଙ୍କୁ ଠାବ କରିଦେବି । ସେ ସିନା ଗୋଟିଏ, ଏଇ ଛୋଟିଆ ଗନ୍ଧମାର୍ଦ୍ଦନକୁ ଉଠାଇଆଣିଥିଲେ । ଆମେ ହିମାଳୟକୁ ଉଠାଇ ଆଣିବୁ । ତେଣୁ ଥରେ ମାଙ୍କଡ଼ ଚିହ୍ନରେ ଭୋଟ୍ ଦିଅନ୍ତୁ, ବନ୍ଧୁଗଣ ।

ସୁଗ୍ରୀବ : ନା ବନ୍ଧୁଗଣ।ଏ ଦେଶ ସିଂହର ଦେଶ । ଏଠି ମାଙ୍କଡ଼ର ସ୍ଥାନ ନାହିଁ । ତେଣୁ ବନ୍ଧୁଗଣ, ଆପଣମାନେ ସିଂହ ଚିହ୍ନରେ ଭୋଟ୍ ଦେଇ ସଚ୍ଚୋଟ ସାଥୀ ରାମଚନ୍ଦ୍ର ସାହୁଙ୍କୁ ବିପୁଳ ଭୋଟ୍‌ରେ ଜୟଯୁକ୍ତ କରନ୍ତୁ । ସିଂହ ଭଳି ରଜା ହୋଇ ସମ୍ମାନର ସହ ବଞ୍ଚିବେ ।

ଶୁଭ : ନା ବନ୍ଧୁଭଣ ! ଏ ଦେଶ ହନୁମାନଙ୍କ ଦେଶ। ମାଙ୍କଡ଼ଙ୍କ ଦେଶ।, ଏଠି ମାଙ୍କଡ଼ମାନେ ହିଁ ଶାସନ କରିବା ଉଚିତ । ତେଣୁ ଆପଣମାନେ ମାଙ୍କଡ଼ ଚିହ୍ନରେ ଭୋଟ୍ ଦିଅନ୍ତୁ ।

ସୁଗ୍ରୀବ : ସିଂହ ରଜା, ତେଣୁ ରଜାଙ୍କୁଆ ରଜା ହେଲେ ଆପଣମାନେ ସୁଖରେ ରହିବେ । ସିଂହ ଚିହ୍ନ ଆପଣଙ୍କ ଚିହ୍ନ ।

ଶୁଭ : ମାଙ୍କଡ଼ ଚିହ୍ନ ଆପଣଙ୍କ ଚିହ୍ନ ।

ସୁଗ୍ରୀବ : ନା, ସିଂହ ଚିହ୍ନ

ଶୁଭ : ମାଙ୍କଡ଼ ଚିହ୍ନ

ସୁଗ୍ରୀବ : ସିଂହ ଚିହ୍ନ । (ଏମିତି କହୁ କହୁ ପରସ୍ପର ଭିଡ଼ିଯାଆନ୍ତି । ପଞ୍ଝାକୁ ପଞ୍ଝା ଯୋଡ଼ିହେଇ ପରସ୍ପର ଲଢ଼ନ୍ତି, ଛଉ ଅବା ସେମିତି କିଛି ଯୁଦ୍ଧ ସଂଗୀତର ତାଳେ ତାଳେ..ଅଦୂରରୁ ଏକ ଘୋଷଣା ଶୁଭେ)

ଘୋଷକ : ଏଥରର ନିର୍ବାଚନରେ ମାଙ୍କଡ଼ ଚିହ୍ନର ପ୍ରାର୍ଥୀ ଦଶାନନ ମହାନ୍ତି, ସିଂହ ଚିହ୍ନର ପ୍ରାର୍ଥୀ ରାମଚନ୍ଦ୍ର ସାହୁଙ୍କୁ ୫୭୫୭ ଭୋଟ୍‌ରେ ପରାସ୍ତ କରି ବିଜୟୀ ହୋଇଛନ୍ତି।

( ଗୋଟିଏ ହୋ ହୁଏ । ସିଂହ ଦୌଡ଼ି ପଳାଏ, ମାଙ୍କଡ଼ ହସେ ।)

( ଅନ୍ଧାର )



## ସପ୍ତମ ଦୃଶ୍ୟ

( ଶୁଭର ଘର। ଶୁଭ ଦୌଡ଼ି ଆସେ ଖୁସିରେ )

ଶୁଭ — ରଶ୍ମି , ରଶ୍ମି, ମାନୁ (ଭିତରୁ ରଶ୍ମି ସହିତ ମାନୁ ଆସେ )

ରଶ୍ମି — କ'ଣ ହେଲା ?

ଶୁଭ — (ମାନୁକୁ ଟେକିନେଇ)ଆରେ, ଜିତିଲାରେ ଜିତିଲା, ମାଙ୍କଡ଼ ଚିହ୍ନ ଜିତିଲା ।

ରଶ୍ମି — ତା' ମାନେ... ଭୋଟ୍ ସରିଗଲା ?

ଶୁଭ — ହଁ ।

ରଶ୍ମି — ତା' ହେଲେ ତ ଆଉ ପ୍ରଚାର ହେବନି ?

ଶୁଭ — ନା ।

ରଶ୍ମି — ତମ ଚାକିରି ?

ଶୁଭ — ଚାକିରି... ( ମାନୁକୁ ଓହ୍ଲାଇଦିଏ, କୁଲୁ ଓ ବୁଲୁ ଆସନ୍ତି )

କୁଲୁ — ହଇରେ ଏୟ, ପଳେଇ ଆସିଲୁ ?

ଶୁଭ — ତମେ ତ ଜିତିଗଲ, ମୋର ଆଉ କି କାମ !

ବୁଲୁ — ତୋର କି କାମ ? ବେ ଜିତିଗଲାପରେ ପ୍ରସେସନ୍ ହେବ, ନାଚ ହେବ, ବାଣ ଫୁଟିବ।

ଶୁଭ ସେଠି ମୁଁ କ'ଣ କରିବି ?

କୁଲୁ ନାଚିବୁ ।

ବୁଲୁ ସେତେବେଳେ ସିନା ନାଚିନାଚି ଭୋଟ୍ ମାଗୁଥିଲୁ...

କୁଲୁ ଏବେ ନାଚିନାଚି ଢିତାପଟ ଦେଖେଇବୁ ।

ବୁଲୁ ତୁ କ'ଣ ମୋଫତରେ ନାଚିବୁ ?

କୁଲୁ ଏ ନାଚରେ ବି ତୋତେ ପଇସା ମିଳିବ ।

ବୁଲୁ ମିଳିବ ମାନେ, ଯେତେ ଲୁହିବୁ, ସେତେ ପାଇବୁ ।

କୁଲୁ ତୋ' ନାଚ ଯେତେ ଜମିବ, ପଇସା ସେତେ ପଡ଼ିବ । ଆ.. ଆ

ଶୁଭ ସତେ ? ମୁଁ ତେବେ ଆସୁଛି, ଆଜି କାଲେ ଢେର୍ ପଇସା ମିଳିବ ।

ରଶ୍ମି ହଉ । ହଁ ଶୁଣ୍, ଟିକିଏ ବୁଦ୍ଧି ଖଟେଇ ନାଚିବ । ଯେମିତି ସମସ୍ତେ ଖୁସି ହେବେ, ବେଶି ପଇସା ଦେବେ ।

ମାନୁ ଡାଡି, ତମ ଲାଞ୍ଜଟାକୁ ଆଉଟିକିଏ ବଙ୍କେଇ ଦଉନ, ହନୁମାନ ପରି ଦିଶିବ। (ବଙ୍କେଇଦିଏ)

ଶୁଭ ଏ ଲାଞ୍ଜ ତ ମୋର ସର୍ବସ୍ୱ ।

ରଶ୍ମି ହାତରେ ଗୋଟେ ଗଦା ଧରିଲେ ହୁଅନ୍ତାନି ?

ଶୁଭ ଗଦା ....

ରଶ୍ମି ହଁ, ମୁଁ ଗୋଟେ ଗଦା ବନେଇଛି। ହାତରେ ଧରିଲେ ଭାରି ମାନନ୍ତା। (ଯାଇ ଆଣିଦିଏ)

ଶୁଭ ( ଗଦା ଧରି ନିଜକୁ ଦେଖେ ଓ ଯାଏ )

ମାନୁ ମାମି, ମୁଁ ବଡ଼ ହୋଇଯାଏ, ମୋତେ ବି ଗୋଟେ ଲାଞ୍ଜ ଲଗେଇଦବ । ମୁଁ ବି ମାଙ୍କଡ଼ ହେବି

ରଶ୍ମି ମାନୁ !

( ଅନ୍ଧାର )



## ଶେଷଦୃଶ୍ୟ

(ରାସ୍ତାରେ ପ୍ରସେସନ୍ ଚାଲିଥାଏ । ଆଗରେ ବିଭିନ୍ନ ଭଙ୍ଗୀରେ ଗଦା ଧରି ମାଙ୍କଡ଼ ନାଚୁଥାଏ, ପଛରେ ଦଶାନନ, ନେତ୍ରାନନ୍ଦମାନେ ଫୁଲମାଳ ପକାଇ ହାତଯୋଡ଼ି ଚାଲିଥାନ୍ତି । କୁଲୁବୁଲୁମାନେ ପିଉଥାନ୍ତି, ନାଚୁଥାନ୍ତି,ବାଣ ଫୁଟଉଥାନ୍ତି । ଠରାଠରି ହୋଇ ଶୁଭକୁ ପିଆଇଲେ । ଶୁଭ ମନା କରୁଥାଏ, ବାଧ୍ୟକରି ପିଆଇଲେ । ତା' ଦେହରେ ଫଟକା ବାନ୍ଧିଲେ, ଫୁଟାଇଲେ। ଶେଷରେ କୌତୁକବଶତଃ ତା' ଲାଞ୍ଜରେ ଫଟକାବାନ୍ଧି ନିଆଁ ଲଗାଇବା ବେଳେ ଦଶାନନ ଧରିନେଲେ । ସମସ୍ତ ସଂଗୀତ ନିରବ ହେଲା ।)

ଦଶାନନ — ନା, ସେ ଭୁଲ୍ କରନି। ରାମାୟଣରେ ରାବଣ ଯେଉଁ ଭୁଲ୍ କରି ସବଂଶେ ନାଶ ଗଲା, ମୁଁ ସେ ଭୁଲ କରିବିନି । ମାଙ୍କଡ଼ର ସବୁଠୁ ସ୍ପର୍ଶକାତର ଅଙ୍ଗ ହେଉଛି ତା'ର ଲାଞ୍ଜ । ଏ ଲାଞ୍ଜରେ ଥରେ ନିଆଁ ଲାଗିଲେ, ଆମ ସାମ୍ରାଜ୍ୟ କ'ଣ ରହିବ ?

ଶୁଭ — (ଉତ୍ତେଜିତ ହୋଇ ) ନା, ଅଟକିଗଲ କାହିଁକି ? ଲଗାଅ ନିଆଁ । ଆରେ, ଚାହିଁଛ କ'ଣ, ସାହସ ଅଛି ତ ଥରେ ମୋର ଏ ଲାଞ୍ଜରେ ନିଆଁ ଲଗେଇ ଦେଖ ।

ଦଶାନନ — ଆରେ ଆରେ, ଏ ମାଙ୍କଡ଼ ..

ଶୁଭ — ଚୁପ୍ । ମୁଁ କ'ଣ ଜନ୍ମରୁ ମାଙ୍କଡ଼ ଥିଲି ? ମୋତେ ମାଙ୍କଡ଼ ସଜେଇଛି କିଏ ? ତମେ , ତମ ପଇସା, ତମ କ୍ଷମତା । ତମରି ତିଆରି

ମାଙ୍କଡ଼ର ଦେହସାରା ତ ନିଆଁ ଲଗେଇସାରିଲଣି, ଆଉ ଲାଞ୍ଜରେ ହାତ ମାରିବାକୁ ଡରୁଛ କାହିଁକି ? ଲଗାଅ, ଲଗାଅ ନିଆଁ ।

ଦଶାନନ ଆରେ ଆରେ, ଏଟାକୁ ନିଶା ଧରିନେଲାରେ ।

ନେତ୍ରାନନ୍ଦ : ପଳେଇଚାଲରେ, ଏଟା ପାଗଳା ହୋଇଗଲା ।

କୁଲୁବୁଲୁ : ଚାଲରେ ଚାଲରେ..

ଶୁଭ ଆରେ ଭୀରୁ ଦଶାନନମାନେ ! ପଳଉଛ କୁଆଡ଼େ ? ତମେ ଆଜି ଶିକ୍ଷିତ ବେକାର ଯୁବଗୋଷ୍ଠୀକୁ ମାଙ୍କଡ଼ ସଜେଇସାରିଲଣି, ସିଏ କ'ଣ ତମକୁ ଛାଡ଼ିଦବ ? ଦିଅ, ମୋ ଲାଞ୍ଜରେ ଟିକିଏ ନିଆଁ ଦିଅ । ମୁଁ ଏ ଦଶାନନମାନଙ୍କର ସ୍ୱର୍ଣ୍ଣଲଙ୍କାକୁ ଜାଳିପୋଡ଼ି ଛାରଖାର କରିଦିଏଁ । ଆରେ କିଏ ଅଛ, ଆସ ମୋ' ଲାଞ୍ଜରେ ଟିକିଏ ନିଆଁଦିଅ। (ଫ୍ରିଜ୍)

(ଶୁଭର ଘରୁ ମାନୁ ଏକ ମଶାଲ ନେଇ ବାହାରେ .. )

- ଯବନିକା -



ଓଡ଼ିଆ ମଂଚ ନାଟକ ପାଇଁ ଯେଉଁ କେତେଜଣ ନାଟ୍ୟକାର ନିଜକୁ ସଂପୂର୍ଣ୍ଣ ଭାବରେ ଉତ୍ସର୍ଗ କରିଦେଇଛନ୍ତି ସେମାନଙ୍କ ମଧ୍ୟରେ ନାଟ୍ୟକାର ହେମେନ୍ଦ୍ର ମହାପାତ୍ର ଅନ୍ୟତମ । ସାମ୍ପ୍ରତିକ ସମୟ ଓ ଜୀବନକୁ ମଂଚ ଉପରେ ବେଶ୍ ଫଳପ୍ରଦ ଭାବରେ ପରୀକ୍ଷାନିରୀକ୍ଷା କରି ଏକ ସକାରାତ୍ମକ ସିଦ୍ଧାନ୍ତରେ ଉପନୀତ ହେବାରେ ତାଙ୍କର ଏକନିଷ୍ଠ ଉଦ୍ୟମ ବାସ୍ତବରେ ପ୍ରଶଂସନୀୟ । ତାଙ୍କ ରଚିତ ଶତାଧିକ ନାଟକ, ଗୀତିନାଟ୍ୟ, ଭିଡ଼ିଓ ନାଟକ, ଟେଲିଫିଲ୍ମ ସର୍ବୋପରି ଶିଶୁନାଟକଗୁଡ଼ିକୁ ଅନୁଧ୍ୟାନ କଲେ ଗୋଟିଏ କଥା ସ୍ପଷ୍ଟ ପ୍ରମାଣିତ ହେବ ଯେ - ସଂଳାପ, କଥାବସ୍ତୁ, ଶୈଳୀ ଓ ଉପସ୍ଥାପନ କ୍ଷେତ୍ରରେ ପ୍ରତିଟି ନାଟକ ଅନ୍ୟଠାରୁ ଭିନ୍ନ । ଶ୍ରୀ ମହାପାତ୍ରଙ୍କ ରଚିତ ନାଟକ ମଧ୍ୟରେ 'ଯୋଡ଼ି ମହୁରୀ', 'ଅଥଚ ଅଥର୍ବ', 'ପୁତ୍ରପୂଜା', 'ଶୁଣନ୍ତୁ ହେ ଅଭିମନ୍ୟୁମାନେ', 'ଭିନ୍ନ ଏକ ଗନ୍ଧର୍ବ', 'ଝରା ଶେଫାଳୀ', 'ମୁଁ ହାଟ ବାହୁଡ଼ା', 'ଆଶା', 'ଅଶାନ୍ତ ଅର୍ଜୁନ' ଓଡ଼ିଆ ମଂଚ ଓ ସାହିତ୍ୟ କ୍ଷେତ୍ରରେ ବେଶ୍ ପରିଚିତ ଓ ପ୍ରତିଷ୍ଠିତ । ତାଙ୍କର ପ୍ରଖ୍ୟାତ ନାଟକ 'ଯୁଗ ଚରିତ ବୃତ୍ତାନ୍ତ' ପାଇଁ ସେ ୨୦୦୨ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛନ୍ତି । ଏହା ବ୍ୟତୀତ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ, ରାଉରକେଲାର କଲଚରାଲ୍ ଏକାଡ଼େମୀ, ଅନୁଗୁଳର ନାଟ୍ୟମ୍ ଆଦି ଆୟୋଜିତ ନାଟ୍ୟ ପ୍ରତିଯୋଗିତାରେ ସେ ବହୁବାର ଶ୍ରେଷ୍ଠ ନାଟ୍ୟକାର ଭାବରେ ପୁରସ୍କୃତ ହୋଇଛନ୍ତି ।

ତାଙ୍କ ପ୍ରକାଶିତ ପୁସ୍ତକଗୁଡ଼ିକ ମଧ୍ୟରେ ଏଇ ପୁସ୍ତକର ବିଶେଷତ୍ୱ ଏହି କି, ଏହା ମଧ୍ୟରେ ସନ୍ନିବେଶିତ ନାଟକଗୁଡ଼ିକ କେବଳ 'ଝଂକାର' ସାହିତ୍ୟପତ୍ରିକାରେ ପ୍ରକାଶିତ ଓ ବିଭିନ୍ନ ମଂଚ, ଦୂରଦର୍ଶନରେ ମଂଚସ୍ଥ ।

ସ୍ୱୀକୃତି ସ୍ୱରୂପ ସେ ଫକୀର ମୋହନ ବିଶ୍ୱବିଦ୍ୟାଳୟ, ଫକୀର ମୋହନ ସାହିତ୍ୟ ପରିଷଦ, ପ୍ରଜାତନ୍ତ୍ର ପ୍ରଚାର ସମିତି, ଦୀନକୃଷ୍ଣ ସାହିତ୍ୟ ପରିଷଦ, ରୋଟାରୀ କ୍ଲବ୍ ଆଦି ବହୁ ଅନୁଷ୍ଠାନରୁ ପୁରସ୍କୃତ ଓ ସଂବର୍ଦ୍ଧିତ । ଓଡ଼ିଆ ନାଟ୍ୟ ସାହିତ୍ୟକୁ ଅଧିକ ଲୋକପ୍ରିୟ ଓ ଲୋକାଭିମୁଖୀ କରିବା ପାଇଁ ଓଡ଼ିଆ ଭାଷା-ସାହିତ୍ୟର ଏକମାତ୍ର ଦୃଶ୍ୟଭିତ୍ତିକ ସାହିତ୍ୟ ପତ୍ରିକା 'ରଂଗମଂଚ'ର ସେ ପରିକଳ୍ପନା ଓ ପ୍ରଯୋଜନା କରୁଛନ୍ତି ।

ସ୍ୱର୍ଣ୍ଣଶ୍ରୀ ପ୍ରକାଶନୀ